# ମାଷ୍ଟର ରାମଚନ୍ଦ୍ର ମାଣିଆ ଓ ବିଂଶ ଶତାବ୍ଦୀର ଓଡ଼ିଆ ରଙ୍ଗମଞ୍ଚ









ନଟବର ସେଣ

ସମ୍ପାଦନା - ସମର ବିଳାସ ପଟ୍ଟନାୟକ

# ବିଂଶ ଶତାବ୍ଦୀର ଓଡ଼ିଆ ରଙ୍ଗମଞ୍ଚ
# ଓ
# ମାଷ୍ଟର ରାମଚନ୍ଦ୍ର ମାଣିଆ

ମୁଖ୍ୟ ଗ୍ରନ୍ଥକାର : ନଟବର ସେଣ
ସଂପାଦନା : ସମର ବିଳାସ ପଟ୍ଟନାୟକ

ମାଷ୍ଟର ରାମଚନ୍ଦ୍ର ମାଣିଆଙ୍କ ସ୍ମୃତିଚାରଣ କରିଛନ୍ତି...

ଅଧ୍ୟାପକ ପ୍ରଫୁଲ୍ଲ କୁମାର ପାଇକାରାୟ
ପ୍ରଶାନ୍ତ ନନ୍ଦ, କାର୍ତ୍ତିକ କୁମାର ଘୋଷ
ବ୍ୟୋମକେଶ ତ୍ରିପାଠୀ, ଦୁର୍ଲଭ ସିଂହ
ଗୋପାଳ ଘୋଷ, ଅସୀମ ବସୁ
ଶରତ ଚନ୍ଦ୍ର ପୂଜାରୀ, ତ୍ରିଲୋଚନ ମହାପାତ୍ର
ଚକ୍ରଧର ଶତପଥୀ, କାଶିନାଥ ସାହୁ

ପ୍ରକାଶକ :
ମାଷ୍ଟର ମାଣିଆ ସ୍ମୃତିସଂସଦ, ଗଡ଼ ରେଙ୍ଗଳ

ମୁଦ୍ରଣ : ଗୋପୀନାଥ ଅଫ୍‌ସେଟ୍‌, ଖାରବେଳ ନଗର, ଭୁବନେଶ୍ୱର
ପ୍ରଥମ ପ୍ରକାଶନ : ଅଗଷ୍ଟ ୨୦୦୦
ପ୍ରଚ୍ଛଦ ପଟ : ଅସୀମ ବସୁ ଓ ଚିନ୍ତାମଣି ବେହେରା
ମୂଲ୍ୟ : ଟ ୭୫/-
ପ୍ରାପ୍ତି ସ୍ଥାନ : ମାଷ୍ଟର ମାଣିଆ ସ୍ମୃତି ସଂସଦ, ଗ୍ରାମ- ଗଡ଼ରେଙ୍ଗଲ, ପୋ.ଅ.- ଗୋଡ଼ିପୁଟ ମାଟିଆପଡା, ଭାୟା : ଜଟଣୀ, ଜିଲ୍ଲା- ପୁରୀ, ୧୪୫୯ ଶାସ୍ତ୍ରୀନଗର, ୟୁନିଟ୍‌-୪, ଭୁବନେଶ୍ୱର- ୭୫୧୦୦୧ ଓ ପ୍ରମୁଖ ପ୍ରମୁଖ ପୁସ୍ତକାଳୟ ।

# Master Rama Chandra Mania & Oriya Theatre Movement during 20th Century

**Principal Author** : Natabar Sena
**Edited by** : Samar Bilas Patnaik
**Publisher** : Master Mania Smruti Sansad
Village- Gada Rengal,
P.O. Godiput Matia para,
Via - Jatni, Dist. Puri
**Printed at** : Gopinath Offset, Kharavel Nagar, Bhubaneswar.
**First Edition** : August, 2000
**Cover design** : Asim Basu & Chintamani Behera
**Price : Rs. 75/-**
**Available at** : Master Mania Smruti Sansad, Vill. -Gada Rengal, Po. Godiput Matiapara, Via-Jatni, Dist.-Puri, 1459 Sastri Nagar, Unit-IV, Bhubaneswar-751001 & All leading Book shops.

# ସୂଚୀପତ୍ର


| ବିଷୟ | ଲେଖକ | ପୃଷ୍ଠା |
| --- | --- | --- |
| ● ଆମ ସମ୍ପର୍କରେ ପଦେ : | ବିରଞ୍ଚି ନାରାୟଣ ସାମନ୍ତ ସିଂହାର ସାଧାରଣ ସଂପାଦକ, ମାଷ୍ଟର ମାଣିଆ ସ୍ମୃତି ସଂସଦ | ୧ |
| ● ଗ୍ରନ୍ଥ ପ୍ରବେଶ (ରେଙ୍ଗଲ ଗଡ଼ର ଐତିହ୍ୟ ସହ) : | ଅଧ୍ୟାପକ ପ୍ରଫୁଲ୍ଲ କୁମାର ପାଇକରାୟ ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ, ପ୍ରାଣନାଥ କଲେଜ, ଖୋର୍ଦ୍ଧା | ୩ |


## ମାଷ୍ଟର ମାଣିଆଙ୍କ ଜୀବନୀ

### ଲେ: ନଟବର ସେଣ


| | | |
| --- | --- | --- |
| ➢ ପ୍ରଥମ ଅଧ୍ୟାୟ : | ଜନ୍ମ ଓ ବାଲ୍ୟ ଜୀବନ, ସଙ୍ଗୀତ ପରିବେଷଣ, ଯାତ୍ରାଦଳରେ ଯୋଗଦାନ, ଓଡ଼ିଶାର ପ୍ରଥମ ଭ୍ରମ୍ୟମାଣ ପେଷାଦାର ନାଟ୍ୟାନୁଷ୍ଠାନ ରାଧାକୃଷ୍ଣ ଥିଏଟର୍, ବାସ୍ତବ ଜୀବନରେ ଦୁଇଟି ଭୂମିକାରେ ଅବତୀର୍ଣ୍ଣ | ୧୬ |
| ➢ ଦ୍ୱିତୀୟ ଅଧ୍ୟାୟ : | ନାଟ୍ୟ ସଂସ୍ଥା ଦ୍ୱାରା ଓଡ଼ିଆ ଭାଷାର ସୁରକ୍ଷା, କଟକ ବାସନ୍ତୀ ରଙ୍ଗମଞ୍ଚରେ ଅଭିନୟ । | ୨୫ |
| ➢ ତୃତୀୟ ଅଧ୍ୟାୟ : | ଗୁରୁ ଭକ୍ତିର ପରାକାଷ୍ଠା, ରଣପୁର ଉଆସରେ ସଙ୍ଗୀତ ଆସର, ରାଧାକୃଷ୍ଣ ଥିଏଟର୍ ବନ୍ଦ, 'ବନମାଳୀ ଅର୍ଟ ଥିଏଟର୍'ର ଆରମ୍ଭ ଓ ପତନ | ୩୧ |
| ➢ ଚତୁର୍ଥ ଅଧ୍ୟାୟ : | ସୌଖୀନ ରଙ୍ଗମଞ୍ଚରେ ନିର୍ଦ୍ଦେଶନା, ଜଟଣୀରେ ଉତ୍ତରାୟଣୀ କ୍ଲବ୍ ପ୍ରତିଷ୍ଠା, ଅନ୍ନପୂର୍ଣ୍ଣା ଥିଏଟର୍‌ରେ ଯୋଗଦାନ । | ୩୭ |
| ➢ ପଞ୍ଚମ ଅଧ୍ୟାୟ : | ଗୋଷ୍ଠୀ ବିବାଦରେ ନିରପେକ୍ଷତା, ମାଷ୍ଟର ମାଣିଆଙ୍କ ସଉକ୍, ବିଶିଷ୍ଟ ସଙ୍ଗୀତଜ୍ଞମାନଙ୍କ ସହିତ ବାଦ୍ୟଯନ୍ତ୍ର ସଙ୍ଗତ | ୪୩ |

➢ ଷଷ୍ଠ ଅଧ୍ୟାୟ : ଅନ୍ନପୂର୍ଣ୍ଣା ଥିଏଟର୍‌ର କଟକରେ ପ୍ରଥମ ନାଟକ ଅଭିନୟ, ପଟ୍ଟାମୁଣ୍ଡାଇ କ୍ୟାମ୍ପରେ ଭୀଷଣ ପୀଡ଼ିତ ଓ ଚିକିତ୍ସା, ଅନ୍ନପୂର୍ଣ୍ଣା ଥିଏଟର୍ 'ଏ' ଗ୍ରୁପ୍‌ର ପୁରୀରେ ସ୍ଥାୟୀ ପେଣ୍ଡାଲ୍ ନିର୍ମାଣ ୫୧

➢ ସପ୍ତମ ଅଧ୍ୟାୟ : କଳାକାର ଓ ନିର୍ଦ୍ଦେଶକଙ୍କ ମଧ୍ୟରେ ମତଭେଦ ୬୦

➢ ଅଷ୍ଟମ ଅଧ୍ୟାୟ : ଅନୁଷ୍ଠାନ ତ୍ୟାଗ ଉପରେ ପ୍ରତିକ୍ରିୟା, ବଳାଇ ଚାନ୍ଦଙ୍କ ବିୟୋଗ, ମଞ୍ଚରୁ ଅବ୍ୟାହତି ନେବାର ଇଚ୍ଛା ପ୍ରକାଶ, ଉତ୍ତରାୟଣୀ ପାଠରେ ଅବଶିଷ୍ଟ ସମୟ ରହଣି । ନିଜ ଗ୍ରାମରେ ରହଣି ଓ ଦେହାବସାନ ୬୩

➢ ନବମ ଅଧ୍ୟାୟ : ସମସାମୟିକ କଳାକାର : ବନମାଳୀ ପତି ଓ ଅଶ୍ୱିନୀ କୁମାର ଘୋଷ । ୭୦

## ସ୍ମୃତିଚାରଣ

➢ ମଞ୍ଚ ଜଗତର ମୁକୁଟ ବିହୀନ ସମ୍ରାଟ : ପ୍ରଶାନ୍ତ ନନ୍ଦ ୭୭

➢ କେମିତି ମରିବି କୁହ ? : ଅସୀମ ବସୁ ୮୦

➢ ଏକ ଯୋଗଜନ୍ମା କଳାକାର : କାର୍ତ୍ତିକ କୁମାର ଘୋଷ ୮୨

➢ ଦୁଇଟି ଜ୍ୱଳନ୍ତ ଆଖି : ବ୍ୟୋମକେଶ ତ୍ରିପାଠୀ ୮୭

➢ ଏକ ସାର୍ଥକ ଜୀବନ : ଦୁର୍ଲ୍ଲଭ ସିଂହ ୯୮

➢ ତାଙ୍କୁ ମୁଁ ଯେମିତି ଜାଣିଥିଲି : ଗୋପାଳ ଘୋଷ ୧୦୦

➢ ସମ୍ପୂର୍ଣ୍ଣ ଅଭିନେତା : ଶରତ ଚନ୍ଦ୍ର ପୂଜାରୀ ୧୦୩

➢ ହରିହର କ୍ଲବ୍‌ର ନାଟ୍ୟଗୁରୁ : ତ୍ରିଲୋଚନ ମହାପାତ୍ର ୧୦୯

➢ ଉତ୍ତରାୟଣୀ କ୍ଲବ୍ ଓ ମାଷ୍ଟର ମାଣିଆ : ଚକ୍ରଧର ଶତପଥୀ ୧୧୧

➢ ମୋ ଗୁରୁ, ସାଥୀ ଓ ସାରଥୀ : କାଶିନାଥ ସାହୁ ୧୧୩

❑ ❑ ❑

# ଆମ ସଂପର୍କରେ ପଢ଼

*ବିରଞ୍ଚି ନାରାୟଣ ସାମନ୍ତ ସିଂହାର*

ଓଡ଼ିଆ ମଞ୍ଚ ଜଗତର ପବାଦ ପୁରୁଷ ମଞ୍ଚଶ୍ରୀ ମାଷ୍ଟର ରାମଚନ୍ଦ୍ର ମାଣିଆଁ ଗଡ଼ରେଙ୍ଗଲ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ଏବଂ ଏହି ଗ୍ରାମରେ ହିଁ ତାଙ୍କର ପରଲୋକ ହୋଇଥିଲା । ତାଙ୍କର ୮୭ ବର୍ଷ କାଳର ଜୀବଦ୍ଦଶା ମଧ୍ୟରେ ଅଧିକାଂଶ ସମୟ ରଙ୍ଗମଞ୍ଚ ସେବାରେ ନିୟୋଜିତ ହୋଇଥିଲେ ମଧ୍ୟ ସେ ପରିଣତ ବୟସରେ ପ୍ରାୟ ୭/୮ ବର୍ଷ ନିଜ ଜନ୍ମମାଟିରେ କଟାଇଥିଲେ । ସମୟ ସ୍ୱଳ୍ପ ହେଲେ ମଧ୍ୟ ଗଡ଼ରେଙ୍ଗଲ ଗ୍ରାମ ଓ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଜୀବନର ବିକାଶ ପାଇଁ ସେ ଯେଉଁ ଅବଦାନ ଦେଇଛନ୍ତି, ତାହାର ସ୍ମୃତି ଏ ଅଞ୍ଚଳର ଅଧିବାସୀଙ୍କ ହୃଦୟରେ ଏବେ ମଧ୍ୟ ସ୍ଥାୟୀ ଆସନ ଅଧିକାର କରିଛି । ଗ୍ରାମବାସୀ, ବିଶେଷତଃ ଯୁବ ସଂପ୍ରଦାୟକୁ ସୁସଂଗଠିତ କରି ଗଠନ ମୂଳକ କାର୍ଯ୍ୟରେ ନିୟୋଜିତ ହେବା ପାଇଁ ପ୍ରେରଣା ଦେବା, ଗୋଷ୍ଠୀକନ୍ଦଳ ଯୋଗୁଁ ବହୁବର୍ଷ କାଳ ବନ୍ଦ ରହିଥିବା ବାରାହୀ ଠାକୁରାଣୀଙ୍କ ସମୂହ ପୂଜାର୍ଚ୍ଚନା ଓ ଜନ୍ତାଳ (ଗୋଷ୍ଠୀ ଭୋଜନ) ନୂତନ ଉତ୍ସାହ ସହ ପୁନଃ ପ୍ରଚଳନ କରିବା, ଶିକ୍ଷାନୁଷ୍ଠାନର ବିକାଶ, ଏବେ ସୁପ୍ରତିଷ୍ଠିତ 'ରେଙ୍ଗଲ ରାମଲୀଳା'ର ଭିତ୍ତିସ୍ଥାପନ ସହ ସବୁ କ୍ଷେତ୍ରରେ ନୂତନ ଦିଗ୍‌ଦର୍ଶନ ଦେଇ ସମସ୍ତଙ୍କର ସମ୍ମାନର ପାତ୍ର ହୋଇଥିଲେ । ତାଙ୍କର ସେହି ସ୍ମୃତିକୁ ପାଥେୟକରି 'ମାଷ୍ଟର ମାଣିଆ ସ୍ମୃତି ସଂସଦ' ଗଢ଼ିଉଠିଥିଲା ପ୍ରାୟ ୧୪ ବର୍ଷ ପୂର୍ବେ । ଯାତ୍ରା ପାର୍ଟିର ବୁଢ଼ାରଜା ପରି ପାଚିଲା ମୋଟା ନିଶ, ସେ ଧରୁଥିବା ବେତବାଡ଼ି ପରି ତାଙ୍କର ଦେହର ରଙ୍ଗ ଥିଏଟରିଆ ଚାଲି ଓ କଥା ଏବେ ବି ସ୍ମୃତି-ପଟରୁ ଲିଭି ନାହିଁ । ମାଷ୍ଟର ରାମଚନ୍ଦ୍ର ମାଣିଆଁଙ୍କ ପ୍ରତି ଅଶେଷ ଶ୍ରଦ୍ଧା ଓ ଭକ୍ତିକୁ ପୁଞ୍ଜି କରି ମଞ୍ଚ ଜଗତର ସେହି କ୍ରାନ୍ତିକାରୀ କଳାକାରଙ୍କ ସ୍ମୃତି ରକ୍ଷା ପାଇଁ ୧୯୮୫ ମସିହାରେ ଜଟଣୀର ସୁସାହିତ୍ୟିକ ତଥା ସଂଗଠକ ଶ୍ରୀଯୁକ୍ତ ବିଷ୍ଣୁପଦ ଦାଶଙ୍କ ପରାମର୍ଶ କ୍ରମେ ଗଡ଼ରେଙ୍ଗଲର କେତେକ ଯୁବ ବନ୍ଧୁ ୧୯୮୬ ମସିହା ଠାରୁ ମାଷ୍ଟର ମାଣିଆଙ୍କ ଜୟନ୍ତୀ ପ୍ରତିବର୍ଷ ପାଳନ କରୁଛନ୍ତି । ସର୍ବଶ୍ରୀ ଯୁଧିଷ୍ଠିର ବେହେରା, ପ୍ରସନ୍ନ ଷଡଙ୍ଗୀ ଓ ସୁମନ ପଟ୍ଟନାୟକ ପ୍ରଭୃତିଙ୍କ ଉଦ୍ୟମରେ ୧୯୮୬ ମସିହା ଅଗଷ୍ଟ ୧୫ ତାରିଖରେ ଅଜୟ, କାଳୁ, ବିଧୁଭୂଷଣ, କିଶୋର, ନାରାୟଣ, ଦୁଃଶାସନ, ସୁମନ୍ତ, ସୁବାସ, ସୁରେନ୍ଦ୍ର, ଭରତ, ନାରାୟଣ, ହାଡ଼ିବନ୍ଧୁ, ସହଦେବ, ଉପେନ୍ଦ୍ର, ଅଭିମନ୍ୟୁ, ବାଉରିବନ୍ଧୁ ସ୍ୱାଇଁ, ସୋମନାଥ ପ୍ରଭୃତି ବହୁ ଶ୍ରମ ସ୍ୱୀକାର କରି ମାଷ୍ଟର ରାମଚନ୍ଦ୍ର ମାଣିଆଁଙ୍କର ଜୟନ୍ତୀ ପ୍ରଥମେ ରେଙ୍ଗଲ ଉନ୍ନୀତ ମଧ୍ୟ ଇଂରାଜୀ ବିଦ୍ୟାଳୟଠାରେ ପାଳନ

କଲେ । ସ୍ମୃତି ସଂସଦର ସଭ୍ୟ ସଂଖ୍ୟା ପ୍ରଥମେ ଥିଲା ମାତ୍ର ଅଠର ଜଣ । ବର୍ତ୍ତମାନର ସଭ୍ୟ ସଂଖ୍ୟା ୬୦ ଜଣ ।

ସଂସଦ ପ୍ରତିବର୍ଷ ଗାନ୍ଧୀ, ନେହେରୁ, ଶାସ୍ତ୍ରୀ, ଗୋପବନ୍ଧୁ, ବିବେକାନନ୍ଦ ଓ ନେତାଜୀ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନଙ୍କର ଜୟନ୍ତୀ ପାଳନ ସହ ସ୍କୁଲ ପିଲାମାନଙ୍କ ମଧ୍ୟରେ ବକ୍ତୃତା, ପ୍ରବନ୍ଧ, ସାଧାରଣ ଜ୍ଞାନ, ଚିତ୍ରାଙ୍କନ ଓ ସଙ୍ଗୀତ ପ୍ରତିଯୋଗିତା କରାଇ କୃତୀ ଛାତ୍ରଛାତ୍ରୀମାନଙ୍କୁ ପୁରସ୍କାର ବିତରଣ କରୁଛି । ଗ୍ରାମାଞ୍ଚଳର ଫୁଟ୍‌ବଲ୍ ଖେଳାଳୀମାନଙ୍କୁ ଉତ୍ସାହିତ କରିବା ନିମନ୍ତେ ବିଗତ ଏଗାର ବର୍ଷ ଧରି ମାଷ୍ଟର ମାଣିଆଁ ସ୍ମାରକୀ ଫୁଟ୍‌ବଲ୍ ଟୁର୍ଣ୍ଣାମେଣ୍ଟ୍ ଅନୁଷ୍ଠିତ ହୋଇଆସୁଛି । ପ୍ରତିଭାବାନ କଳାକାରମାନଙ୍କୁ ଚିହ୍ନଟ ଓ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ମାଷ୍ଟର ମାଣିଆଙ୍କ ଜୟନ୍ତୀ ଅବସରରେ ତାଙ୍କର ପ୍ରିୟ ପୀଠ 'ଉତ୍ତରାୟଣୀ ରଙ୍ଗମଞ୍ଚ' ଜଟଣୀଠାରେ ପ୍ରତିବର୍ଷ ଏକ ରାଜ୍ୟସ୍ତରୀୟ ସଙ୍ଗୀତ ଓ ନୃତ୍ୟ ପ୍ରତିଯୋଗିତା ଆୟୋଜନ କରାଯାଉଛି । ଏତଦ୍‌ଭିନ୍ନ ଗ୍ରାମାଞ୍ଚଳର ଦୁଃସ୍ଥ ଲୋକମାନଙ୍କର ସେବା ସହ ମାଗଣା ସ୍ୱାସ୍ଥ୍ୟ ପରୀକ୍ଷା ଓ ଚିକିତ୍ସା ଶିବିର ମଧ୍ୟ ଆୟୋଜନ କରାଯାଉଛି । ଆମ ଅନୁରୋଧ ରକ୍ଷାକରି ଗତ ପ୍ରଳୟଙ୍କରୀ ମହାବାତ୍ୟା ପରେ ପ୍ରମୁଖ ସ୍ୱେଚ୍ଛାସେବୀ ସଂଗଠନ CYSD ଘର ଭାଙ୍ଗିଯାଇଥିବା ଲୋକଙ୍କ ପାଇଁ ପଲିଥିନ୍ ଯୋଗାଇ ଦେଇଥିଲେ ।

ସଭାପତି ଶ୍ରୀଯୁକ୍ତ ସମର ବିଳାସ ପଟ୍ଟନାୟକଙ୍କ ଉଦ୍ୟମ ଫଳରେ ମାଷ୍ଟର ମାଣିଆଙ୍କ ଜୀବନୀ ପ୍ରକାଶନ ସମ୍ଭବ ହୋଇପାରିଛି । ପୁସ୍ତକଟିର ସଂପାଦନା ଓ ମୁଦ୍ରଣ ପାଇଁ ସେ ବହୁ ଶ୍ରମ ସ୍ୱୀକାର କରିଛନ୍ତି । ଏଣୁ ଆମେ ତାଙ୍କ ନିକଟରେ କୃତଜ୍ଞ ।

ମାଷ୍ଟର ମାଣିଆଁଙ୍କ ସ୍ମୃତି ରକ୍ଷା ପାଇଁ ଆମେ ବହୁ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛୁ । ମାଷ୍ଟର ମାଣିଆଙ୍କ ଜୀବନୀ ଉପରେ ଏକ ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାଣ ପାଇଁ ବିଭିନ୍ନ ସଂସ୍ଥାସହ ଆମେ ଯୋଗାଯୋଗ କରୁଛୁ । ଏକ ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ସ୍ଥାପନ ସହ ସ୍ମୃତିସୌଧ ତାଙ୍କର ଜନ୍ମମାଟି ଗଡ଼ରେଙ୍ଗଳଠାରେ ନିର୍ମାଣ କରିବା ପାଇଁ ପ୍ରସ୍ତାବ ରହିଛି । ଏଥିପାଇଁ ମାଷ୍ଟର ମାଣିଆଙ୍କ ଅଗଣିତ ପ୍ରଶଂସକ, ଛାତ୍ରଛାତ୍ରୀ ଓ ଜନସାଧାରଣଙ୍କ ସାହାଯ୍ୟ ଓ ସମର୍ଥନ ଆମେ କାମନା କରୁଛୁ । ଏହି ପୁସ୍ତକର ବିକ୍ରୟ ଲବ୍ଧ ଅର୍ଥ ତାଙ୍କର ସ୍ମୃତିରକ୍ଷା ପାଇଁ ବିନିଯୋଗ ହେବ ।

*ସାଧାରଣ ସଂପାଦକ,*
*ମାଷ୍ଟର ମାଣିଆଁ ସ୍ମୃତି ସଂସଦ*

# ଗ୍ରନ୍ଥ ପ୍ରବେଶ

## (ରେଙ୍ଗାଳ ଗଡର ଐତିହ୍ୟ ସହ)

*ଅଧ୍ୟାପକ ପ୍ରଫୁଲ୍ଲ କୁମାର ପାଇକରାୟ*

ଓଡ଼ିଶାର ଧର୍ମ, ଦର୍ଶନ, ସଂସ୍କୃତି ଓ ସାମରିକ ପରମ୍ପରା ସମଗ୍ର ଭାରତବର୍ଷରେ ଅନନ୍ୟ । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମହାମହୀମ ମଗଧ ସମ୍ରାଟ ଚନ୍ଦ୍ର ଗୁପ୍ତ କଳିଙ୍ଗ ଆକ୍ରମଣରୁ ବିରତ ହେବା ପରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଅଶୋକଙ୍କ କଳିଙ୍ଗ ମହାସମର ତଥା ଚଣ୍ଡାଶୋକରୁ ଧର୍ମାଶୋକରେ ପରିବର୍ତ୍ତନ, ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକର ଅମୀତ ପରାକ୍ରମୀ ଐର ସମ୍ରାଟ ଖାରବେଳଙ୍କ ଭାରତ ବିଜୟ, ଭୌମକର ବଂଶୀ ରାଣୀମାନଙ୍କ ଅତୁଳନୀୟ ସଫଳ ରାଜତ୍ୱ, ସୋମବଂଶୀ ନରପତିମାନଙ୍କର ଅସୀମ ବଳବିକ୍ରମ ତଥା ସୁଦକ୍ଷ ଗଜବାହିନୀ ଗଠନ, ପ୍ରବଳ ପ୍ରତାପୀ ଗଙ୍ଗବଂଶୀ ଓ ସୂର୍ଯ୍ୟବଂଶୀ ନରପତିମାନଙ୍କ ବିଜୟ ଯାତ୍ରା ଓ ନିଶଙ୍କ ଶାସନ, ପ୍ରତାପରୁଦ୍ର ଦେବଙ୍କ ଯାଏ ଅବ୍ୟାହତ ରହି ଦୁର୍ଭାଗ୍ୟବଶତଃ ତାଙ୍କରି ଠାରୁହିଁ ଓଡ଼ିଶାର ଅଧପତନ ଘଟିଲା । ସଂସ୍କୃତ 'ମହାଭାରତ' ଓ 'ସାହିତ୍ୟ ଦର୍ପଣ' ପରି ବିଖ୍ୟାତ ଗ୍ରନ୍ଥମାନଙ୍କରେ 'କଳିଙ୍ଗାନାଂ ମହାରଥାଃ', 'କଳିଙ୍ଗାନାଂ ମହାତମୃମ୍' ଓ 'କଳିଙ୍ଗା ସାହସିକାଃ' ପରି ଶବ୍ଦମାନ ନିରର୍ଥକ ଭାବେ ପ୍ରୟୋଗ କରାଯାଇ ନାହିଁ । ସମଗ୍ର ଭାରତବର୍ଷରେ କେବଳ କଳିଙ୍ଗର ଅଧିବାସୀମାନେ ହିଁ ଦୀର୍ଘ ଦୁଇ ହଜାର ବର୍ଷ ପର୍ଯ୍ୟନ୍ତ ସେମାନଙ୍କ ସ୍ୱାଧୀନତାକୁ ଅତୁଟ ରଖି ବେପରୁୟା ଭାବେ ରାଜ୍ୟ ଶାସନ କରୁଥିଲେ । ଏଥିପାଇଁ ଉତ୍କଳର ସୁଦୃଢ଼ ଦୁର୍ଗ ଗୁଡ଼ିକ ଅନ୍ୟତମ କାରଣ ଭାବେ ବିବେଚିତ ହୋଇଥାଏ ।

ଭାରତବର୍ଷରେ ଏହି ଗଡ଼ ବା ଦୁର୍ଗ ନିର୍ମାଣ କଳା ଅତି ପ୍ରାଚୀନ । ଏପରିକି ବାଲ୍ମୀକି ବିରଚିତ ରାମାୟଣରେ ମଧ୍ୟ ଲଙ୍କା ଓ ଅଯୋଧ୍ୟା ଦୁର୍ଗର ବାସ୍ତବ ବର୍ଣ୍ଣନା ଦିଆଯାଇଅଛି । ସେଥିରେ ବନଦୁର୍ଗ, ବାରିଦୁର୍ଗ, ଗିରିଦୁର୍ଗ ତଥା କୃତ୍ରିମ ଦୁର୍ଗର ବର୍ଣ୍ଣନାମାନ କରାଯାଇଛି । ଦେବଭୂମି ଓ ବୀରଭୂମି ଉତ୍କଳ ଏହି ଦୁର୍ଗ ନିର୍ମାଣ କଳାରେ ପଛରେ ପଡ଼ିନଥିଲା । ଉତ୍କଳର ପ୍ରସିଦ୍ଧ ଚେଦୀ ବା ଐରବଂଶର ଜନୈକ ନରପତି ଆଧୁନିକ ଜଟଣୀ ବା ଖୋର୍ଦ୍ଧାରୋଡ଼ ଠାରୁ ତିନି କିଲୋମିଟର ଦୂର ଦକ୍ଷିଣ ପଶ୍ଚିମରେ ଅବସ୍ଥିତ ଏକ ବିଖ୍ୟାତ ପାହାଡ଼ର ପାଦଦେଶରେ ଐରଗଡ଼ ବା ଅରାଗଡ଼ ନାମକ ଏକ ଦୁର୍ଗ ସ୍ଥାପନ କରିଥିଲେ । ସେହି ରାଜା ତତ୍କାଳୀନ 'ବୋଟଳ' ବା ଆଧୁନିକ ବାଟଳ ନିକଟରେ ଏଇ ଦୁର୍ଗଟିକୁ ନିର୍ମାଣ କରାଇଥିଲେ । ଏହି ପ୍ରସିଦ୍ଧ ଦୁର୍ଗର ଅଂଶ ବିଶେଷ

ହେଉଛି ଗଡ଼ରେଙ୍ଗଙ୍କ । ପ୍ରକୃତରେ ଆଜି ମଧ ଅରାଗଡ଼ ପାହାଡ଼ର ଅର୍ଦ୍ଧାଧିକ ଅଞ୍ଚଳ ଗଡ଼ରେଙ୍ଗଙ୍କ ମୌଜାର ଅନ୍ତର୍ଭୁକ୍ତ । ପବିତ୍ର ଦଧିଭଦ୍ରା ବା ଦୟା ନଈ ଏହି ପବିତ୍ର ପାହାଡ଼ର ପଦ ସ୍ପର୍ଶକରି ପ୍ରବାହିତ ହେଉଛି । ଖାରବେଳଙ୍କ ଶିଳାଲେଖରେ ଏୖରଗଡ଼କୁ 'ନଗରୀ' ଭାବେ ଚିହ୍ନିତ କରା ଯାଇଛି । ଏହି ପ୍ରସିଦ୍ଧ ଦୁର୍ଗର ଚତୁର୍ଦ୍ଦିଗରେ ବହୁ ବିଖ୍ୟାତ ଦୁର୍ଗ ଘେରି ରହିଅଛି । ଏହି ଦୁର୍ଗ ଗୁଡ଼ିକ ଶାସନ ବିକେନ୍ଦ୍ରୀକରଣ, ସାମରିକ ପ୍ରଶିକ୍ଷଣ, ସୈନ୍ୟ ସଂଗ୍ରହ ତଥା ରାଜସ୍ୱ ଆଦାୟର କେନ୍ଦ୍ରବିନ୍ଦୁ ରୂପେ ବିବେଚିତ ହେଉଥିଲା ।

ଏବେ ମଧ ଏହି ରେଙ୍ଗଙ୍କ-ଅରାଗଡ଼ ପାହାଡ଼ ଉପରେ ତିନି କିଲୋମିଟର ବ୍ୟାପୀ ଅଞ୍ଚଳରେ ଗୋଟିଏ ଅକ୍ଷୁର୍ଣ୍ଣ ବୌଦ୍ଧଚୈତ୍ୟ ସହ ବହୁ ବୌଦ୍ଧ ମନ୍ଦିରର ଧ୍ୱଂସାବଶେଷ ବିକ୍ଷିପ୍ତ ଭାବେ ପଡ଼ିଥିବା ଭଗ୍ନ ବୌଦ୍ଧ ମୂର୍ତ୍ତି ସମୂହ, ବୌଦ୍ଧ ଶ୍ରମଣଙ୍କ ରହିବା ଘରର ଭିତ୍ତି, ଚେରମୂଳି କୁଟିବା ଖଲ, ଭଗ୍ନ ଇଷ୍ଟକ ଖଣ୍ଡ ପ୍ରଭୃତି ବହୁ ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଅବଶେଷ ମାନ ରହି ପ୍ରାଚୀନ ସ୍ମୃତିର ଚାରଣ କରୁଅଛି ।

ଯୁଗେ ଯୁଗେ କଳିଙ୍ଗଭୂମି ଥିଲା ନାନାବିଧ ଧର୍ମ ଦର୍ଶନର ମହାସଙ୍ଗମ ଓ ସମନ୍ୱୟ ସ୍ଥଳୀ । ଏହାଥିଲା ଆଦି ବୌଦ୍ଧଧର୍ମର ଲାଳନଭୂମି । ପ୍ରଥମ ବୌଦ୍ଧ ଦ୍ୱୟ ତପସ୍‌ସୁ ଓ ଭଲ୍ଲୀକ ଥିଲେ ଉତ୍କଳୀୟ । ବିଶ୍ୱର ପ୍ରଥମ ନଖସ୍ତୂପ ଓ କେଶସ୍ତୂପ ଏହି ସମନ୍ୱୟ ଭୂମିରେ ହିଁ ସ୍ଥାପିତ ହୋଇଥିଲା । ଏହି ପବିତ୍ର ଭୂମିହିଁ ନିଷ୍ଠୁର ଅଶୋକଙ୍କ ହୃଦୟ ପରିବର୍ତ୍ତନ କରାଇବାରେ ସମର୍ଥ ହୋଇଥିଲା । ଅଶୋକଙ୍କ ଭାଇ 'ତିସ୍‌ସ' ଏହି ବୌଦ୍ଧ ବିହାରରେ ଶେଷ ଜୀବନ ବିତାଇ ଥିଲେ । ତିସ୍‌ସଙ୍କ ଗୁରୁ ଧର୍ମରକ୍ଷିତ ଏବଂ ଗୁରୁ ଧ୍ୱଜକ କୁମାର, ଆଚାର୍ଯ୍ୟ ମହାଦେବ, ଆଚାର୍ଯ୍ୟ କାଳ (କୃଷ୍ଣ), ଆଚାର୍ଯ୍ୟ ପୋଷଦ୍ଧ ପ୍ରଭୃତି ଉତ୍କଳରେ ବୌଦ୍ଧ ଧର୍ମ ପ୍ରଚାର ଓ ପ୍ରସାର କାର୍ଯ୍ୟରେ ନିଜକୁ ନିୟୋଜିତ ରଖିଥିଲେ । ମହାଯାନର ଆଦି ଭୂମି ଏହି ଉତ୍କଳରେ ହିଁ ବିଖ୍ୟାତ ବୌଦ୍ଧ ଗ୍ରନ୍ଥ 'ପ୍ରଜ୍ଞାପାରମିତା' ରଚିତ ହୋଇଥିଲା । ଏବେ ମଧ ଏ ଦେଶରୁ ଯାଇଥିବା ଦନ୍ତଧାତୁ ଓ ବୋଧିଦ୍ରୁମର ଶାଖା ସିଂହଳରେ ଧର୍ମଜୀବନର କେନ୍ଦ୍ରବିନ୍ଦୁ ରୂପେ ବିବେଚିତ ହେଉଅଛି । ବୌଦ୍ଧ ଧର୍ମକୁ ବିତାଡ଼ିତ କଲେ ମଧ ପରମ କାରୁଣିକ ତଥାଗତ ବୁଦ୍ଧଙ୍କୁ ଅବତାର ଭାବେ ଏ ଦେଶ ଗ୍ରହଣ କରିଛି । ଉତ୍କଳର ବୌଦ୍ଧସଂସ୍କୃତିକୁ ସାଗର ସେପାରିରେ ପ୍ରଚାର କରିବା ନିମିତ୍ତ ଏହାର ପୋତାଶ୍ରୟମାନ ଥିଲା ପ୍ରଧାନ ଅବଲମ୍ବନ । ବୌଦ୍ଧଧର୍ମକୁ ସମଗ୍ର ବିଶ୍ୱରେ ପ୍ରଚାର ଓ ପ୍ରସାର କରାଇବାରେ କଳିଙ୍ଗର ଅସାଧାରଣ ଅବଦାନ ରହିଅଛି । ଉତ୍କଳର ପ୍ରସିଦ୍ଧ ବୌଦ୍ଧ ବିହାରଗୁଡ଼ିକ ମଧ୍ୟରେ ପରିମଳଗିରି, ସୁରଭଗିରି, ଭୋରଶୈଳ,

ତାମ୍ରଲିପ୍ତ ଓ ଚେଳିତୋଲା ପ୍ରଭୃତି ପ୍ରଧାନ ଥିଲା । ଆଚାର୍ଯ୍ୟ ନାଗାର୍ଜୁନ, ଆର୍ଯ୍ୟଦେବ ସର୍ବଗାମୀ, ଦିଙ୍ନାଗ, ଧର୍ମକୀର୍ତ୍ତି ପ୍ରଭୃତି ଆଚାର୍ଯ୍ୟମାନଙ୍କର ସେଗୁଡ଼ିକ ପୀଠସ୍ଥଳ ଥିଲା । ଉତ୍କଳୀୟ ସିଦ୍ଧସାଧକ ଇନ୍ଦ୍ରଭୂତି ଓ ତାଙ୍କ ଭଗ୍ନୀ କାୟା ସାଧିକା ଲକ୍ଷ୍ମୀଙ୍କରାଙ୍କ ଚିନ୍ତାଧାରାର ପ୍ରଭାବ ଭାରତୀୟ ଜନ ଜୀବନକୁ ଗଭୀର ଭାବେ ପ୍ରଭାବିତ କରିଥିଲା । ଇନ୍ଦ୍ରଭୂତିହିଁ ଜଗନ୍ନାଥଙ୍କ ଠାରେ ସର୍ବ ପ୍ରଥମେ ବୁଦ୍ଧତ୍ୱ ଆରୋପ କରିଥିଲେ ।

''ପ୍ରଣିପତ୍ୟ ଜଗନ୍ନାଥ
ସର୍ବଦୀନ ବରାର୍ଚ୍ଚିତ
ସର୍ବବୁଦ୍ଧ ମୟଂ ନିତ୍ୟଂ
ବ୍ୟାପିନଂ ଖଗନୋପମ୍''

-ଇନ୍ଦ୍ରଭୂତି

ଇନ୍ଦ୍ରଭୂତିଙ୍କ ପ୍ରବର୍ତ୍ତିତ ବଜ୍ରଯାନ ଯେ ପରବର୍ତ୍ତୀ କାଳରେ ଜଗନ୍ନାଥ ଯାନରେ ପରିଣତ ହୋଇଛି ତାହା ବିନା ଦ୍ୱିଧାରେ କୁହାଯାଇପାରେ । ଧଉଳି ପାହାଡ଼ଠାରୁ ଡେଲାଙ୍ଗ ନିକଟସ୍ଥ ବିଶ୍ୱନାଥ ମୁଣ୍ଡିଆ ପର୍ଯ୍ୟନ୍ତ ଧାଡ଼ି ଧାଡ଼ି ହୋଇ ଅନେକ ପାହାଡ଼ ରହିଅଛି । ତାହାରି ମଧ୍ୟରେ ଭୋରଶୈଳର ଅବସ୍ଥିତି ଥିଲା ଉତ୍କଳର ପ୍ରଖ୍ୟାତ ଐତିହାସିକ ଡକ୍ଟର ନବୀନ କୁମାର ସାହୁ ବିଶ୍ୱନାଥ ମୁଣ୍ଡିଆକୁ ଭୋରଶୈଳ ବୋଲି କହିଛନ୍ତି । ଏହି ମୁଣ୍ଡିଆ, ତଦୁପରି ଥିବା ଶିବଲିଙ୍ଗ ତଥା ସମୀପବର୍ତ୍ତୀ ପାହାଡ଼ ଓ ଗୁମ୍ଫାମାନଙ୍କ ସମ୍ପର୍କରେ ମାଦଳା ପାଞ୍ଜି ବର୍ଣ୍ଣିତ ଘଟଣା ଐତିହାସିକ ସତ୍ୟର ନିକଟବର୍ତ୍ତୀ ମନେହୁଏ । ''କାଳୁପଡ଼ା ବିଦ୍ଧେଶ୍ୱରୀ ପର୍ବତ ଉପରେ ବିଷ୍ଣୁ ସ୍ୱାମୀ ଲିଙ୍ଗ । ଏହାଙ୍କ ପଶ୍ଚିମ ଦିଗରେ ସାଆଳା ପର୍ବତ ଓ ପାଆଁରା ପର୍ବତ, ପରଙ୍ଗ ଦଣ୍ଡପାଟେ ଅରାଗଡ଼ ପର୍ବତ, ଧଉଳି ପର୍ବତ, ଏସବୁ ପର୍ବତ କନ୍ଦରାମାନଙ୍କରେ ଚଉରାଅସି ଗୁମ୍ଫାମାନ କରି ସିଦ୍ଧ ବୌଦ୍ଧମାନେ ରହିଅଛନ୍ତି । (ପ୍ରାଚୀ ସମିତି ପ୍ରକାଶିତ ମାଦଳା ପାଞ୍ଜି - ପୃ ୨୫)

ସମୀପବର୍ତ୍ତୀ ରେଙ୍ଗଳ ଅରାଗଡ଼ ମୁଣ୍ଡିଆକୁ ଭୋରଶୈଳ କହିବା ଅଧିକ ଯୁକ୍ତିଯୁକ୍ତ ହେବ । ପୂର୍ବରୁ ଏହି ପାହାଡ଼ ଉପରେ ପର୍ଯ୍ୟାପ୍ତ ବୌଦ୍ଧ ବିହାରର ଅବଶେଷ ରହିଥିବା କଥା କୁହାଯାଇଛି । ପାହଡ଼ର ପୂର୍ବକୋଣରେ ରହିଥିବା ନିଖୁଣ ବୌଦ୍ଧ ସ୍ତୂପ ଓ ତାର ସମ୍ମୁଖ ଭାଗରେ ଥିବା ଶିଳାଲେଖଟି ଏକ ବୌଦ୍ଧ ସାରେଣୀ ବା ବୀଜମନ୍ତ୍ର ବୋଲି ଡକ୍ଟର ସତ୍ୟ ନାରାୟଣ ରାଜଗୁରୁ ପାଠ କରିଛନ୍ତି । ଯଦିଓ ଖ୍ରୀଷ୍ଟୀୟ ଚତୁର୍ଥ

ଶତାବ୍ଦୀ ଠାରୁ ବୌଦ୍ଧ ବିରୋଧୀ ଶୈବ ପାଶୁପତ ମତର ଅଭ୍ୟୁଦୟ ହୋଇ ବୌଦ୍ଧ ବିଲୋପ ଆନ୍ଦୋଳନ ଭାରତରେ ମୁଣ୍ଡ ଟେକିଥିଲା, ତଥାପି ଉତ୍କଳରେ ବହୁ ବୌଦ୍ଧାଚାର୍ଯ୍ୟଙ୍କ ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ଏ ଧର୍ମ ଦ୍ୱାଦଶ ଶତାବ୍ଦୀ ଯାଏଁ ତିଷ୍ଠି ରହିଥିଲା । ମାଦଳା ପାଞ୍ଜିରୁ ଜଣାଯାଏ ଯେ ମଦନ ମହାଦେବ ବା ରାଜରାଜ ଦେବ (୧୧୭୦-୧୧୯୪)ଙ୍କ ପର୍ଯ୍ୟନ୍ତ ବୌଦ୍ଧ ସନ୍ୟାସୀମାନେ ରେଙ୍ଗଲ-ଅରାଗଡ଼ ଓ ତତ୍ ସମୀପବର୍ତ୍ତୀ ପାହାଡ଼ମାନଙ୍କରେ ବାସ କରୁଥିଲେ । ମାତ୍ର ରାଜା ବୌଦ୍ଧ ବିରୋଧୀ ହୋଇ ସେମାନଙ୍କ ମୁଣ୍ଡ ଛେଚାଇବାରୁ ସେମାନଙ୍କ ମଧ୍ୟରୁ କେତେକ ବୈଷ୍ଣବ ଧର୍ମ ଗ୍ରହଣ କରି ଜୀବନ ରକ୍ଷାକଲେ ଓ ଅବଶିଷ୍ଟ ବୌଦ୍ଧ ରାଜାଙ୍କୁ ଅଭିଶାପ ଦେଇ ଗୁମ୍ଫାମାନଙ୍କରୁ ବାହାରି ଦୂର ଅରଣ୍ୟକୁ ପଳାଇଲେ । ପରେ ସେ ପରିତ୍ୟକ୍ତ ଗୁମ୍ଫା ମାନଙ୍କରେ ହିନ୍ଦୁ ସାଧୁ ସନ୍ୟାସୀଗଣ ବାସ କଲେ ।

ଏ ପ୍ରସଙ୍ଗରେ ଗୁରୁତ୍ୱପୂର୍ଣ୍ଣ କଥା ଏହିଯେ ମଦନ ମହାଦେବ ସିରାଇ ଦଣ୍ଡପାଟ ଅନ୍ତର୍ଗତ ସହଜପାରି କଟକରେ ରାଜଧାନୀ କରି ରହିଥିଲେ । ତାଙ୍କ ରାଜଧାନୀ ରେଙ୍ଗଲ ଅରାଗଡ଼ ନିକଟବର୍ତ୍ତୀ ଥିଲା । ଘୋରଡ଼ିଆ ପଞ୍ଚାୟତ ଅନ୍ତର୍ଗତ କୁଆପଦା ଗ୍ରାମ ମୁଣ୍ଡ 'ଧ୍ୱଜା' ପାହାଡ଼ର ମଧ ଭାଗରେ ଏହି ଭଗ୍ନ ପ୍ରାସାଦର ଭିତ୍ତିଭୂମି ଓ ଏକ ପୋତା କୂଅ ରହିଅଛି । ଜଗତି ପଡ଼ିଆରେ ରାଜାଙ୍କ ସେନା ନିବାସ, ଅଶ୍ୱଶାଳା, ଘୋଡାହାତୀ ଶାଳା ପ୍ରଭୃତି ରହିଥିଲା । ନିକଟରେ ପ୍ରାୟ ଶହେ ଏକର ବିଶିଷ୍ଟ ଏକ ବିରାଟ ଜଳାଶୟ ରହିଅଛି । ବୌଦ୍ଧ ବିରୋଧୀ ଆନ୍ଦୋଳନ ଶଙ୍କରାଚାର୍ଯ୍ୟଙ୍କ ଠାରୁ ମଦନ ମହାଦେବଙ୍କ ପର୍ଯ୍ୟନ୍ତ ବିଭିନ୍ନ ସ୍ତର ଦେଇ ଗତି କରିଥିଲା । ଉତ୍କଳରେ ଅନେକତ୍ର ବୌଦ୍ଧସ୍ତୂପ ଗୁଡ଼ିକ ଶିବଲିଙ୍ଗରେ ପରିଣତ ହୋଇଥିଲା । ବୌଦ୍ଧକ୍ଷେତ୍ର ମାନଙ୍କରେ ଶିବଲିଙ୍ଗ ପ୍ରତିଷ୍ଠା କରାଯାଇଥିଲା । ବୌଦ୍ଧକ୍ଷେତ୍ର ପ୍ରସିଦ୍ଧ ଧଉଳିପାହାଡ ଉପରେ ଶିବଲିଙ୍ଗ ସ୍ଥାପନ ହେବାପରି ବୌଦ୍ଧକ୍ଷେତ୍ର ଅରାଗଡ଼ର ମାହାତ୍ମ୍ୟ ଲୋପକରିବାକୁ ୧୬୮ ଫୁଟ ଉଚ୍ଚ ବିନ୍ଧେଶ୍ୱରୀ ପାହାଡ ଉପରେ ବିଷ୍ଣୁସ୍ୱାମୀ ଲିଙ୍ଗ ସ୍ଥାପିତ ହୋଇଥିଲା । ଅରାଗଡ଼ ରେଙ୍ଗଲ ପାହାଡର ଠିକ୍ ପୂର୍ବକୁ ପ୍ରସିଦ୍ଧ ଦୟାନଦୀ କୂଳରେ ମଦନ ମହାଦେବ 'କୁନ୍ତେଶ୍ୱର' ମନ୍ଦିର ନିର୍ମାଣ କରାଇଥିଲେ । କେବଳ ସେତିକି ନୁହେଁ ଏହାର ପଶ୍ଚିମ ଦିଗରେ ବଣିବକ୍ରେଶ୍ୱର ପର୍ବତ ନିକଟରେ ପୂର୍ବରୁ ଅନନ୍ତବର୍ମଣ ଚୋଡଗଙ୍ଗ ଦେବଙ୍କ ଜନୈକା ରାଣୀ ସାମଳା ଦେବୀଙ୍କ ପ୍ରତିଷ୍ଠିତ ସାମଳେଶ୍ୱର ମହାଦେବଙ୍କ ମନ୍ଦିର ପୁନଃ ନିର୍ମାଣ କରି ତାହାକୁ 'ବଣିବକ୍ରେଶ୍ୱର' ନାମରେ ନାମିତ କରିଥିଲେ ।

ନିକଟ ଅତୀତରେ ଅରାଗଡ଼ ଗ୍ରାମ ନିକଟରେ ହଳକରୁଥିବା ଜନୈକ ଚାଷୀ ଲଙ୍ଗଳ ମୁନରେ ପଥର ବାଜିବାରୁ ତାକୁ ଖୋଳିବାରୁ ଚାରିଗୋଟି କାରୁକାର୍ଯ୍ୟ ପୂର୍ଣ୍ଣ ଅସାମାନ୍ୟ ବୌଦ୍ଧମୂର୍ତ୍ତି ଓ ଅନେକ ବୌଦ୍ଧସ୍ତୂପ ପାଇଥିଲେ । ବର୍ତ୍ତମାନ ସେଗୁଡ଼ିକ ନିକଟବର୍ତ୍ତୀ ହରିପୁର ଗ୍ରାମରେ ପୂଜିତ ହେଉଛନ୍ତି । ଏହି ପ୍ରସିଦ୍ଧ ପାହାଡ଼ ଉପରେ ରହିଥିବା ବୌଦ୍ଧ ବିହାରର ନାମ 'ଜଗଦଳ ବିହାର' ଥିଲା ବୋଲି ଶ୍ରୀ ଦିବ୍ୟସିଂହ ଚମୂପତି ତାଙ୍କ ଲିଖିତ ଅରାଗଡ଼ର ଇତିହାସରେ ପ୍ରମାଣ କରିଛନ୍ତି । ଏହାର ସ୍ମୃତିସ୍ୱରୂପ ନିକଟସ୍ଥ ଜଗଦଳପୁର ଗ୍ରାମ ସ୍ଥାପିତ ହୋଇଥିବାର ଅନୁମେୟ । ମାଧମିକ ଦର୍ଶନ ତଥା ଯେଗାଚାର ବିଜ୍ଞାନବାଦର ମହାନ୍ ପଣ୍ଡିତ ଆଚାର୍ଯ୍ୟ ଦିଙ୍ଗ୍ନାଗଙ୍କ ଆଶ୍ରମ ଏହିଠାରେ ଥିଲା । ସେଥିଲେ ଭାରତର ନ୍ୟାୟଦର୍ଶନର ପିତା । ତାଙ୍କର 'ପ୍ରମାଣ ସମୁଚ୍ଚୟ' ଗ୍ରନ୍ଥ ରଚିତ ହେବାପରେ ଭାରତୀୟ ଜ୍ଞାନରାଜ୍ୟରେ ଚାଞ୍ଚଲ୍ୟ ଖେଳିଯାଇଥିଲା । ତତ୍କାଳୀନ ଭାରତୀୟ ସାଂଖ୍ୟଦର୍ଶନର ମହାନ୍ ପଣ୍ଡିତ ଓ 'ସାଂଖ୍ୟକାରିକା' ଗ୍ରନ୍ଥର ରଚୟିତା ଈଶ୍ୱରକୃଷ୍ଣ ଏହି ଭୋରଶୈଳକୁ ଆସି ଆଚାର୍ଯ୍ୟ ଦିଙ୍ଗ୍ନାଗଙ୍କ ସହ ତର୍କରେ ପ୍ରବୃତ୍ତ ହୋଇ ପରାଜୟ ବରଣ କରିଥିଲେ । ଆଚାର୍ଯ୍ୟ ଦିଙ୍ଗ୍ନାଗଙ୍କ ଦର୍ଶନ ଉପରେ ଭିତ୍ତିକରି ଧର୍ମକୀର୍ତ୍ତି ଯେଉଁ ପ୍ରସିଦ୍ଧ ଗ୍ରନ୍ଥ 'ନ୍ୟାୟ ବିନ୍ଦୁ' ରଚନା କଲେ, ତାହା ବୌଦ୍ଧନ୍ୟାୟକୁ ଚରମ ସ୍ଥିତିରେ ପହଞ୍ଚାଇ ଦେଇଥିଲା, କହିଲେ ଅତ୍ୟୁକ୍ତି ହେବନାହିଁ ।

ତତ୍କାଳୀ କଳିଙ୍ଗ ରାଜା ଓ ତାଙ୍କ ମନ୍ତ୍ରୀ 'ଭଦ୍ର ପାଳିତ' ଦିଙ୍ଗ୍ନାଗଙ୍କ ଶିଷ୍ୟତ୍ୱ ଗ୍ରହଣ କରି ଏ ଅଞ୍ଚଳରେ ଷୋହଳଗୋଟି ବିହାର ନିର୍ମାଣ କରାଇଥିଲେ । ଅନୁମିତ ହୁଏ ସେ ତାଙ୍କ ଗୁରୁଙ୍କ ନିବାସସ୍ଥଳି ଭୋରଶୈଳରେ ନିଶ୍ଚିତ ଭାବେ ଗୋଟିଏ ବୌଦ୍ଧବିହାର ନିର୍ମାଣ କରାଇଥିବେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦିଙ୍ଗ୍ନାଗ ଏହି ବୌଦ୍ଧ ବିହାରରେ ଅବସ୍ଥାନ କରିଥିଲେ । ତାଙ୍କ ସ୍ମୃତିରେ ନିକଟସ୍ଥ ଡେଲାଙ୍ଗ ଗ୍ରାମ ପ୍ରତିଷ୍ଠିତ ହୋଇଥିବା ଅନୁମେୟ । ଅନୁରୂପ ଭାବେ ଭୋରଶୈଳର ସ୍ମୃତିରେ ଘୋରଶୈଳ ବା ଘୋରଡିଆ ଗ୍ରାମ ପ୍ରତିଷ୍ଠିତ ହୋଇପାରିଥାଏ । ମଗଧର ପ୍ରାଚୀନତମ ବୌଦ୍ଧ ବିହାର ରାଜଗୃହ ପରି ଏହାର ଚତୁର୍ଦ୍ଦିଗରେ ବିଭିନ୍ନ ବନ-ପର୍ବତ ପରିବେଷ୍ଟିତ ହୋଇ ରହିଥିଲା ।

ଜଗଦଳ ବିହାର ହେଉଛି ଭାରତର ଶେଷ ମହାଯାନୀ ବୌଦ୍ଧ ପୀଠ । ଏହା ଦ୍ୱାଦଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଖ୍ୟାତି ଅର୍ଜନ କରିଥିଲା । ଯେଉଁ ସମୟରେ ବକ୍ତିଆର ଖିଲିଜଙ୍କ ନେତୃତ୍ୱରେ ମୁସଲମାନ ମାନେ ନାଳନ୍ଦା ଦନ୍ତପୁରୀ, ତୈକୁଟକ ଓ ବିକ୍ରମଶିଳା ପ୍ରଭୃତି ବୌଦ୍ଧ ବିହାରକୁ ଧ୍ୱଂସ କରି ସହସ୍ରାଧିକ ବୌଦ୍ଧ ଭିକ୍ଷୁଙ୍କୁ ଅତି ନିର୍ଦ୍ଦୟ ଭାବେ

ହତ୍ୟା କଲେ, ସେତେବେଳେ ଏହି ବୌଦ୍ଧ ବିହାର ବହୁ ବୌଦ୍ଧଭୀକ୍ଷୁଙ୍କୁ ଆଶ୍ରୟ ପ୍ରଦାନ କରିଥିଲା । ୧୨୦୨ ଖ୍ରୀଷ୍ଟାବ୍ଦରେ ବିକ୍ରମଶିଳା ବିହାରର କୁଳପତି ଶାକ୍ୟ ଶ୍ରୀଭଦ୍ର ଏହିଠାରେ ହିଁ ଆଶ୍ରୟ ଗ୍ରହଣ କରିଥିଲେ । ଏହି ପବିତ୍ର ବିହାରରେ ନୈୟାୟିକ 'ମୋକ୍ଷାକର ଗୁପ୍ତ', ଶାସ୍ତ୍ର ଅନୁବାଦକ 'ବିଭୁତି ଚନ୍ଦ୍ର', ଦାର୍ଶନିକ 'ତନ୍ତ୍ରାଚାର୍ଯ୍ୟ ଗୁପ୍ତ' ପ୍ରଭୃତି ପଣ୍ଡିତମାନେ ଶାସ୍ତ୍ରାଭ୍ୟାସରେ ମଗ୍ନ ରହୁଥିଲେ । ଏହିଠାରେ ରହି ଅନେକ ବୌଦ୍ଧ ଭୀକ୍ଷୁ ପ୍ରସିଦ୍ଧ ବୌଦ୍ଧ ଗ୍ରନ୍ଥଗୁଡ଼ିକୁ ତୀବ୍ବତୀୟ ଭାଷାରେ ଅନୁବାଦ କରୁଥିଲେ ।

ତଦାନିନ୍ତନ ଭାରତ ବର୍ଷରେ ଯେଉଁ କେତେ ଗୋଟି ମୁଖ୍ୟ ରାଜପଥ ରହିଥିଲା, ତନ୍ମଧ୍ୟରୁ ତୋଷାଳୀ-ଉଜ୍ଜୟିନୀ ରାଜପଥ ଅନ୍ୟତମ ଥିଲା । ଏହି ରାଜପଥ ତୋଷାଳୀଠାରୁ ଦୟାନଦୀ କୂଳେକୂଳେ ରେଙ୍ଗଳ-ଅରାଗଡ଼ ମଧ ଦେଇ ପ୍ରସିଦ୍ଧ ବରୁଣାଇ ପାହାଡ଼ ଘାଟି ପାର ହୋଇ କଣ୍ଟିଲୋବାଟେ ବରମୂଳଘାଟି ଅତିକ୍ରମ କରି ବୌଦ୍ଧ ଗନ୍ଧରାଢ଼ୀ ଦେଇ ସୁବର୍ଣ୍ଣପୁରକୁ ସ୍ପର୍ଶ କରିଥିଲା । ସେଠାରୁ ଅଙ୍ଗନଦୀ କୂଳେ କୂଳେ ଯାଇ ଶ୍ରୀପୁର ରତ୍ନପୁର ବିଦିଶାଦେଇ ଉଜ୍ଜୟିନୀକୁ ସ୍ପର୍ଶ କରିଥିଲା ।

ଏହି ଐତିହାସିକ ପୀଠରେ ଦୁଇ ଗୋଟି ପ୍ରସିଦ୍ଧ ଯୁଦ୍ଧ ସଂଘଟିତ ହୋଇଥିଲା । ମୋଗଲ ସମ୍ରାଟ ଆକବରଙ୍କ ରାଜତ୍ୱ କାଳରେ ପ୍ରସିଦ୍ଧ ଖୋର୍ଦ୍ଧା ଦୁର୍ଗକୁ ଅଧିକାର କରିବା ପାଇଁ ମୋଗଲ ସେନା ଦୁଇଥର ସୈନ୍ୟ ଚାଳନା କରି ଅକୃତକାର୍ଯ୍ୟ ହେବା ପରେ ତୃତୀୟଥର ପାଇଁ ଖୋର୍ଦ୍ଧା ଦଖଲ କରିବାକୁ ସୈନ୍ୟଚାଳନା କରିଥିଲେ । ଏଥର ମୋଗଲ ସେନା ବ୍ୟାପକ ଅଭିଯାନ ଚଳାଇଥିଲେ । ଭାରତ ବିଖ୍ୟାତ ହଳଦିଘାଟ ଯୁଦ୍ଧରେ ଅସାମାନ୍ୟ ସ୍ୱଦେଶପ୍ରେମୀ ବୀର ରାଣାପ୍ରତାପଙ୍କୁ ପରାସ୍ତ କରିଥିବା ଶ୍ରେଷ୍ଠ ମୋଗଲ ସେନାପତି ରାଜା ମାନସିଂହ, ତାଙ୍କ ସୁଦକ୍ଷପୁତ୍ର ସେନାପତି ଜଗତ୍ ସିଂହ ଓ ତତ୍କାଳୀନ ମୋଗଲ ସେନାର ଅନ୍ୟ ଛଅଜଣ ଶ୍ରେଷ୍ଠ ସେନାପତି ଏହି ଯୁଦ୍ଧକୁ ପରିଚାଳନା କରୁଥିଲେ । ଏହି ବିରାଟ ସେନା ୧୫୯୩ ଖ୍ରୀଷ୍ଟାବ୍ଦ ଜାନୁୟାରୀ ମାସରେ ଆକ୍ରମଣ ଚଳାଇ ଅଳ୍ପଦିନ ମଧ୍ୟରେ ଖୋର୍ଦ୍ଧା ଦୁର୍ଗ ନିକଟସ୍ଥ କେତେକ ପ୍ରସିଦ୍ଧ ଗଡ଼କୁ ଜୟକରି ନେଇଥିଲେ । ସେ ସମ୍ପର୍କରେ 'ଆକବର ନାମା' ତୃତୀୟ ଭାଗ, ପୃ ୯୬୭ରୁ ୯୬୮ରେ ଲିଖିତ ଅଛି ।

"The forts Sahajpal, Kharagarh, Kalupara garh, Kahnan, Longarh, Bhuinmal and many populated places fell into the possession."

ଏହି Longarh କୁ ଲୁଣିଗଡ଼ ବା ରେଙ୍ଗଳଗଡ଼ ସହିତ ଚିହ୍ନିତ କରା ଯାଇପାରେ । ରାଜା ରାମଚନ୍ଦ୍ର ପୂର୍ବରୁ ସନ୍ଧି କରିବାକୁ ପ୍ରସ୍ତୁତ ଥିବା ସତ୍ତ୍ୱେ ମୋଗଲ

ସେନା ଯୁଦ୍ଧ କରି ସେମାନଙ୍କର ବହୁକ୍ଷତି ସାଧନ କରିଥିଲେ । ଏହା ଜାଣି ଆକବର ଘୋର ବିରକ୍ତି ପ୍ରକାଶ କରିବାରୁ ମାନସିଂହ ଯୁଦ୍ଧ ବନ୍ଦକରି ରାଜାଙ୍କ ସହ ସନ୍ଧି ସ୍ଥାପନ କରିଥିଲେ । ରାଜା ମୋଗଲ ଅଧୀନତା ସ୍ୱୀକାର କରିବାରୁ ମୋଗଲ ଅଧୀକୃତ ଅଞ୍ଚଳ ଫେରିପାଇଲେ ଓ ରାମଚନ୍ଦ୍ର ଦେବ ମହାରାଜା ଉପାଧୀ ପ୍ରାପ୍ତ ହେଲେ ।

ରେଙ୍ଗାଳ-ଅରାଗଡ଼ ନିକଟରେ ଅନ୍ୟ ଏକ ପ୍ରସିଦ୍ଧ ଯୁଦ୍ଧ ହୋଇଥିଲା, ମୋଗଲ ସମ୍ରାଟ ଆଉରଙ୍ଗ ଜେବଙ୍କ ସମୟରେ । କଟକ ମୋଗଲ ସୁବାଦାର ଖାନ୍-ଇ-ଦୁରାନ୍ ସେହି ପ୍ରସିଦ୍ଧ ଖୋର୍ଦ୍ଧା ଦୁର୍ଗକୁ ଦଖଲ କରିବାକୁ ୧୬୬୧ ଫେବୃୟାରୀ ସାତ ତାରିଖରେ ଯୁଦ୍ଧ ଯାତ୍ରା କରି ଫେବୃୟାରୀ ୧୬ ତାରିଖ ଦିନ ଏକ ଉଚ୍ଚ ପାହାଡ଼ ନିକଟରେ ପ୍ରବଳଯୁଦ୍ଧ ଚଳାଇଥିଲେ । ଏହି ଯୁଦ୍ଧରେ ବାଙ୍କି ଓ ରଣପୁରର ଜମିଦାର ଦ୍ୱୟ ତଥା ଭୂଇଁଆ ଓ ଖଣ୍ଡାୟତମାନେ ଏକତ୍ରିତ ହୋଇ ଯୁଦ୍ଧ କଲେ ମଧ ମୋଗଲ ସେନାଙ୍କ ପ୍ରବଳ ଗୁଳିଗୋଳା ସମ୍ମୁଖରେ ତିଷ୍ଠି ନପାରି ପୃଷ୍ଠଭଙ୍ଗ ଦେଇଥିଲେ । ମୋଗଲ ସେନା ଏହି ଯୁଦ୍ଧରେ ସାତ ଗୋଟି ଦୁର୍ଗକୁ ଅଧିକାର କରିନେଇ ସେଥିରେ ଥାନାମାନ ସ୍ଥାପନ କରିଥିଲେ । ଯେଉଁ ଉଚ୍ଚ ପାହାଡ଼ ତଳେ ଯୁଦ୍ଧ ହୋଇଥିଲା, ତାହାକୁ ରେଙ୍ଗାଳ-ଅରାଗଡ଼ ପାହାଡ଼ ଭାବେ ନିର୍ଣ୍ଣୟ କରାଯାଇ ପାରେ । ସେମାନଙ୍କ ବିଜିତ ସାତଗୋଟି ଦୁର୍ଗ ହେଲା : ଗଡ଼କାଳୁପଡ଼ା, ଗଡ଼ମୋଟରୀ, ଗଡ଼ ଘୋରଡ଼ିଆ, ଗଡ଼ ବେଗୁନିଆପଡ଼ା, ଗଡ଼ରେଙ୍ଗାଳ ଗଡ଼ ଗୋଡିପୁଟ ମାଟିଆପଡ଼ା ଓ ଅରାଗଡ଼ । ଏହି ଭୟାବହ ଯୁଦ୍ଧ ମୁଖ୍ୟତଃ ରେଙ୍ଗାଳ-ଅରାଗଡ ପାହାଡର ଦକ୍ଷିଣ ପୂର୍ବ ଓ ଉତ୍ତର ଦିଗରେ ସଂଘଠିତ ହୋଇଥିବାର ଅନୁମେୟ । ନିଷ୍ଠୁର ଖାନ୍-ଇ-ଦୁରାନ୍ ଯୁଦ୍ଧ ସମୟରେ ଏହି ଦୁର୍ଗଗୁଡ଼ିକୁ ପ୍ରାୟ ଧ୍ୱସ୍ତ ବିଧ୍ୱସ୍ତ କରି ଦେଇଥିଲେ । ଏବେ ମଧ ତାହାର ମୁକସାକ୍ଷୀ ସ୍ୱରୂପ ସନ୍ନିକଟ ବିସ୍ତୀର୍ଣ୍ଣ ପ୍ରାନ୍ତର ଗୁଡ଼ିକରେ ଅନେକ ଭଗ୍ନ ମନ୍ଦିର, ପତିତ କୂପ ମାଟିସ୍ତୂପ, ଭଗ୍ନ ଇଟା ଓ ଭଙ୍ଗା ଖପରା ଗୁଡ଼ିକ ଇତସ୍ତତ ଭାବେ ରହିଅଛି । କେବଳ ସେତିକି ନୁହେଁ, ଖାନ୍‌ଙ୍କ ଅତ୍ୟାଚାରୀ ଶାସନ ଯୋଗୁଁ ପ୍ରଜାମାନେ ଗ୍ରାମଛାଡ଼ି ଜଙ୍ଗଲକୁ ପଳାୟନ କରିଥିଲେ ।

ରେଙ୍ଗାଳ ଗଡ଼ ସମ୍ପର୍କରେ ଗଜପତି ବୀର କେଶରୀ ଦେବଙ୍କର ଏକ ଛାମୁଚିଟାଉ ତାଙ୍କ ରାଜତ୍ୱର ୩୮ ଅଙ୍କ ୧୭୬୭ ଖ୍ରୀଷ୍ଟାବ୍ଦରେ ବକ୍ସି ଗୋପୀନାଥ ଭ୍ରମରବରଙ୍କୁ ଗଡ଼ର ଆୟ ଅମଳ ଦାୟିତ୍ୱ ନେଇ ସଂପୃକ୍ତ ସମସ୍ତ ରାଜ କର୍ମଚାରୀମାନଙ୍କ ସହ ଦଳ ବେହେରାଙ୍କୁ ଏଥିରେ ଆଦେଶ ପ୍ରଦାନ କରାଯାଇଛି । ଶ୍ରୀଯୁକ୍ତ ଚମୂପତିଙ୍କ ବକ୍‌ସି ବଂଶର ନୂତନ ଇତିହାସ ଗ୍ରନ୍ଥରେ ଏହା ସ୍ଥାନିତ ହୋଇଅଛି ।

ରେଙ୍ଗଲ ଗଡ଼ର ଗର୍ବ ଓ ଗୌରବର ସ୍ମାରକୀ ହେଉଛି ଏହି ଗଡ଼ାଧିପତି କହ୍ନେଇ ଚମ୍ପତିରାୟଙ୍କ କୃତ 'ପାଇକ ଖେଦା' ଗ୍ରନ୍ଥ । ଏହା ୧୬୨୩ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସରେ ରଚିତ । ଏ ଖେଦା ଉତ୍କଳୀୟ ସମରକଳାର ଅତି ପ୍ରାମାଣିକ ଅନୁଭୂତିପୂର୍ଣ୍ଣ ଉପଦେୟ ଗ୍ରନ୍ଥ । ସମଗ୍ର ଓଡ଼ିଆ ସାହିତ୍ୟରେ ଏ ଗ୍ରନ୍ଥର ପଟାନ୍ତର ନାହିଁ । କବିଙ୍କ ପିତା ଶ୍ରୀପତି ଚମ୍ପତିରାୟ ପ୍ରସିଦ୍ଧ ଦୁର୍ଗ ଗଡ଼କୋକଲର ଅଧିନାୟକ ଥିଲେ । ତାଙ୍କର ତିନିପୁଅ ମଧ୍ୟରୁ ବଡ଼ପୁଅ ବାଲୁଙ୍କି ପିତାଙ୍କ ପରେ ଗଡ଼କୋକଲର ଅଧିନାୟକ ହେଲେ, ମଧ୍ୟମ ପୁତ୍ର ଗୋପାଳ ୧୬୧୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ସୁବାଦାର କଲ୍ୟାଣ ମଲ୍ଲଙ୍କ ସୈନ୍ୟମାନଙ୍କ ସହ ଲଢ଼ି ଅସୀମ ବୀରତ୍ୱ ପ୍ରଦର୍ଶନ କରି କଲ୍ୟାଣ ମଲ୍ଲଙ୍କୁ କଟକ ପର୍ଯ୍ୟନ୍ତ ତଡ଼ି ନେଇଥିଲେ ମଧ୍ୟ ମୋଗଲ ସେନାପତିଙ୍କ ବିଶ୍ୱାସଘାତକତା ଯୋଗୁ ସେ ମୃତ୍ୟୁ ମୁଖରେ ପଡ଼ିଲେ । ସାନପୁଅ କହ୍ନାଇ ଗଡ଼ରେଙ୍ଗଲକୁ ପୋଷ୍ୟପୁତ୍ର ହୋଇ ଆସିଥିଲେ ଏ ସମ୍ପର୍କରେ କବିଙ୍କ ଉକ୍ତି ହେଉଛି :

''ବଡ଼ପୁଅ ବାଲୁଙ୍କି ଯେ କୋକଲେ ରହିଲେ
ସନ୍ତୋଷକରାଇ ମୋତେ ରେଙ୍ଗଲେ ପେଷିଲେ ।''

ଖଡ଼୍‌ଗ ଚାଳନାରେ କବି ଅତ୍ୟନ୍ତ ପାରଦର୍ଶୀ ଥିଲେ । ତେଣୁ ସେ ଦୃଢ଼ ଆତ୍ମବିଶ୍ୱାସ ସହ କହିଛନ୍ତି :

''ମୋର ହସ୍ତରେ ଖଡ଼ଗ ଥିଲେ
କେଉଁ ଆସିବ ମୋହର ତୁଲେ ''

ସପ୍ତଦଶ ଶତାବ୍ଦୀରେ ଉତ୍କଳର ଅଧୋଗତିର ଚିତ୍ର ସ୍ୱଦେଶ ପ୍ରେମୀ କବିପ୍ରାଣକୁ ଗଭୀର ଦୁଃଖ ଦେଇଥିଲା । କୁହାଯାଇଛି କଲ୍ୟାଣ ମଲ୍ଲ ଯିବାବେଳେ ଗଜପତିଙ୍କ ଅନିନ୍ଦ୍ୟ ସୁନ୍ଦରୀ କନ୍ୟା ଓ ଶେଷ ନାଗ ନାମକ ପ୍ରସିଦ୍ଧ ଯୁଦ୍ଧ ହସ୍ତୀକୁ ସଙ୍ଗରେ ନେଇ ଯାଇଥିଲେ । ଏଥିରେ ମ୍ରିୟମାଣ ହୋଇ କବି କହିଛନ୍ତି :

''ନ ଅସିଲା ନୃମଣିର କନକ ସୁନ୍ଦରୀ ।
ଅଣଲେଉଟା ହୋଇଲା ଶେଷନାଗ କରି ।।
ଏମାନ ହୃଦୟ ମୋର ଗହନେ ଫାଡ଼ିଲା ।
ପୁଣ କଟା ଘାଆରେ ତ ଚୁନ ଯେ ଲେପିଲା ।।
ନ ଆସିଲେ ଗୋପାଳ ଚମ୍ପତି ଜ୍ୟେଷ୍ଠ ମୋର ।
ତପତ ନିଆଁରେପଡ଼େ ଯେହ୍ନେ ଘୃତ ଧାର'' ।।

ଗ୍ରନ୍ଥର ପ୍ରତ୍ୟେକ ଅଧ୍ୟାୟ ଶେଷରେ କବି ନିଜକୁ ରେଙ୍ଗଳଗଡ଼ ପାଇକବୀର କହ୍ନାଇ ଚମ୍ପତି ରାୟ ଚୂଡ଼ାମଣି ବୋଲି କହି ଅଛନ୍ତି । କହ୍ନାଇଙ୍କ ଅଧିନରେ ସାତଘର ନାୟକ ଥିଲେ ।

ସେ ଜଗନ୍ନାଥ ଦର୍ଶନକୁ ଗଲେ ତାଙ୍କୁ ଘୋଷରା ପାହାଚ ଠାରୁ 'ଘୁରିଆ କରଣ ପରଛା' ତାଙ୍କ ମସ୍ତକରେ ପାଟଶାଢ଼ୀ ବାନ୍ଧି ଯୋଡ଼ା ମଶାଲ ଜାଳି ଅଭ୍ୟର୍ଥନା କରୁଥିଲେ । ମହାକବିମାନଙ୍କ ପରି କହ୍ନେଇ ବରୁଣାଇ ଠାକୁରାଣୀଙ୍କ ପାଖରେ ନିଜର ଦୟିନୀ ଅର୍ପଣ କରିଛନ୍ତି ।

''ଏତେ ଭୁଜବଳ ମୋର ନୋହି ।
ମାତ ବରୁଣାଇ ପଦେ ଧାୟୀ ।।
ମୁଁ ତ ତାଙ୍କ ପାଖରେ ଅଧମ ।
ତାଙ୍କ କରୁଣାରୁ କଲି ଠାମ '' ।।

ସ୍ୱଦେଶ ପ୍ରେମୀ କବି ମୋଗଲ ଆକ୍ରମଣ ଯୋଗୁ ଅତିଶୟ ଦୁଃଖିତ ହୋଇ କହିଛନ୍ତି -

''ଏତ ଗହନ କାଳ ପଡ଼ିଲା ।
ଆମ କୁଳକୁ ବିପତ୍ତି ହେଲା ।।
ସବୁ ଗ୍ରାସିଲାଣିତ ପଠାଣ ।
ଚଉଖାନି କରିଣ ଆସିଣ ।।
ସୁଜାବଡ଼ କକରଥ କଲା ।
ସେତ ମକରମହୁଁ ବଳିଲା ।।
ଆଉ ଟାଣତ ରହିବ ନାହିଁ ।
ଏହା ଖେଦାରେ କହଇ ମୁହିଁ '' ।।

ସମସାମୟିକ ଐତିହାସିକ ଅନୁଭୂତିପୂର୍ଣ୍ଣ ଘଟଣାର ବର୍ଣ୍ଣନା ଶାସ୍ତ୍ର ସମର୍ଥିତ ସମର ନୀତିର ବୟାନ, ଅଶ୍ୱାରୋହୀ, ଗଜାରୋହୀ ଓ ପଦାତିକ ବାହିନୀର ସ୍ଥିତି, ବିଭିନ୍ନ ଅସ୍ତ୍ର ଶସ୍ତ୍ର, ଶରଫଳାକୁ ବିଷାକ୍ତ କରିବା, ଆଗ୍ନେୟାସ୍ତ୍ରର ପ୍ରୟୋଗ, ସୈନ୍ୟ ସଂଗ୍ରହ, ସୈନ୍ୟଙ୍କ ଯୋଗ୍ୟତା, ଯୁଦ୍ଧ ଯାତ୍ରାର ମାହେନ୍ଦ୍ର ବେଳା, ସମରବାଦ୍ୟ, ଯୁଦ୍ଧ ସଙ୍ଗୀତ, ଭିନ୍ନ ଭିନ୍ନ ପତାକା ଓ ଦଣ୍ଡର ବ୍ୟବହାର, ବିଭିନ୍ନ ବ୍ୟୂହ ରଚନା, ଆଘାତ

ପ୍ରାପ୍ତ ସୈନ୍ୟଙ୍କ ସୁଚିକିତ୍ସା, ସେମାନଙ୍କ ମଧ୍ୟରେ ଶୃଙ୍ଖଳା ରକ୍ଷା, ଦଣ୍ଡ ବ୍ୟବସ୍ଥା, ଭିନ୍ନ ଭିନ୍ନ ଯୁଦ୍ଧ ପୋତର ବର୍ଣ୍ଣନା, ଗଡ଼ନିର୍ମାଣ କଳା, ଅସ୍ତ୍ରଶସ୍ତ୍ର ଚାଳନା କୌଶଳ, ଯୁଦ୍ଧ ଶିବିର ପରିଚାଳନା, ସେନା ମୁଖ୍ୟଙ୍କ କାର୍ଯ୍ୟଧାରା, ଗାରୁଡ଼ି ଭିଆଣ, ନଳୀକାସ୍ତ୍ରର ବ୍ୟବହାର, ଯୁଦ୍ଧରେ ଧର୍ମୀୟ ଶୃଙ୍ଖଳାରକ୍ଷା ଓ ବିଭିନ୍ନ ଜ୍ୟୋତିଷ ବିଦ୍ୟାର ପ୍ରୟୋଗ, ସୈନ୍ୟଙ୍କ ନିଦ୍ରାହରଣ ଓ କ୍ଷୁଧାହରଣ ବ୍ୟବସ୍ଥା, ଦୁର୍ଗଭେଦ କୌଶଳ, ସୈନ୍ୟ ଗଜ,ଅଶ୍ୱ, ସାମନ୍ତ ଓ ଦୁର୍ଗାଧିପତିଙ୍କ ସ୍ଥିତି ପ୍ରଭୃତି ବହୁ ବିଷୟରେ ଅନୁଭୂତି ପୂର୍ଣ୍ଣ ବ୍ୟାପକ ବର୍ଣ୍ଣନା ଦିଆଯାଇଛି । ସମରଧ୍ୱଜକୁ କିପିରି ସମ୍ମାନ ପ୍ରଦର୍ଶନ କରାଯାଉଥିଲା ତାର ଚିତ୍ର ପ୍ରଦାନ କରି କବି କହନ୍ତି -

"ଏ ବାନା ନୁଆଁଣ ଖୁଦର ନୁହଁଇ,
ଏହୁ ଗହନରୁ ଗହନ ।
ଯେବେକ ନୋଇଁବ କରିବେ ବିଚାର,
ମନ୍ତ୍ରୀ ରାଜଗୁରୁ ଆବର" ।

କେବଳ ସେତିକି ନୁହେଁ ଯୁଦ୍ଧ ଯାତ୍ରା ସମୟରେ ପାଇକମାନେ ଯେଉଁ ଯୁଦ୍ଧ ସଙ୍ଗୀତ ଗାନ କରୁଥିଲେ ତାର ଏକ ବାସ୍ତବ ଚିତ୍ର ଦିଆଯାଇଛି । ଦେଶାତ୍ମବୋଧ ବିଜଡ଼ିତ ଏ କବିତାଟି ପଟାନ୍ତର ହୀନ ମନେହୁଏ ।

"ମଲେ ପଡ଼ିରଣ ମଝିରେ,
ବାସ ଆମ ଅମର ପୁରେ ।
ରଣୁ ଲେଉଟିଲେ,
ନରକଟି ଭଲେ ।
ଯେବାହୁଡ଼ନ୍ତି ନରକେ ଯାନ୍ତି,
ସପତ ପୁରୁଷ ଅହିନର୍କରେ -ବୀରବର ।
ମଲେପଛେ ମରିବାରଣେ,
ଆମଭଳି ଅଛନ୍ତି ପଣେ ।
ନରକେ ଯିବା,
ଜାତି ନଖାଇବା ।
ଯେବା ଜନମ ସେହି ମରଣ,
କାହିଁକି ତାର, ମରଣେ ଡ଼ର- ବୀରବର" ।

କେବଳ ଓଡ଼ିଆ ସାହିତ୍ୟ କାହିଁକି ସମଗ୍ର ଭାରତୀୟ ସାହିତ୍ୟ ମଧ୍ୟରେ ଏ ପ୍ରକାର ଗ୍ରନ୍ଥ ଦୁର୍ଲ୍ଲଭ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହିପରି ଏକ ଇତହାସ ପ୍ରସିଦ୍ଧ ରେଙ୍ଗଲଗଡ଼ରେ ଉତ୍କଳ ନାଟ୍ୟାକାଶର ଉଜ୍ଜ୍ୱଳ ଜ୍ୟୋତିଷ୍କ ମାଷ୍ଟର ରାମଚନ୍ଦ୍ର ମାଣିଆ ଅବତୀର୍ଣ୍ଣ ହୋଇଥିଲେ । ଏହି ପ୍ରତିଭାଧର ବ୍ୟକ୍ତି ଆଧୁନିକ ଶିକ୍ଷାଦୀକ୍ଷାରୁ ଦୂରରେ ଥିଲେ ମଧ୍ୟ ନାଟ୍ୟଜଗତକୁ ଅସାଧାରଣ ଅବଦାନ ଯୋଗୁ ଅମର ହୋଇ ରହିବେ । ଏଇ ଲେଖକର ସୌଭାଗ୍ୟ ଯେ ସେ ମାଷ୍ଟର ମାଣିଆଙ୍କ ସହ ବହୁଭାବରେ ସଂଶ୍ଳିଷ୍ଟ ଥିଲେ । ସବୁଠାରୁ ବଡ଼ ସମ୍ପର୍କ ଥିଲା, ସେ ତାଙ୍କ ଝିଅକୁ ଆମ୍ଭ ଘରକୁ ଘର ଲାଗିଥିବା ଶ୍ରୀମାନ୍ ଲକ୍ଷ୍ମୀଧର ସହ ବିବାହ କରାଇଥିଲେ । ଅନେକ ସମୟରେ ଝିଅ ଘରକୁ ଆସି ଏଠାରେ ରହୁଥିବା ବେଳେ ଆଳାପ ଆଲୋଚନା ହେଉଥିଲା । ତାଙ୍କ ମହନୀୟତାର ସୁଯୋଗ ଜାଣିବାକୁ ମିଳୁଥିଲା । ସେଥିଲେ ଲହୁଣି ପରି କୋମଳ, ଝରଣା ଜଳପରି ସ୍ୱଚ୍ଛ, ଅମାୟିକ, ନିଷ୍କପଟ, ଅଭିମାନ ଶୂନ୍ୟ, ନାଟ୍ୟ ଜଗତର ଭଗୀରଥ, ଏକବରଳ ବ୍ୟକ୍ତିତ୍ୱ, ଅନନ୍ୟ ସାଧାରଣ ସଙ୍ଗଠକ, ସରଳ ନିରାଡ଼ମ୍ବର ଦକ୍ଷ କଳାକାର, ଅସାଧାରଣ ସାମର୍ଥ୍ୟଧାରୀ, ପରୋପକାରୀ ଉଦାର ହୃଦୟ, ଅଜାତଶତ୍ରୁ, ଅନନ୍ୟ ସାଧାରଣ ବନ୍ଧୁବତ୍ସଳ, ନିଷ୍କାମ କର୍ମଯୋଗୀ, ସଙ୍କଳ୍ପିତ ମାନସ, ସ୍ନେହ ଶ୍ରଦ୍ଧାର ମୂର୍ତ୍ତିମନ୍ତ ପ୍ରତୀକ ଓ ଧୈର୍ଯ୍ୟ ଉତ୍ସାହର ପ୍ରେରଣାଦାତା । ନିନ୍ଦାପ୍ରଶଂସାର ଉର୍ଦ୍ଧ୍ୱରେ ଥାଇ ଅବିରତ କର୍ମ ତତ୍‌ପର ଏଇ ମହାନ୍ କଳାକାର ଏକ ବ୍ୟକ୍ତି ବିଶେଷ ନଥିଲେ । ସେଥିଲେ ଏକ ମହାନ୍ ଅନୁଷ୍ଠାନ । ବାଲ୍ୟ କାଳରୁ ମୃତ୍ୟୁ ପର୍ଯ୍ୟନ୍ତ ସେ ପ୍ରାୟ ଗଭୀର ଦୁଃଖ ଦୁର୍ଦ୍ଦଶା ମଧ୍ୟରେ କାଳାତିପାତ କରିଥିଲେ ମଧ୍ୟ ଦିନେ ହେଲେ କାହାପ୍ରତି ଅଭିଯୋଗ କରିନାହାନ୍ତି । ବରଂ ନିରବରେ ନିଜ କର୍ତ୍ତବ୍ୟ ପଥରେ ଅଗ୍ରସର ହୋଇଛନ୍ତି ।

ମାଷ୍ଟର ମାଣିଆଙ୍କ ଜୀବନୀ ମୂଳକ ଲେଖାଟିଏ ଲେଖିଛନ୍ତି ଉତ୍କଳର ନାଟ୍ୟ ଜଗତର ଅମ୍ଳାନ ପ୍ରତିଭା ଶ୍ରୀଯୁକ୍ତ ନଟବର ସେଣ । ସେ ତାଙ୍କ ଲେଖାଟି ତାଙ୍କ ପିତା ଉତ୍ସବାନନ୍ଦଙ୍କ ସ୍ମୃତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଛନ୍ତି । ସେ କେବଳ ନିଜେ ଜୀବନୀଟି ଲେଖିନାହାନ୍ତି ଏ ସମ୍ପର୍କିତ କେତେକ ଲେଖା ସେହି ବିଭାଗର ତତ୍‌ବିଦ୍ ଅନ୍ୟ କେତେକ କଳାକାରଙ୍କଠାରୁ ସଂଗ୍ରହ କରି ଏଥିରେ ସ୍ଥାନିତ କରିଛନ୍ତି । ପୂର୍ଣ୍ଣାଙ୍ଗ ନହେଲେ ମଧ୍ୟ ଏଗ୍ରନ୍ଥଟି ପ୍ରକାଶିତ ନହୋଇଥିଲେ ମାଷ୍ଟର ମାଣିଆଙ୍କ ବହୁ ଅଜଣା ଦିଗ ଅନ୍ଧକାର ମଧ୍ୟରେ ରହିଯାଇଥାନ୍ତା । ମାଷ୍ଟର ମାଣିଆଙ୍କ ଉତ୍ସର୍ଗୀକୃତ ଜୀବନୀକୁ

ଲୋକ ଲୋଚନକୁ ଆଣିବା ଦିଗରେ ସ୍ମୃତି ସଂସଦର ଏହା ପ୍ରଥମ ପ୍ରଚେଷ୍ଟା । ସମ୍ଭବ ହେଲେ ପରବର୍ତ୍ତୀ ସଂସ୍କରଣରେ ମାଟେର ମାଣିଆଙ୍କ ଜୀବନୀର ଏକ ପରିବର୍ଦ୍ଧିତ ଗ୍ରନ୍ଥ ପ୍ରକାଶିତ ହେବ ।

କେବଳ ମାଷ୍ଟର ମାଣିଆ ନୁହଁନ୍ତି ରେଙ୍ଗଲଗଡ଼ ବହୁ ସୁଯୋଗ୍ୟ ସନ୍ତାନମାନଙ୍କୁ ତାର ବୁକୁରେ ଧାରଣ କରିଛି । ସେମାନଙ୍କ ମଧ୍ୟରୁ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ସୁବର୍ଣ୍ଣପଦକ ପ୍ରାପ୍ତ ବିଶିଷ୍ଟ ଅର୍ଥନୀତିଜ୍ଞ, ପୂର୍ବତନ ଯୋଜନା ବୋର୍ଡର ପରାମର୍ଶ ଦାତା, ବହୁ ବିଖ୍ୟାତ ଗ୍ରନ୍ଥର ରଚୟିତା ଓ ପୂର୍ବତନ ଶିକ୍ଷା ନିର୍ଦ୍ଦେଶକ ସ୍ୱର୍ଗତ କ୍ଷେତ୍ର ମୋହନ ପଟ୍ଟନାୟକଙ୍କ ଅନ୍ୟତମ । ଅନ୍ୟଜଣେ ହେଲେ ସର୍ବୋତ୍ତମ ସମାଜ ସେବା ପାଇଁ ରମାଦେବୀ ସ୍ମାରକୀ ପୁରସ୍କାର ପ୍ରାପ୍ତ, ସୁଯୋଗ୍ୟ ସାମ୍ବାଦିକ, ନିଷ୍ଠାପର ଓ ନିରବ ସାଧକ, ବହୁ ଜନକଲ୍ୟାଣକାରୀ ସଂସ୍ଥାସହ ସଂପୃକ୍ତ, କେନ୍ଦ୍ର ସରକାରଙ୍କ ଆକାଶବାଣୀ ଓ ପତ୍ରସୂଚନା ବିଭାଗର ପଦସ୍ଥ ଅଧିକାରୀ, ଓଡ଼ିଶା ଲୋକ ସମ୍ପର୍କ ବିଭାଗର ପୂର୍ବତନ ଆଡ଼ିସନାଲ୍ ଡାଇରେକ୍ଟର୍, ବହୁ ମୁଖ୍ୟମନ୍ତ୍ରୀ ଓ ରାଜ୍ୟପାଳଙ୍କର ସୂଚନା ଅଧିକାରୀ ଭାବେ ବିଶେଷ ଦକ୍ଷତା ସହ କର୍ତ୍ତବ୍ୟ ସଂପାଦନ କରିଥିବା ଶ୍ରୀ ସମର ବିଳାସ ପଟ୍ଟନାୟକ । ଏ ଗ୍ରନ୍ଥ ପ୍ରକାଶ ପାଇଁ ତାଙ୍କର ସାଧୁ ଉଦ୍ୟମ ଅଭିନନ୍ଦନୀୟ । ସମରବାବୁଙ୍କ ଅଦମ୍ୟ ସମର ବ୍ୟତୀତ ଏହା ଲୋକଲୋଚନକୁ ଆସିପାରିନଥାନ୍ତା ।

ଏହାର ପ୍ରକାଶନରେ ଯେଉଁ ମହାନ୍ ବ୍ୟକ୍ତିଗଣ ଓ ଅନୁଷ୍ଠାନ ବିଭିନ୍ନ ଭାବରେ ସହାୟତା କରିଛନ୍ତି ସେମାନେ ହେଲେ ବର୍ତ୍ତମାନର ଉଚ୍ଚଶିକ୍ଷା ମନ୍ତ୍ରୀ ଓ ବିଶିଷ୍ଟ ଅଭିନେତା ଶ୍ରୀ ପ୍ରଶାନ୍ତ ନନ୍ଦ, ସଂସ୍କୃତିମନ୍ତ୍ରୀ ଶ୍ରୀ ବିଜୟ ଶ୍ରୀ ରାଉତରାୟ, ପୂର୍ବତନ ମନ୍ତ୍ରୀ ଶ୍ରୀ ଅକ୍ଷୟ କୁମାର ରାଉତରାୟ ଓ ଶ୍ରୀ ପ୍ରସାଦ ହରିଚନ୍ଦନ, ସଂସ୍କୃତି ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ରବିନାରାୟଣ ସେନାପତି, ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର କୁଳପତି ଡ: ବିମଳେନ୍ଦୁ ମହାନ୍ତି, ସଂସ୍କୃତି ନିର୍ଦ୍ଦେଶକ ଶ୍ରୀ ନରେନ୍ଦ୍ର ମିଶ୍ର, ମୁଖ୍ୟମନ୍ତ୍ରୀଙ୍କ ଲୋକସଂପର୍କ ଅଧିକାରୀ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି, ବରିଷ୍ଠ ସାମ୍ବାଦିକ ଶ୍ରୀ ପ୍ରଦୋଷ ପଟ୍ଟନାୟକ ଓ ଶ୍ରୀ ବସନ୍ତ ଦାସ, ସଂସ୍କୃତି ବିଭାଗର ବରିଷ୍ଠ ଉପ ବିଭାଗ ଅଧିକାରୀ ଶ୍ରୀ ଗିରିଧାରୀ ପଣ୍ଡା, ରାମଚନ୍ଦ୍ରପୁର ଉତ୍ତରାୟଣୀ କ୍ଲବର କର୍ମକର୍ତ୍ତା ଗଣ । ଗଡ଼ ରେଙ୍ଗଲ ମାଷ୍ଟର ମାଣିଆ ସ୍ମୃତି ସଂସଦର ସଦସ୍ୟଗଣ ଓ ଗ୍ରାମବାସୀ ବୃନ୍ଦ, ବିଶେଷତଃ ଶ୍ରୀମତୀ ବିନୋଦିନି ପଟ୍ଟନାୟକ ପ୍ରମୁଖଙ୍କ ସାହାଯ୍ୟ ସହାନୁଭୂତି ପାଇଁ ଗଭୀର କୃତଜ୍ଞତା ଜଣାଉଛି । ମାଷ୍ଟର ମାଣିଆ ସ୍ମୃତି ସଂସଦର

ଭବିଷ୍ୟତ କାର୍ଯ୍ୟକ୍ରମ ଗୁଡ଼ିକରେ ସେମାନଙ୍କର ସହଯୋଗ ଅତୁଟ ରହିବ ବୋଲି ଆଶା ରଖୁଛି । ପ୍ରଚ୍ଛଦ ପଟ ଅଙ୍କନ ପାଇଁ ବିଶିଷ୍ଟ କଳାକାର ଶ୍ରୀ ଅସୀମ ବସୁ ଓ ମାଷ୍ଟର ମାଣିଆଙ୍କ ନାତି ଶ୍ରୀ ଚିନ୍ତାମଣି ବେହେରା, ପ୍ରୁଫ୍ ସଂଶୋଧନ ପାଇଁ ସୁସାହିତ୍ୟିକ ଓ ସାମାଜସେବୀ ଶ୍ରୀ ତ୍ରିଲୋଚନ ମହାପାତ୍ରଙ୍କୁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛି । ବିଶେଷତଃ ମୋର ପ୍ରିୟ ଛାତ୍ର ଓ ମାଷ୍ଟର ମାଣିଆ ସ୍ମୃତି ସଂସଦର ସାଧାରଣ ସଂପାଦକ ଶ୍ରୀ ବିରଞ୍ଚି ନାରାୟଣ ସାମନ୍ତ ସିଂହାର ଏ ପୁସ୍ତକ ପ୍ରକାଶନରେ ସମସ୍ତ ଯୋଗାଯୋଗ ରକ୍ଷାକରି ଏହାକୁ ସାଫଲ୍ୟ ମଣ୍ଡିତ କରିଥିବା ହେତୁ ତାଙ୍କୁ ବଧାଇ ଜଣାଉଛି । ଛପାକାର୍ଯ୍ୟରେ ସାହାଯ୍ୟ ପାଇଁ ଗୋପୀନାଥ ଅଫ୍‌ସେଟ ପ୍ରେସ୍‌ର ସ୍ୱତ୍ୱାଧିକାରୀ ଶ୍ରୀ ରବୀନ୍ଦ୍ର କୁମାର ନନ୍ଦୀ ଓ ପର୍‌ଫେକ୍‌ସନ୍ କମ୍ପ୍ୟୁଟର କେନ୍ଦ୍ରର ପ୍ରଦୀପ୍ତ ଦାସଙ୍କୁ ମଧ୍ୟ ସେମାନଙ୍କ ସାହାଯ୍ୟ ସହଯୋଗ ପାଇଁ ଧନ୍ୟବାଦ ଜଣାଉଛି ।

ଭବିଷ୍ୟତରେ ରେଙ୍ଗଳଗଡ଼ର ଐତିହ୍ୟ ସହିତ ପାଇକଖେଦାରଏକ ବିଶ୍ଳେଷଣାତ୍ମକ ଗ୍ରନ୍ଥ ପ୍ରକାଶନ ପାଇଁ ଉଦ୍ୟମ କରାଯାଉଛି ।

ଉତ୍କଳର ଜନସାଧାରଣ ତଥା ନାଟ୍ୟପ୍ରେମୀମାନଙ୍କର ଏହା କିଞ୍ଚିତ ଉପକାରରେ ଆସିଲେ ଶ୍ରମ ସାର୍ଥକ ହେଲା ବୋଲି ବିଚାର କରିବାକୁ ହେବ ।

*ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ,*
*ପ୍ରାଣନାଥ କଲେଜ, ଖୋରଧା*

# ମାଷ୍ଟର ରାମଚନ୍ଦ୍ର ମାଣିଆଙ୍କ ଜୀବନୀ

*ନଟବର ସେଣ*

## ଜନ୍ମ ଓ ବାଲ୍ୟ ଜୀବନ

ପୁରୀ ଜିଲ୍ଲା ଢ଼େଲାଙ୍ଗ ଥାନା ଅନ୍ତର୍ଗତ ଗଡ଼ରେଙ୍ଗଲ ଗାଁର ଗୋଟିଏ ଗୋପାଳ ପରିବାରରେ ୧୮୯୨ ମସିହା ଅଗଷ୍ଟ ୧୫ ତାରିଖ ଭାଦ୍ରବ ମାସ କୃଷ୍ଣପକ୍ଷ ଚତୁର୍ଥୀ ତିଥିରେ ମାଷ୍ଟର ମାଣିଆଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ମଧୁସୂଦନ ମାଣିଆ ଓ ମାତାଙ୍କ ନାମ କିଶୋରୀ ମାଣିଆ । ଏକାଦଶ ଗର୍ଭରେ ସର୍ବ କନିଷ୍ଠ ସନ୍ତାନ ଭାବେ ସେ ଜନ୍ମ ନେଇଥିଲେ ।

ମଧୁସୂଦନଙ୍କ ଭୂ-ସମ୍ପତ୍ତି ଗୋଟିଏ ବହୁକୁଟୁମ୍ବୀ ପରିବାର ପକ୍ଷେ ବର୍ଷକ ଚଳଣି ପାଇଁ ପର୍ଯ୍ୟାପ୍ତ ନହେଲେ ମଧ୍ୟ ନିଅଣ୍ଟ ହେଉନଥିଲା । ତା'ଛଡ଼ା ତାଙ୍କର କୌଳିକ ପେଶା ଗାଈ ମଇଁଷି ପାଳନ କରି, ଦହି, ଦୁଧ, ଘିଅ ବିକ୍ରି କରି ନିଜ ସଂସାରକୁ ସେ ସୁଖରେ ଚଳାଉଥିଲେ । ମଧୁସୂଦନଙ୍କ ଆଠ ପୁଅ, ତିନି ଝିଅଙ୍କ ଭିତରୁ 'ରାମ' ସମସ୍ତଙ୍କ ମଧ୍ୟରେ ସାନ ହୋଇଥିବାରୁ ସଭିଙ୍କ ସ୍ନେହ ଆଦର ପାଇ ଅତି ଅଲିଅଳ ସନ୍ତାନ ଭାବେ ବଢ଼ି ଥିଲେ । ତାଙ୍କ ଅନ୍ୟ ଭାଇମାନେ ବାପାଙ୍କ ସହିତ ଜମିଆବାଦ କରିବା; ଗାଈ,ମଇଁଷି ଚରାଇବା ଏବଂ ଦହି ଦୁଧ, ଘିଅ ନେଇ ଜଟଣୀ ବଜାରରେ ବିକ୍ରି କରିବା କାମରେ ଲାଗନ୍ତି । ସେତେବେଳକୁ ଜଟଣୀ ବା ଖୋର୍ଦ୍ଧା ରୋଡ଼ ବେଙ୍ଗଲ-ନାଗପୁର ରେଲୱେର ଜଙ୍କସନ୍ ହିସାବରେ ସ୍ୱୀକୃତି ଲାଭ କରିଥାଏ । ସେଠାରେ ଅନେକ ଗୋରା ସାହେବ, ତେଲୁଗୁ ଓ ବଙ୍ଗାଳୀ ରେଳକର୍ମଚାରୀ ନିଜ ନିଜର ପରିବାର ସହ ବସବାସ କରୁଥିଲେ । ତେଣୁ ଦହି, ଦୁଧ ଓ ଘିଅ ସହଜରେ ବିକ୍ରି ହୋଇ ଯାଉଥିଲା । ଏଣୁ ମଧୁସୂଦନଙ୍କ ସଂସାର ସୁଖରେ ଚଳିଯାଉଥିଲା ।

ମଧୁସୂଦନଙ୍କର ସାତ ବଡ଼ପୁଅମାନଙ୍କ ଭିତରୁ କେହି ହେଲେ ପାଠ ପଢ଼ିନଥିଲେ । ଗୋଟିଏ କେହି ପାଠପଢ଼ିଥିଲେ ଛାନ୍ଦ, ପୁରାଣ ପଢ଼ି ଶୁଣାଉଥାନ୍ତା । ଚିଠି ଲେଖି ପଢ଼ିପାରିଥାନ୍ତା । ଏଣୁ ରାମଙ୍କୁ ପାଠ ପଢ଼ାଇବା ପାଇଁ ସେ ବିଶେଷ ଆଗ୍ରହ ପ୍ରକାଶ କଲେ । ପିଲା ଦିନରୁ ପୁଅକୁ କୁଳ ବେଉସା କରିବା ପାଇଁ ଛାଡ଼ିଲେ ନାହିଁ ।

ପାଞ୍ଚବର୍ଷ ବୟସରେ ୧୮୯୭ ମସିହା ଶ୍ରୀ ପଞ୍ଚମୀ ତିଥିରେ ରାମଙ୍କର ବିଦ୍ୟାରମ୍ଭ ହେଲା । ସେସମୟରେ ଗାଁ ଗହଳରେ ସ୍କୁଲ ନଥାଏ । ଗ୍ରାମବାସୀଙ୍କ ସମୂହ ଚେଷ୍ଟାରେ ଜଣେ ମାଟିବଂଶ ଅବଧାନ ଅଣାଯାଇ ଗାଁ କୋଠ ଘରେ ଚାହାଳି

ବସାଯାଇଥାଏ । 'ରାମ' ସେଇ ଚାଟଶାଳୀର ଚାଟ ହେଲେ । ସେଠାରେ ସେ ବର୍ଷକ ଭିତରେ ଯୁକ୍ତାକ୍ଷର, ବନାନ, ସତର ଫଳା ସବୁ ଆୟତ୍ତ କରିପାରିଥିଲେ ।

## ଦୋଳ ପୂର୍ଣ୍ଣିମାରେ ଲଉଡ଼ି ଖେଳ

କଥାରେ ଅଛି ତୁଳସୀ ଦୁଇ ପତ୍ରରୁ ବାସେ । ଛୋଟ ପିଲାଦିନରୁ ରାମଙ୍କର ନୃତ୍ୟ-ସଙ୍ଗୀତ ପ୍ରତି ବିଶେଷ ଆକର୍ଷଣ ରହିଥିବା ପରିଲକ୍ଷିତ ହୋଇଥିଲା । ଗଡ଼ ରେଙ୍ଗଳଗ୍ରାମର ପ୍ରାକୃତିକ ପରିବେଶ, ଐତିହାସିକ ଦୟାନଦୀର କୁଳୁକୁଳୁ ସ୍ରୋତ, ତଟବର୍ତ୍ତୀ ଆମ୍ବ,ପଣସ, ଜାମୁ, କେନ୍ଦୁ ଓ ପୋଲାଙ୍ଗ ତୋଟାରେ ବିହଙ୍ଗମାନଙ୍କ ସଙ୍ଗୀତ ଓ ବିସ୍ତୀର୍ଣ୍ଣ କୃଷି କ୍ଷେତ୍ରରେ କୃଷକର ଛାନ୍ଦ, ଚମ୍ପୂ ଓ ଚଉତିଶା ତାଙ୍କୁ ଆତ୍ମହରା କରୁଥିଲା । ଆଉ ମଧ୍ୟ ସେଇ ଗ୍ରାମରେ ଜନ୍ମ ନେଇଥିଲେ କହ୍ନେଇ ଚମ୍ପତି । ଓଡ଼ିଆ ଭାଷାର ପ୍ରଥମ ସମରକାବ୍ୟର ଏହି ମହାନ୍ ରଚୟିତାଙ୍କ ଅମର କୃତୀ ରାମଙ୍କ ବାଲ୍ୟକାଳରେ ଜନମାନସରେ ସମ୍ୟକ ପ୍ରଭାବ ପକାଇଥିଲା  ଓ ସେତେବେଳେ ଚର୍ଚ୍ଚାର ବିଷୟବସ୍ତୁ ଥିଲା । ରାମଙ୍କୁ ଜଣେ ଶ୍ରେଷ୍ଠ କଳାକାର ଭାବେ ଗଢ଼ିବା ପାଇଁ ପରିବେଶ ଯଥେଷ୍ଟ ଉପାଦାନ ଯୋଗାଇଥିଲା । ଦୋଳ ଉତ୍ସବ ଗୋପାଳ ମାନଙ୍କର ଗୋଟିଏ ବଡ଼ ପର୍ବ । ସେଦିନ ଆକର୍ଷଣୀୟ ଲଉଡ଼ିଖେଳ ହୋଇଥାଏ । ଏହି ପାରମ୍ପରିକ ନୃତ୍ୟ ଆଜି ମଧ ଗାଁ ଗହଳରେ ଦେଖିବାକୁ ମିଳେ ।

ରାମ ସେଥିରେ ଶ୍ରୀକୃଷ୍ଣ ସାଜି, ଗୀତ ଗାଇ ନୃତ୍ୟ କରନ୍ତି । ତାଙ୍କର ନୃତ୍ୟ ସଙ୍ଗୀତ ଦେଖି ଦର୍ଶକମାନେ ମୁଗ୍ଧ ହୋଇଯାନ୍ତି । କୋଟିକ ମଧ୍ୟରେ ଗୋଟିଏ ଭଳି ରାମଙ୍କର ସହଜାତ ଐଶ୍ୱରିକ ପ୍ରତିଭା ପ୍ରକାଶିତ ହୋଇଥିଲା । ହରିରାଜପୁର ମେଳଣରେ ତାଙ୍କ ସଙ୍ଗୀତର ସୁଲଳିତ ସ୍ୱର ବହୁ ଦର୍ଶକଙ୍କୁ ମୁଗ୍ଧ କରିଥିଲା । ସମସ୍ତେ ଧନ୍ୟଧନ୍ୟ କହିଲେ । ବହୁଜନ ମୁଖରୁ ପ୍ରଶଂସା ଶୁଣି ମଧୁସୂଦନ ପୁଅ ପାଇଁ ଅଧିକ ଯତ୍ନଶୀଳ ହେଲେ । ତାଙ୍କର ଅନ୍ୟ ପିଲାମାନେ ପଛକେ ମଇଳା ଗାମୁଛା ପିନ୍ଧନ୍ତୁ କିନ୍ତୁ ରାମଙ୍କ ପାଇଁ ଜୋକରଙ୍ଗି (ସେତେବେଳେ ଗଞ୍ଜିକୁ କୁହାଯାଉଥିଲା) ପିନ୍ଧା ଦୋଷଡ଼ା, ରୂପା ଅଣ୍ଟା ସୂତା, ହାତ ପାଇଁ ରୂପାଖଡ଼ୁ, ବେକରେ ସୁନା ଢ଼େଉଁରିଆ ମାଳ ଓ କାନ ପାଇଁ ସୁନାଫୁଲ ତିଆରି କରିଦେଲେ । ଦୟାନଦୀ କୂଳରେ ସିଦ୍ଧ ପାହାଡ଼ ତଳେ ସାଙ୍ଗ ସାଥିଙ୍କ ଗହଣରେ 'ରାମ' ଡ଼ାଳ ମାଙ୍କୁଡ଼ି ଓ କିତି କିତି ଖେଳିବା ସହ ସିଦ୍ଧ ପାହାଡ଼ ଅତିକ୍ରମ କରି ଦୟା ନଦୀରେ ପହଁରିବା ଏବଂ ଚାହାଳୀରେ ପାଠ ପଢ଼ିବାରେ ସମୟ କଟାଉଥିଲେ । ଅନ୍ୟ ଭାଇମାନଙ୍କ ପରି ସେ ଗାଈ, ମଇଁଷି ଚରାଇବାକୁ ଯାଉନଥିଲେ ।

## ସାତ ବର୍ଷ ବୟସରେ ସଙ୍ଗୀତ ଦଳରେ ଯୋଗଦାନ

ସେତେବେଳେ ଗୋଟିପୁଅ ଓ ସଙ୍ଗୀତ ଦଳ ଗଢ଼ିବା ଧନୀ ଓ ବଡ଼ ବଡ଼ିଆ ଲୋକଙ୍କର ସଉକ ଥିଲା । ସିଦ୍ଧ ପାହାଡ଼ର ଉତ୍ତରଦିଗରେ ହରିପୁର ବାସିନ୍ଦା ସୋମନାଥ ମହାପାତ୍ର ଯାତ୍ରାଦଳ ବନ୍ଦକରି ଗୋଟିଏ ସଙ୍ଗୀତ ଦଳ ଗଢ଼ିବା ଉଦ୍ଦେଶ୍ୟରେ ସୁନ୍ଦର ପିଲା ଖୋଜୁଥାନ୍ତି । ସେ ହରିରାଜପୁର ଦୋଳଯାତ୍ରାରେ ରାମଙ୍କର ଲଉଡ଼ି ନୃତ୍ୟ ଦେଖି ଓ ଗୀତ ଶୁଣି ମୁଗ୍ଧ ହୋଇଯାଇଥିଲେ । ସୁନ୍ଦର ଚେହେରା ଓ ପିଲାଟିର ସୁଲଳିତ କଣ୍ଠସ୍ୱର ତାଙ୍କୁ ଚମତ୍କୃତ କରିଥିଲା । ସେ ପିଲାଟିର ପିତା ମଧୁସୂଦନଙ୍କୁ ବହୁ ଅନୁନୟ ବିନୟ ପରେ କିଛି ପାରିତୋଷିକ ଦେଇ, ରାମଙ୍କୁ ହରିପୁର ଆଣିଲେ । ଆଉ ଦୁଇଜଣ ପିଲାଙ୍କ ସହ ରାମଙ୍କୁ ନିଜଘରେ ରଖି ଗୋଟିପୁଅ ଶିକ୍ଷା ଦେଲେ ।

## ଶିକ୍ଷାକାଳ

ନିୟମିତ ଛ ମାସ ଧରି ହରିପୁରରେ ରହି ସେ ପ୍ରତିଦିନ ରାତି ଚାରିଟାରେ ଶଯ୍ୟା ତ୍ୟାଗ କରି ବର୍ଷା ଏବଂ ଶୀତ ଋତୁରେ ଖୋଲା ଦେହରେ ସ୍ୱର ସାଧନା, ନୃତ୍ୟାଭ୍ୟାସ, ପରେ ପରେ ଅଙ୍ଗଭଙ୍ଗୀ, ମୁଖ ଭଙ୍ଗୀ, ଆଖି ଓ ଭ୍ରୂଲତା ଚାଳନା ଶିକ୍ଷା ନେଲେ । ବନ୍ଧ ନୃତ୍ୟ, ବନ୍ଧ ଭାଙ୍ଗିବା, ଚୀରାଚଉକ ଇତ୍ୟାଦି ଅଭ୍ୟାସ ସମୟରେ ନାଚ ପିଲାଙ୍କ ଦେହରେ ଜଡ଼ାତେଲ ମାଲିସ କରି ବାଉଁଶ ନିଆଁରେ ସେକ ଦିଆଯାଉଥିଲା । ଏହି ଅନୁକ୍ରମର ଛଅମାସ ପର୍ଯ୍ୟନ୍ତ ଶିକ୍ଷା ଲାଭ କରି 'ରାମ' ଜଣେ କୃତୀ ସଙ୍ଗୀତ କଳାକାର ରୂପେ ଅବତୀର୍ଣ୍ଣ ହେଲେ । ତାପରେ କମଳା ଗଛ କଣ୍ଟାରେ ତାଙ୍କର ନାକ କାନ ଫୋଡ଼ା ଗଲା । ମୁଣ୍ଡ ବାଳ କଟା ନ ଯାଇ ବଢ଼ାଇ ଦିଆଗଲା ।

## ସଙ୍ଗୀତ ପରିବେଷଣ

ସଙ୍ଗୀତ ନାଚ ପିଲାଙ୍କର ପରିଧାନ ହେଉଥିଲା, ରେଶମୀ କାଞ୍ଚୁଲୀ ବ୍ରହ୍ମପୁରୀ କୁମ୍ଭ ପକା ପାଟଶାଢ଼ୀ । ଓଡ଼ିଶୀ ନୃତ୍ୟ ଢ଼ଙ୍ଗରେ ଏହା ପିନ୍ଧା ଯାଏ । ମନ୍ଦିର ଗାତ୍ରରେ ଖୋଦିତ ନର୍ତ୍ତକୀର ବେଶଭୁଷା ଭଳି । ଆଗରୁ କୁହାଯାଇଛି ସଙ୍ଗୀତ ପିଲାଙ୍କର ନାକ ଓ କାନ ଫୋଡ଼ା ଯାଇଥାଏ । ଏମାନଙ୍କର ଅଳଙ୍କାର ସବୁ ରୁପା ଚାନ୍ଦିରେ ତିଆରି । ମୁଣ୍ଡକୁ ଅଳକା, ଚଉଁରୀମୁଣ୍ଡୀ, ଚାନ୍ଦ କାଠି, ଝରା କାଠି, ବେଣୀ ସଜପାଇଁ କାକରା, ପଦକ, ବେଣୀଫୁଲ,; ଗୋଡ଼କୁ ପାହୁଡ଼, ବାଜେଣୀ, ହାତ ପାଇଁ କଟକୀ ଚୁଡ଼ି, ମୁଗର ମୁହଁବଳା, ଗୁଂଜର ବଟଫଳ; ଅଣ୍ଟା ପାଇଁ ଅଣ୍ଟା ପାଟିଆ ଥାଏ । ଏସବୁ ରୁପାଚାନ୍ଦିରେ ତିଆରି ହୋଇଥାଏ । ନାକ ପାଇଁ ନୋଥ, ଦଣ୍ଡୀ, ନୋଲକ, ଫୁଲ ଗୁଣା, ବସଣୀ, କାନ ପାଇଁ

ନୋଳୀ ବା ପେଣ୍ଡି ଫୁଲ, ମଲ୍ଲକଢ଼ୀ, ବେକପାଇଁ ଡ଼କ୍ଳି, ଯୋରିଷିଆ ବା ଧାନୁଆମାଳ ଇତ୍ୟାଦି ଥାଏ । ଏସବୁ ସୁନାରେ ତିଆରି ହୋଇଥାଏ । ମାଲିକଙ୍କ ତରଫରୁ ଏସବୁ ପ୍ରସ୍ତୁତ ହୋଇଥାଏ । ବାଦ୍ୟଯନ୍ତ୍ର ମଧ୍ୟରେ ସେସମୟରେ ହାରମୋନିୟମର ପ୍ରଚଳନ ହୋଇନଥାଏ । କେବଳ ବେହେଲା, ପଖଉଜ, କୁବୁଜି, ମଦିରାର ବ୍ୟବହାର କରାଯାଉଥାଏ ।

ଏହି ସଙ୍ଗୀତ ଦଳର ନୃତ୍ୟ ପରିବେଷଣ କରିବା ପାଇଁ କୌଣସି ସ୍ଥାନ ନିରୂପଣ ହେଉନଥିଲା ବା ରଙ୍ଗପୀଠ ଅଥବା ମଞ୍ଚର ଆବଶ୍ୟକତା ନଥିଲା । ଗ୍ରାମୀଣ ଜମିଦାର ଅଥବା ମଠାଧୀଶଙ୍କ ଯେକୌଣସି ଉତ୍ସବ ବା ବ୍ୟକ୍ତି ବିଶେଷଙ୍କ ବିବାହାଦି କାର୍ଯ୍ୟରେ ଡାକରା ପାଇଲେ ଏମାନଙ୍କର ସଙ୍ଗୀତ ପରିବେଷଣ ହୁଏ ଏବଂ ସର୍ବସାଧାରଣ ଏହାକୁ ଉପଭୋଗ କରନ୍ତି । ଦର୍ଶକମାନଙ୍କ ମଧ୍ୟସ୍ଥଳରେ ସଙ୍ଗୀତ ଓ ନୃତ୍ୟ ପରିବେଷଣ ହେଉଥିବା ବେଳେ ମଝିରେ ମଝିରେ କେତେକ ଦର୍ଶକ ନୋଟ୍ ବା ରୂପାଟଙ୍କା ଦେଖାଇ ନୃତ୍ୟକାରୀଙ୍କ ପାଖକୁ ଆସି ଟଙ୍କା ନେବା ପାଇଁ ଆହ୍ୱାନ କରନ୍ତି । ଇଛାନଥିଲେ ମଧ୍ୟ ଗୁରୁଙ୍କ ଇଙ୍ଗିତରେ ଦାତାଙ୍କ କୋଳରେ ବସି ଅଭିନୟ କରି ଏମାନେ ଟଙ୍କା ଆଣନ୍ତି ଓ ଗୁରୁଙ୍କୁ ଦିଅନ୍ତି ।

## ଯାତ୍ରା ଦଳରେ ଯୋଗଦାନ

ଏହିପରି ନାଚ-ପିଲାଙ୍କର ପୁରସ୍କାର ଲବ୍‌ଧ ଅର୍ଥ ବା ପଦକ ସବୁ ମାଲିକ ଏବଂ ସଙ୍ଗୀତ ଗୁରୁମାନେ ନେଇଯାଉଥିଲେ । ଏହା ଏକ ପ୍ରକାର କ୍ରୀତଦାସ ବ୍ୟବସ୍ଥାପରି ମନେହେଉଥିଲା । 'ରାମ' ସେତେବେଳକୁ ବାଲ୍ୟ ବୟସ ଅତିକ୍ରମ କରି କିଶୋର ବୟସରେ ପଦାର୍ପଣ କଲେଣି । ଭଲ ମନ୍ଦ, ରୁଚି ଅରୁଚି, ନ୍ୟାୟ ଅନ୍ୟାୟର ବିଚାର ମଧ୍ୟ କଲେଣି । ଗୋଟିପୁଅ ନାଚ ପ୍ରତି ତାଙ୍କର ବିତୃଷ୍ଣା ଆସିଲା । ଯାହାହେଉ, ଅଳ୍ପ କେତେଦିନ ପରେ ଏହି ସଙ୍ଗୀତ ଦଳ ବନ୍ଦ ହୋଇଗଲା । ଏଣୁ ସେ ଗୋଟିଏ ଯାତ୍ରାଦଳରେ ଯୋଗଦେଲେ । ସେତେବେଳକୁ ଗଣ ନାଟ୍ୟକାର ୰ ଜଗନ୍ନାଥ ପାଣି, ୰ ଭିକାରୀ ନାୟକ, ୰ ଗୋପାଳ ଦାସଙ୍କ ଯୁଗ ଶେଷ ହୋଇଯାଇ ବୈଷ୍ଣବ ପାଣିଙ୍କ ଯୁଗ ଆରମ୍ଭ ହୋଇଥାଏ । ସାରା ଓଡ଼ିଶାରେ ବହୁଳ ଭାବରେ ଭ୍ରାମ୍ୟମାଣ ଯାତ୍ରାଦଳ ମାନ ଗଢ଼ି ଉଠିଥାଏ । ରାମ ମାଣିଆ ବଳଙ୍ଗାର ବନମାଳୀ ପତିଙ୍କ ଯାତ୍ରାଦଳରେ ଯୋଗ ଦେଇ ନାରୀ ଚରିତ୍ରରେ ଅଭିନୟ କରିବା ସଙ୍ଗେ ସଙ୍ଗେ ବାଦ୍ୟଯନ୍ତ୍ର ବ୍ୟବହାର ଶିଖିଲେ ଓ ସେଥିରେ ଦକ୍ଷତା ହାସଲ କଲେ ।

ଯାତ୍ରା ପରିବେଷଣକୁ ଶିକ୍ଷିତ ଯୁବକ ମାନେ ସେ ସମୟରେ ପସନ୍ଦ କରୁନଥିଲେ । ସେମାନେ ଭୁଲିଯାଇଥିଲେ ଆମ ନାଟ୍ୟ କଳାର ଗୌରବମୟ ପରମ୍ପରା ଯାହାର ମୂକସାକ୍ଷୀ ଭାବେ ବିଭିନ୍ନ ମନ୍ଦିର ଗାତ୍ରରେ, ଖଣ୍ଡଗିରି ଓ ଉଦୟଗିରି ଗୁମ୍ଫାର

ପ୍ରସ୍ତର ଗାତ୍ରରେ ବହୁପ୍ରାଚୀନ କୀର୍ତିମାନ ଖୋଦିତ ହୋଇ ରହିଛି । ଆମ ଶାସ୍ତ୍ର ପୁରାଣରେ ଏକମୁଖୀ ରଙ୍ଗମଞ୍ଚ ବିଷୟରେ ଉଲ୍ଲେଖ ରହିଛି । ଲୁପ୍ତପ୍ରାୟ ଏହି ସମ୍ଭ୍ରାନ୍ତ କଳାକୁ କେତେକ ସଚେତନଶୀଳ ଜାତୀୟତା ଭାବାଦର୍ଶୀ ଯୁବକମାନେ ପୁନର୍ଜୀବିତ କରିବାପାଇଁ ଚେଷ୍ଟା କଲେ । ଏହାଫଳରେ ଉନବିଂଶ ଶତାବ୍ଦୀର ସପ୍ତମ ଦଶକରୁ ବିଭିନ୍ନ ସ୍ଥାନରେ ନାଟକ ପରିବେଷଣ ଆରମ୍ଭ ହେଲା । କେତେକ ରାଜନ୍ୟମଣ୍ଡଳୀ ନିଜ ନିଜ ରାଜ୍ୟରେ ରଙ୍ଗମଞ୍ଚ ପ୍ରତିଷ୍ଠା କରି ସୌଖୀନ କଳାକାର ମାନଙ୍କ ଦ୍ୱାରା ନାଟକ ଅଭିନୟ ଆରମ୍ଭ କରାଇଥିଲେ । ମାତ୍ର କେତେକ ଚିନ୍ତାଶୀଳ ଯୁବକ ଏ ପ୍ରକାର ସୌଖୀନ ନାଟ୍ୟ ପରିବେଷଣ ସର୍ବସାଧାରଣଙ୍କ ଉପରେ ପ୍ରଭାବ ପକାଇ ପାରିବ ନାହିଁ ବୋଲି ଅନୁଭବ କଲେ । ଏହାର ପ୍ରତିକାର ସ୍ୱରୂପ ୧୯୧୧ ମସିହାରେ ପୁରୀଜିଲ୍ଲା, ବଳଙ୍ଗା ନିବାସୀ, ବଙ୍ଗୀୟ ଜମିଦାରଙ୍କ ନାଏବ୍ ନାଜର ଶ୍ରୀ ବନମାଳି ପତି ନିଜ ଗ୍ରାମରେ ଗୋଟିଏ ଭ୍ରାମ୍ୟମାଣ ଥିଏଟର୍ ଦଳ ପ୍ରତିଷ୍ଠା କଲେ ।

**ଓଡ଼ିଶାର ପ୍ରଥମ ଭ୍ରାମ୍ୟମାଣ ପେଷାଦାର ନାଟ୍ୟାନୁଷ୍ଠାନ : 'ରାଧାକୃଷ୍ଣ ଥିଏଟର୍'**

ବନମାଳୀ ପତି ନିଜ ଗାଁ ବଳଙ୍ଗା ପାଖରୁ କେତେଜଣ କଳାକାରଙ୍କୁ ସଂଗ୍ରହ କରି ସେମାନଙ୍କ ଦ୍ୱାରା 'କୃଷ୍ଣଲୀଳା' ଏକମୁଖୀ ମଞ୍ଚରେ ପରିବେଷଣ ପାଇଁ ଉଦ୍ୟମ କଲେ । ଏଥିପାଇଁ ଜଣେ ଉପଯୁକ୍ତ ମାଷ୍ଟର ଆବଶ୍ୟକ ପଡ଼ିଲା । ଗାଁ ଗହଳିର ନାଟ୍ୟ ଶିକ୍ଷକଙ୍କ ଶିକ୍ଷାରେ ସେ ସନ୍ତୁଷ୍ଟ ହୋଇପାରିଲେ ନାହିଁ । ଜମିଦାରୀ କାମରେ ଜଟଣୀ ଯାଇ ଥିବା ସମୟରେ ସେଠାରେ ସେ ଗୋଟିଏ ଯାତ୍ରାଦଳ ଦେଖିଲେ । ସେଠି ରାମଚନ୍ଦ୍ର ମାଣିଆଙ୍କ ଅଭିନୟ ଓ କଳାକୃତି ଦେଖିବାର ସୁଯୋଗ ମିଳିଲା । ମାଣିଆଙ୍କ ଅଭିନୟରେ ମୁଗ୍ଧ ହୋଇ ସେ ତାଙ୍କୁ ନିଜ ଅନୁଷ୍ଠାନ 'ରାଧାକୃଷ୍ଣ ଥିଏଟର'ର ମାଷ୍ଟର ଭାବେ ନିଯୁକ୍ତ କଲେ । ଏହିଭଳି ୧୯ ବର୍ଷ ବୟସରେ ରାମଚନ୍ଦ୍ର ମାଣିଆ ମାଷ୍ଟର ଭାବେ ପରିଚିତ ହେଲେ । ଏକାଧାରରେ ଗାୟକ, ବାଦକ, ନର୍ତ୍ତକ ଓ ଅଭିନେତା ଭାବେ ତାଙ୍କର ଯୋଗ୍ୟତା ଥିଲା । ଏଣୁ ବନମାଳୀ ପତିଙ୍କର ସେ ଅତ୍ୟନ୍ତ ବିଶ୍ୱସ୍ତ ଓ ପ୍ରିୟଭାଜନ ହୋଇପାରିଥିଲେ । ମଝିରେ ମଝିରେ କଲିକତାରୁ ଭ୍ରାମ୍ୟମାଣ ଥିଏଟର୍ ଦଳ ଓଡ଼ିଶା ଆସୁଥିଲା । ପତିଙ୍କ ସହ ମାଣିଆ ସେ ସବୁ ଦେଖିବାର ସୁଯୋଗ ପାଇଲେ । କୃଷ୍ଣଲୀଳା ପରିବେଷଣ ବନ୍ଦ କରି ନାଟକ ପରିବେଷଣ କରିବାକୁ ମନସ୍ଥ କଲେ । ନାଟ୍ୟ ନିର୍ଦ୍ଦେଶକ ଭାବେ ବାଲେଶ୍ୱର ସୁବାରାମପୁର ନିବାସୀ ଶ୍ରୀ ବୃନ୍ଦାବନ ବିହାରୀ ଦାଶଙ୍କୁ ଅଣାଗଲା । ରାମଚନ୍ଦ୍ର ମାଣିଆ କିଶୋର ବୟସ ଅତିକ୍ରମ କରି ଯୁବକ ବୟସରେ ପଦାର୍ପଣ କରିଥାନ୍ତି, ନାବାଳକରୁ ସାବାଳକ ହେଲେ । ଏହି ସମୟଟି

ପ୍ରତ୍ୟେକଙ୍କ ପାଇଁ ବଡ଼ ଗୁରୁତ୍ୱପୂର୍ଣ୍ଣ। ଚାହିଁଲେ ଜଣେ ସାଧୁ ହୋଇପାରେ । ସାଧକ ବା ଗୁଣୀ ହୋଇପାରେ କିମ୍ବା ଅସାମାଜିକ, ନାସ୍ତିକ, ବ୍ୟଭିଚାରୀ, ସ୍ୱେଚ୍ଛାଚାରୀ ଅଥବା ଦୁର୍ଦ୍ଦାନ୍ତ, ଚୋର ମଧ ହୋଇପାରେ । କିନ୍ତୁ ରାମମାଣିଆ ଭିନ୍ନ ଧାତୁରେ ଗଢ଼ା ହୋଇଥିଲେ । କଠୋର ସାଧନା ଓ ଅଧବସାୟ ବଳରେ ଜୀବନରେ ଜଣେ ସତ୍‌ମାର୍ଗୀ ହେବାପାଇଁ ନିୟତି ଆପେ ଆପେ ତାଙ୍କୁ ବାଟ ଦେଖାଇ ଦେଇଥିଲା । ନୃତ୍ୟ, ସଙ୍ଗୀତ ଓ ନାଟ୍ୟକଳା ସଂପର୍କରେ ଅଧିକ ଜ୍ଞାନ ଆହରଣ କରିବା ପାଇଁ ତାଙ୍କୁ ମିଳିଥିଲା ଅପୂର୍ବ ସୁଯୋଗ ଓ ସେଥିରେ ସେ ନିଜକୁ ସଂପୂର୍ଣ୍ଣ ଭାବେ ଉତ୍ସର୍ଗ କରିଦେଲେ ।

ବୃନ୍ଦାବନ ବିହାରୀ ଦାଶ ହେଉଛନ୍ତି ସେ ସମୟର ବଙ୍ଗଳାନୁବାଦ ନାଟକର ଜଣେ ପ୍ରଖ୍ୟାତ ନାଟ୍ୟ ନିର୍ଦ୍ଦେଶକ । କେବଳ ନାଟକ ନୁହେଁ, ହିନ୍ଦୁସ୍ଥାନୀ ରାଗରାଗିଣୀରେ ତାଙ୍କର ବିଶେଷ ଦଖଲ ଥିଲା । ସଙ୍ଗୀତ ଶିକ୍ଷକ ଏବଂ ଶାସ୍ତ୍ରୀୟ ପଦ୍ଧତିର ବାଦକ ଭାବରେ ତାଙ୍କର ଖ୍ୟାତି ଥିଲା । ପୂର୍ବ ଅନୁଭୂତିକୁ ସେ ପ୍ରୟୋଗ କଲେ । ମାଣିଆ ହେଲେ ଶ୍ରୀ ଦାଶଙ୍କର ପ୍ରିୟ ଛାତ୍ର । ତାଙ୍କର ଉତ୍ତରାଧିକାରୀ ଭାବେ ସେ ମାଣିଆଙ୍କୁ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତ ଏବଂ ବାଦ୍ୟଯନ୍ତ୍ର ଶିକ୍ଷା ଦେଲେ । ପ୍ରତିଷ୍ଠାତା ଶ୍ରୀ ପତିଙ୍କର ଇଚ୍ଛା ଥିଲା ଯେ, ମାଣିଆ ସବୁ ଗୁଣରେ ଯୋଗ୍ୟ ହୁଅନ୍ତୁ । ତାଙ୍କ ପ୍ରତିଷ୍ଠିତ 'ରାଧାକୃଷ୍ଣ ଥିଏଟର'ରେ ବଙ୍ଗଳା ନିକଟବର୍ତ୍ତୀ ଅଞ୍ଚଳରୁ ଯେଉଁମାନେ ଯୋଗ ଦେଇଥିଲେ ସେମାନେ ହେଲେ ୰ଶ୍ୟାମ ସୁନ୍ଦର ଶତପଥୀ, ୰ ବାଜପତି ଏବଂ ମଧୁସୂଦନ ସାହୁ ପ୍ରମୁଖ । ପତି ମହାଶୟ କେତେକ ଶିକ୍ଷିତ ଯୁବକଙ୍କୁ ଦଳରେ ରଖିଥିଲେ । ସେମାନେ ହେଲେ ଶ୍ରୀ ଜ୍ୟୋତୀନ୍ଦ୍ର ମୋହନ ମୁଖର୍ଜୀ, ଶ୍ରୀ ଫଣି ମୁଖର୍ଜୀ, ଶ୍ରୀ ମହେଶ ଚନ୍ଦ୍ର ରାୟ ପ୍ରମୁଖ । ବୃନ୍ଦାବନ ଦାଶ ବଙ୍ଗଳାନୁବାଦ 'ଜୟଦେବ', 'ଆଲିବାବା', ହରିଶ୍ଚନ୍ଦ୍ର' ପ୍ରଭୃତି ଶିକ୍ଷା ଦେଲେ । ରାମ ମାଣିଆ 'ଜୟଦେବ' ନାଟକରେ ପରାଶରଙ୍କ ସ୍ତ୍ରୀ ବିମଳୀ, 'ଅଲିବାବା' ନାଟକରେ ବାନ୍ଦି (ମର୍ଜିନା) ନର୍ତ୍ତକୀ ଏବଂ ହରିଶଚନ୍ଦ୍ରରେ ମହାରାଣୀ ଶୈବ୍ୟା ଚରିତ୍ରରେ ଅଭିନୟ କରିଥିଲେ ।

## ବାସ୍ତବ ଜୀବନର ଦୁଇଟି ଭୂମିକାରେ ଅବତୀର୍ଣ୍ଣ

ଗୁରୁଙ୍କଠାରୁ ରାମ ନୃତ୍ୟ, ସଙ୍ଗୀତ, ଅଭିନୟ ଇତ୍ୟାଦି ଶିକ୍ଷା କରିବା ସଙ୍ଗେ ସଙ୍ଗେ ଅନୁଷ୍ଠାନକୁ ଆସୁଥିବା ନୂଆ ବାଳକ ଓ ଯୁବକମାନଙ୍କୁ ପ୍ରାଥମିକ ତାଲିମ୍ ଦେବାର ଦାୟିତ୍ୱ ବହନ କରୁଥିଲେ । ଅବଶିଷ୍ଟ ସମୟ ନୂତନ ଓ ପୁରାତନ ଅଭିନେତାମାନଙ୍କ ଦୈନନ୍ଦିନ ସମସ୍ୟା ସମାଧାନରେ ସେ ନିୟୋଜିତ ରହୁଥିଲେ । ଏହାଦ୍ୱାରା ତାଙ୍କର କର୍ମବହୁଳ ଜୀବନର ପୂରା ସମୟ ରଙ୍ଗମଞ୍ଚ ସେବାରେ ଲାଗିଲା ।

ଶିକ୍ଷାନବୀଶ ଭାବେ ଯୋଗ ଦେଇଥିବା କିଶୋର ଓ ଯୁବକମାନଙ୍କୁ ତାଲିମ କରିବାର ଦାୟିତ୍ୱ ରାମ ମାଣିଆଙ୍କ ଉପରେ ନ୍ୟସ୍ତ ଥାଏ । ପ୍ରତିଦିନ ରାତି ଚାରିଟାରୁ ସେମାନଙ୍କର ସ୍ୱର ସାଧନା ଓ ନୃତ୍ୟାଭ୍ୟାସ ପରେ ସବୁ ପିଲା ସମବେତ ହୋଇ ସ୍ନାନ କରିବକୁ ଯାଆନ୍ତି । ଭାର୍ଗବୀ ନଦୀ କୂଳରେ ବଳଙ୍ଗା ଗାଁ ଅବସ୍ଥିତ । ନଦୀକୂଳରେ ଆମ୍ବ, ପୋଲାଙ୍ଗ, ନଡ଼ିଆ ପ୍ରଭୃତି ବିରାଟକାୟ ବୃକ୍ଷମାନେ ଏହାର ପ୍ରାକୃତିକ ଶୋଭା ବର୍ଦ୍ଧନ କରୁଥାଏ । ଏଠାରେ ନଈ ପହଁରିବା, ପାଣିରେବୁଡ଼ିବା ଓ ଖେଳିବା ପାଇଁ ବାଳକମାନଙ୍କର ପ୍ରବଳ ଆଗ୍ରହ । ମାତ୍ର ବଡ଼ଚାଟ ରାମଚନ୍ଦ୍ରଙ୍କ କଡ଼ା ତାଗିଦ୍ ସେମାନଙ୍କୁ ଏଥିରୁ ନିବୃତ୍ତ କରେ । ରାମଚନ୍ଦ୍ରଙ୍କ ଠାରୁ ଅଧିକ ବୟସ୍କ ବ୍ୟକ୍ତି ଏହି ଅନୁଷ୍ଠାନରେ ଥିଲେ ମଧ୍ୟ ସଫଳତାର ସହ କର୍ତ୍ତବ୍ୟ ସମ୍ପାଦନ ଦୃଷ୍ଟିରୁ ଥିଏଟରର ମାଲିକ ରାମ ମାଣିଆଙ୍କୁ ସବୁ ଗୁରୁତ୍ୱପୂର୍ଣ୍ଣଦାୟିତ୍ୱ ଦେଇଥିଲେ । ପ୍ରକୃତ ପକ୍ଷେ, ମାଲିକ ଓ ନାଟ୍ୟନିର୍ଦ୍ଦେଶକଙ୍କ ପାଇଁ ରାମ ମାଣିଆ ଅପରିହାର୍ଯ୍ୟ ହୋଇ ପଡ଼ିଲେ । ସେତେବେଳେ ଯେଉଁ ଶିକ୍ଷିତ ଯୁବକ ମାନେ ଯୋଗ ଦେଇଥିଲେ ସେମାନେ ପ୍ରତ୍ୟହ ନିର୍ଦ୍ଧାରିତ କାର୍ଯ୍ୟ ନିର୍ଘଣ୍ଟରେ ନିଜ ନିଜ ଚରିତ୍ର ଛଡ଼ା ଅନ୍ୟ କିଛି ବିଷୟ ଚିନ୍ତା କରନ୍ତି ନାହିଁ । ନାଟ୍ୟ ନିର୍ଦ୍ଦେଶକ ଶ୍ରୀ ଦାଶ ନିଜର ଘରୋଇ କାର୍ଯ୍ୟରେ ମାସକୁ ୭ ଦିନ ଛୁଟି ନେଇ ବାଲେଶ୍ୱର ଯାଆନ୍ତି । ତାଙ୍କ ଅନୁପସ୍ଥିତିରେ ରିହାର୍ଶାଲ୍ ଦାୟିତ୍ୱ ରାମ ମାଣିଆଙ୍କ ଉପରେ ପଡ଼େ ।

ସେତେବେଳେ ନାଟ ତାମସା ଦେଖିବାକୁ ସମ୍ଭ୍ରାନ୍ତ ପରିବାରର ଲୋକମାନେ ଭଲ ପାଉଥିଲେ ସତ । କିନ୍ତୁ ନିଜ ପରିବାରରୁ କେହି ନାଟ ଦଳରେ ଯୋଗଦେବା ସେମାନେ ସହ୍ୟ କରି ପାରୁନଥିଲେ ।

ବଳଙ୍ଗା ଗୋଟିଏ ବଡ଼ ଗାଁ । ବିଭିନ୍ନ ଜାତିର ଲୋକ ଏ ଗ୍ରାମର ଅଧିବାସୀ । ଥିଏଟର୍‌ର ଶିକ୍ଷା କେନ୍ଦ୍ର ଓ କଳାକାରମାନେ ରହିବା ପାଇଁ ବନମାଳୀ ପତି ତାଙ୍କର ନିଜ ଘରଠାରୁ ଦୂରରେ ଥିବା କଚେରୀ ଘରଟିକୁ ଛାଡ଼ିଦେଇଥିଲେ । ସେହି ଘରଟିରେ ମୁଖ୍ୟତଃ ଥିଏଟରର ଅଭିନେତାମାନେ ରହିବା ପାଇଁ ଓ ନାଟକ, ଅଭିନୟ, ନୃତ୍ୟ, ସଙ୍ଗୀତ ଇତ୍ୟାଦିର ଶିକ୍ଷା କେନ୍ଦ୍ର ଭାବେ ବ୍ୟବହାର କରାଯାଉଥିଲା । ଗାଁ ଠାରୁ ଦୂରରେ ଥିବାରୁ ସାଧାରଣ ଲୋକ ନାଟ୍ୟ ଶିକ୍ଷା କେନ୍ଦ୍ରକୁ ଯିବାର ଅବକାଶ ନଥିଲା ।

ଦିନକର ଘଟଣା, ରିହର୍ସାଲ କରୁଥିବା ଗୋଟିଏ ପିଲା ବାରମ୍ବାର ଭୁଲ କରିବାରୁ ରାମଚନ୍ଦ୍ର ତାକୁ ଗୋଟିଏ ଚାପୁଡ଼ା ଦେଲେ । ମାଲିକଙ୍କ ଠାରୁ ସୂଚନା ପାଇ ପିଲାଟି କାନ୍ଦୁଥିବା ସତ୍ତ୍ୱେ ତାକୁ ବେତରେ ଦୁଇତିନିଥର ମାଡ଼ ଦେଲେ । ମାଲିକ ଓ

ରାମଚନ୍ଦ୍ର ଉଭୟ ହୃଦୟବାନ । ରିହରସଲ ପରେ ଉଭୟ ଆଲୋଚନା କରି ସହମତ ହେଲେଯେ ଛୋଟ ଛୋଟ ପିଲା ଗୁଡ଼ିକ ଏ ବୟସରେ ତାଙ୍କ ବାପା ମା'ଙ୍କ କୋଳରେ ହସି, ଖେଳି ବୁଲି ଚଳିବା କଥା । ଆମେ ତାଙ୍କୁ ଧରିଆଣି ପଞ୍ଜୁରୀ ଭିତରେ ଆବଦ୍ଧ କରି ରଖିଛୁ । ଶିକ୍ଷକ ହେଲେ ମଧ୍ୟ ବାପ, ମା'ର ସ୍ନେହ ଦେଇ, ସେମାନଙ୍କୁ ଲାଳନ ପାଳନ କରିବା କଥା । ଆମେ ମାଲିକ, ଶିକ୍ଷକ ଉଭୟେ ଯଦି ନିର୍ଦ୍ଦୟ ହେବା ତେବେ ସେମାନଙ୍କୁ ସାନ୍ତ୍ୱନା ଦେବ କିଏ ?

ରାଧାକୃଷ୍ଣ ଥିଏଟର୍ କେତେ ଖଣ୍ଡ ନାଟକ ପ୍ରସ୍ତୁତ କରି ଭ୍ରମଣ କରିବା ଉଦ୍ଦେଶ୍ୟରେ ବଳଙ୍ଗା ଗ୍ରାମରୁ ବାହାରିଲେ । ଭ୍ରମଣକୁ ବାହାରିବା ପୂର୍ବରୁ ଶ୍ରୀ ମାଣିଆ ଦୀର୍ଘ ଦିନ ପରେ ନିଜ ଗାଁ କୁ ଫେରିଲେ । ୧୯/୨୦ ବର୍ଷର ଯୁବକ । କଥା ଭାଷା, ବେଶ ପୋଷାକ ଓ ଚାଲି ଚଳଣିରେ ବହୁ ପରିବର୍ତ୍ତନ ହୋଇଛି । ସମସ୍ତଙ୍କୁ ସେ ଯେପରି ନୂଆ ନୂଆ ଦେଖାଯାଉଥାନ୍ତି । ତାଙ୍କ ବାଲ୍ୟକାଳର ସାଙ୍ଗ ପିଲା, ଯେଉଁମାନଙ୍କ ସାଙ୍ଗରେ ସିଦ୍ଧ ପାହାଡ଼ ତଳେ ଝଙ୍କା ବରଗଛରେ ଡ଼ାଳ ମାଙ୍କୁଡ଼ି ଖେଳୁଥିଲେ, ଦୟାନଦୀରେ ପହଁରୁଥିଲେ, ଲଉଡ଼ି ଖେଳରେ ସାଙ୍ଗ ଥିଲେ । କେହି କେହି 'ରାମିଆ', 'ରାମା' ବା 'ରାମ' ବୋଲି ଡାକୁଥିଲେ । ଏବେ ରାମବାବୁ ବୋଲି ଡାକିବା ବ୍ୟତୀତ ଆଉ କିଛି ଡ଼ାକୁ ନାହାନ୍ତି । ବଡ଼ ବଡ଼ ବାବୁ ଭାୟାଙ୍କ ସଙ୍ଗେ ଚଳି, କଥାବାର୍ତ୍ତା ଢ଼ଙ୍ଗବି ବଦଳି ଯାଇଛି । ଆଉ ସେ ଗାଉଁଲିଆ କଥା ନାହିଁ । ନିଜର ବଡ଼ ଭାଇମାନେ ବି ଶଙ୍କି କରି କଥା କହୁଛନ୍ତି । ଅନେକ ଦିନ ପରେ ସେ ଗାଁକୁ ଫେରିଛନ୍ତି । ଗାଁଟି ତାଙ୍କୁ ନୂଆ ନୂଆ ଲାଗୁନଥିଲା । କିନ୍ତୁ ଗାଁ ର ପୁରୁଣା ଲୋକେ ପରସ୍ପର ମଧ୍ୟରେ କଥା ଭାଷା ହେଲେ ଯେ, ମଧୁମାଣିଆ ଘରକୁ ଜଣେ ବାବୁ କିଏ ଆସିଛନ୍ତି । ଆଉ କେହି କେହି କହିଲେ ଯେ, 'ହେଇ ରାମ ମ', ରାମିଆ, ରାମିଆ ଯିଏ ସଙ୍ଗୀତ ଦଳରେ ନାଟ କରୁଥିଲା' । କେହି କେହି ଗୁଣଗ୍ରାହୀ ଖୁସି ହୋଇ ମଧୁ ମାଣିଆକୁ ତାରିଫ କରିବାକୁ ଲାଗିଲେ । 'ଏଗାରଟି ସନ୍ତାନ ମଧ୍ୟରୁ ଯୋଗ୍ୟ ସନ୍ତାନଟିଏ ପାଇଥିଲ, ଏବେ ସେ ତୁମ ବଂଶର ନାଁ ବଡ଼ କରିବ' । ଭାଇ, ଭଉଣୀ, ଝିଆରୀ, ପୁତୁରା, ବାପା, ବୋଉଙ୍କ ପାଇଁ ବାସନା ସାବୁନ, ବାସନା ତେଲ, ଅଳତା ଓ ମନୋହରୀ ଜିନିଷ ଆଣିଥାନ୍ତି । ତା'ଛଡ଼ା ବିଲାତିଆଳୁ, ବଡ଼ ପିଆଜ, ପୋଟଳ ଓ ଗୋଟିଏ ବଡ଼ ବନ୍ଧା କୋବି ଆଣିଛନ୍ତି । ବନ୍ଧାକୋବି ସେତେବେଳ ଗାଁ ଗହଳରେ ପ୍ରାୟତଃ ମିଳେ ନାହିଁ । ବନ୍ଧାକୋବି ରାନ୍ଧିବା ପାଇଁ ବରାଦ କରି ଓ ନିଶ୍ଚିତ ହୋଇ ସେ ଗାଁ ପୋଖରୀକୁ ଗାଧୋଇବାକୁ ଗଲେ । ଗାଁରୁ ପୋଖରୀ ତୁଠ ଏବଂ ପୋଖରୀ ତୁଠରୁ ଘରକୁ ଫେରିବା ପାଇଁ ଦୁଇଘଣ୍ଟା ବିତିଗଲା ।

କେତେ ପ୍ରକାରର ଲୋକଙ୍କ ସହ କଥା ଭାଷା ଓ ଆଲୋଚନା । ସମସ୍ତଙ୍କୁ ବିନମ୍ର ଭାବରେ ଉତ୍ତର ଦେଉ ଦେଉ ସମୟ ବିତିଗଲା ।

ସେ ଘରେ ନଥିବା ସମୟରେ ତାଙ୍କ ମା' କୋବିଟାରେ ଫଳ ଖୋଜିବା ପାଇଁ ପତ୍ର ଗୁଡ଼ିକ ଛଡ଼ାଇ ବଳଦ ଆହାର କୁଣ୍ଡରେ ପକାଇ ଦେଇଥାନ୍ତି । ବଳଦ ତାକୁ ଖାଇଦେଉଥାଏ । କିନ୍ତୁ ବୁଢ଼ୀ କୋବିର ଫଳ ଖୋଜି ଖୋଜି ପାଇଲେ ନାହିଁ । ବୁଢ଼ୀ ହତବାକ୍ । ବହୁ ପ୍ରକାରର ମସଲା ବଟା ଯାଇଥିଲା ଯେ କୋବି ଫଳଟା କଟା ହେଲେ ରାନ୍ଧିବା ପାଇଁ । ବିଅର ତାଙ୍କ ରାନ୍ଧିବା ଭାର ଭାଉଜଙ୍କୁ ମଧ ଦେଇ ଯାଇଛନ୍ତି । ରାମବାବୁ ଗାଧୋଇ ୨ ଘଣ୍ଟାପରେ ଘରକୁ ଆସି ଖାଇବାକୁ ବସିଲେ । କୋବି ତରକାରୀର ଅନୁପସ୍ଥିତିର କାରଣ ପଚାରନ୍ତେ ତାଙ୍କ ମା' କହିଲେ 'ଆରେ ରାମ, କୋବିଟା ଆଣିଲୁ ଯେ, ତତେ କିଏ ଠକିଦେଲା । କୋବିରେ ଫଳ କାହିଁବା ? ଖାଲି ପତରଗୁଡ଼ାକ, ମୁଁ ବଳଦ ଆହାର କୁଣ୍ଡରେ ପକାଇ ଦେଲି; ସେ ଖାଇଦେଲା, ଦେଖିଲା ବେଳକୁ ଫଳ ନାହିଁ । ଏକଥାରେ ରାମଚନ୍ଦ୍ର ଆଉ କ'ଣ କହିବେ କେବଳ ଚୁପ୍ ହୋଇ ରହିଲେ ଓ ମନକୁ ମନ ହସିଲେ ।

ଗାଁରେ କେତୋଟି ଦିନ କଟାଇ ରାମ ମାଣିଆ ପୁଣି ମଞ୍ଚ ଦୁନିଆକୁ ଫେରିଆସିଲେ । ରାଧାକୃଷ୍ଣ ଥିଏଟର୍‌ର ଗସ୍ତ ଆରମ୍ଭ ହେଲା । ରାମ ମାଣିଆଙ୍କ ଦାୟିତ୍ୱ ବଢ଼ିଗଲା । ନାଟ୍ୟ ଶିକ୍ଷକଙ୍କ ବଡ଼ଚାଟ ହିସାବରେ ପେଣ୍ଡାଲ ବାନ୍ଧିବା ଠାରୁ ଆରମ୍ଭ କରି, ନାଟକାଭିନୟ ସମୟରେ ବେଶସଜ୍ଜା ଦେଖିବା ଓ ପୋଷାକ ପତ୍ରର ଯତ୍ନ ନେବା ସହ ବାଦ୍ୟଯନ୍ତ୍ର ବଜାଇବାର ଦାୟିତ୍ୱ ମଧ ତାଙ୍କ ଉପରେ ଥାଏ । ଦଳ ଭ୍ରମଣ ବେଳେ ମାଲିକ ଦଳ ସହିତ ଯିବାର ସୁବିଧା ନଥିବା ଯୋଗୁଁ ଜଣେ ମ୍ୟାନେଜର ଥିଲେ । କିନ୍ତୁ କ୍ୟାମ୍ପରେ ସମସ୍ତଙ୍କର ସୁବିଧା ଅସୁବିଧା ଦେଖିବା, ଖାଦ୍ୟ ପେୟ ବଣ୍ଟନରେ ନିରପେକ୍ଷତା ପ୍ରତି ଦୃଷ୍ଟି ଦେବାର ଦାୟିତ୍ୱ ମାଲିକ ଶ୍ରୀପତି ମହାଶୟ ରାମଙ୍କ ଉପରେ ନ୍ୟସ୍ତ କରିଥିଲେ । ବହୁ ଶିକ୍ଷିତ ଯୁବକଙ୍କ ମଧରେ ସେ ଅଶିକ୍ଷିତ ଥିଲେ ମଧ ତାଙ୍କର କର୍ମ ନିଷ୍ଠା ଓ ଦକ୍ଷତା ଯୋଗୁଁ ଅନୁଷ୍ଠାନର ମୁଖ୍ୟ ଭୂମିକାରେ ସେ ଅବତୀର୍ଣ୍ଣ ହୋଇଥିଲେ । ସେଥିପାଇଁ ଅନେକଙ୍କର ସେ ଚକ୍ଷୁଶୂଳ ହୋଇଥିଲେ ସତ ମାତ୍ର ସେ ସମସ୍ତଙ୍କ ସହ ମିଳିମିଶି କାମ କରି ସବୁଥିରେ ସଫଳ ହେଉଥିଲେ ।



# ଦ୍ୱିତୀୟ ଅଧ୍ୟାୟ

## ନାଟ୍ୟ ସଂସ୍ଥା ଦ୍ୱାରା ଓଡ଼ିଆ ଭାଷାର ସୁରକ୍ଷା

୧୮୭୭ ମସିହାରୁ ଓଡ଼ିଆ ଭାଷାର ସୁରକ୍ଷା ନିମନ୍ତେ ଯେଉଁମାନେ ଉଦ୍ୟମ କରିଥିଲେ ସେମାନଙ୍କ ମଧ୍ୟରେ ୰ ଜଗମୋହନ ଲାଲା, ରାମଶଙ୍କର ରାୟ, ଭିକାରୀ ପଟ୍ଟନାୟକ, କାମପାଳ ମିଶ୍ର, ଖଡ଼ିଆଳ ରାଜା ଶ୍ରୀ ବୀରବିକ୍ରମ ସିଂହଦେଓ , ପାରଳା ଗଜପତି ଶ୍ରୀ ପଦ୍ମନାଭ ଦେବ ଅଗ୍ରଗଣ୍ୟ । ସେମାନେ ସ୍ୱରଚିତ ନାଟକମାନ ନିଜ ନିଜ ପରିସର ମଧ୍ୟରେ ସୌଖୀନ ଭାବରେ ମଞ୍ଚସ୍ଥ କରି, ମୌଳିକ ନାଟକ ସମ୍ପର୍କରେ ନାଟ୍ୟ ପିପାସୁଙ୍କ ମନରେ ଚେତନା ସୃଷ୍ଟି କରିପାରିଥିଲେ । ପରବର୍ତ୍ତୀ କାଳରେ ସ୍ୱର୍ଗତ ଗୋବିନ୍ଦ ଚନ୍ଦ୍ର ସୁର ଦେଓ, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, କବି ମଞ୍ଜୁଳ ଶ୍ରୀ କୃଷ୍ଣ ପ୍ରସାଦ ବସୁ, ଶ୍ରୀ ମୋହନ ସୁନ୍ଦର ଦେବ ଗୋସ୍ୱାମୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଗୋଟିଏ ଗୋଟିଏ ଭ୍ରାମ୍ୟମାଣ ଦଳ ଗଠନ କଲେ । ସେମାନେ ମୁକ୍ତ ମଞ୍ଚରେ ଅଥବା ଏକମୁଖୀ ମଞ୍ଚରେ ସ୍ୱରଚିତ କୃଷ୍ଣଲୀଳା ଅଭିନୟ ସଙ୍ଗେ ସଙ୍ଗେ ଓଡ଼ିଶାର ବିଭିନ୍ନ ଅଞ୍ଚଳ ଭ୍ରମଣ କରି ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରସାର କରିଥିଲେ । ଏତଦ୍ୱାରା ଏକମୁଖୀ ମଞ୍ଚ ପ୍ରତି ଜନସାଧାରଣଙ୍କର ଅନୁରାଗ ସୃଷ୍ଟି ହୋଇଥିଲା ।

## ରାଧାକୃଷ୍ଣ ଥିଏଟର୍‌ରେ ମୌଳିକ ଓଡ଼ିଆ ନାଟକ

ଓଡ଼ିଶାର ବିଭିନ୍ନ ଅଞ୍ଚଳ ତଥା ଗଡ଼ଜାତ ଅଞ୍ଚଳରେ ବଙ୍ଗଳାନୁବାଦ ନାଟକ ଗୁଡ଼ିକ ଅଭିନୟ ଦ୍ୱାରା ଦେଖାଗଲା ଯେ ଶିକ୍ଷିତ ନାଟ୍ୟ ପିପାସୁ ଅନୁବାଦ ପରିବର୍ତ୍ତେ ଆମର ମୌଳିକ ନାଟକକୁ ଅଧିକ ଗୁରୁତ୍ୱ ଦେଉଛନ୍ତି । ୰ଜଗମୋହନ ଲାଲା ପ୍ରମୁଖ ଯେଉଁ ନାଟକ ରଚନା କରିଥିଲେ, ସେ ସବୁ ରାଧାକୃଷ୍ଣ ଥିଏଟର୍‌ରେ ଅଭିନୀତ ହୋଇନାହିଁ । ନାଟ୍ୟଗୁରୁ ମାଣିଆଙ୍କ ମତରେ କେବଳ କାମପାଳ ମିଶ୍ରଙ୍କ ଲିଖିତ 'ସୀତାବିବାହ', ଭିକାରୀ ପଟ୍ଟନାୟକଙ୍କର ରଚିତ 'କଳିଙ୍ଗ ବିଜୟ', ରାମଚନ୍ଦ୍ର ମହାପାତ୍ରଙ୍କର 'ସୁଦାମା ଦରିଦ୍ର ଭଞ୍ଜନ' 'ରଘୁ ଅରକ୍ଷିତ' ପ୍ରଭୃତି ଅଭିନୀତ ହେଉଥିଲା, କିନ୍ତୁ ବଙ୍ଗଳାନୁବାଦ ନାଟକ ଗୁଡ଼ିକ ସାଧାରଣ ଦର୍ଶକଙ୍କୁ ଯେତେ ଆକୃଷ୍ଟ କରିପାରୁଥିଲା, ଓଡ଼ିଆ ନାଟକ ଗୁଡ଼ିକ ସାଧାରଣଙ୍କ ଦ୍ୱାରା ବିଶେଷ ଆଦୃତ ହେଉନଥିଲା । ସେତେବେଳେ ନାଟକର ଆଭିମୁଖ୍ୟ ଥିଲା, ମନୋରଞ୍ଜନ ମାଧ୍ୟମରେ ଦର୍ଶକଙ୍କୁ ଆକୃଷ୍ଟ କରିବା, ଅର୍ଥାତ୍ ଉଚ୍ଚାଙ୍ଗ ସାହିତ୍ୟ ପରିବର୍ତ୍ତେ ସର୍ବସାଧାରଣ ବୁଝିପାରିବା ଭଳି ବଚନିକା, ନାଚ,ଗୀତ, ହାସ୍ୟ, କରୁଣ, ଶୃଙ୍ଗାରାଦି ବିଭିନ୍ନ ରସ ସୃଷ୍ଟି କରିଥିବା ନାଟକ ପ୍ରାୟ ୩/୪ ଘଣ୍ଟା

ପର୍ଯ୍ୟନ୍ତ ଦେଖିବାକୁ ଦର୍ଶକ ପସନ୍ଦ କରୁଥିଲେ । ମାତ୍ର ପୂର୍ବୋକ୍ତ ନାଟକ ଗୁଡ଼ିକରେ, ସେସବୁର ଅଭାବ ଥିଲା ।

## କଟକ ବାସନ୍ତୀ ରଙ୍ଗମଞ୍ଚରେ ଅଭିନୟ

ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକ ସହରରେ ଉନବିଂଶ ଶତାବ୍ଦୀର ଶେଷ ପୂର୍ବରୁ ଅର୍ଥାତ୍ ୧୮୯୪ ମସିହାରେ ସ୍ଥାୟୀ ରଙ୍ଗମଞ୍ଚ ଗଢ଼ିବାର ଉଦ୍ୟମ ହୋଇଥିଲା । 'ମ୍ୟାଗ୍ନେଟିକ୍ ଥିଏଟର୍' ନାମକ ଏକ ସୌଖୀନ୍ ଥିଏଟର ଦଳ କଟକ ସାହେବ ଜାଦା ବଜାରରେ ଏକ ପ୍ରଶସ୍ତ ରଙ୍ଗମଞ୍ଚରେ ୩/୪ ବର୍ଷ ଚାଲିଲା । ଘରଟି ଭାଙ୍ଗିଯିବା ଦ୍ୱାରା ପୁନର୍ଗଠନ ପାଇଁ କେହି ଆଗ୍ରହ ପ୍ରକାଶ କଲେ ନାହିଁ । ସେହି ସମୟରେ ପାରଳାଖେମୁଣ୍ଡିରେ ପଦ୍ମନାଭ ରଙ୍ଗାଳୟ ଗଢ଼ାଗଲା । ପରେ ପରେ ଜଗନ୍ନାଥ ବଲ୍ଲଭ ମେହେନ୍ଦି ପୁର ଅଞ୍ଚଳରେ ବାଜପୁର ଜମିଦାର ଶ୍ରୀ କୁଞ୍ଜବିହାରୀ ବୋଷଙ୍କ ଚେଷ୍ଟାରେ ବାସନ୍ତୀ ରଙ୍ଗମଞ୍ଚ ଗଢ଼ାଗଲା । ସେଠାରେ କେବଳ ବଙ୍ଗଳା ନାଟକ ଅଭିନୀତ ହେଉଥିଲା। ପରେ ପରେ 'ରାଧାକୃଷ୍ଣ ଥିଏଟର' ଏହି ସ୍ଥାୟୀ ରଙ୍ଗମଞ୍ଚରେ ଧାରାବାହିକ ନାଟକ ଅଭିନୟ କରିବା ପାଇଁ ୧୯୧୭ ମସିହାରେ ଦଳର ମାଲିକ ଶ୍ରୀ ବନମାଳୀ ପତି ପେଣ୍ଡାଲ ମାଲିକଙ୍କ ସହିତ ଚୁକ୍ତିବଦ୍ଧ ହେଲେ । ତା'ପରଠାରୁ ଆମ ରାଜ୍ୟର ବିଭିନ୍ନ ସ୍ଥାନରେ ଗୋଟିଏ ଗୋଟିଏ ଆମେଚର୍ ଥିଏଟର କ୍ଲବ ଯଥା କଟକ ବୀଣାପାଣି କ୍ଲବ, ଅମଲା କ୍ଲବ୍, ପୁରୀ ଜଗନ୍ନାଥ ବଲ୍ଲଭ କ୍ଲବ୍, ଖୋର୍ଦ୍ଧା କ୍ଲବ୍, ଯାଜପୁରରେ ଖରିଆପୁର ପେଣ୍ଡାଲ୍ ଏବଂ ରାଜଉଆସମାନଙ୍କରେ ପେଣ୍ଡାଲ୍ ତିଆରି ହୋଇ ସୌଖୀନ ଭାବରେ ବିଶେଷ ଆଡ଼ମ୍ବର ପୂର୍ଣ୍ଣ ସାଜସଜ୍ଜାରେ ନାଟକ ଅଭିନୀତ ହେଉଥିଲା । 'ରାଧାକୃଷ୍ଣ ଥିଏଟର୍' ଏକମାତ୍ର ପେଶାଦାର ନାଟ୍ୟାନୁଷ୍ଠାନ ହିସାବରେ ଗୁଡ଼ିଏ ଲୋକଙ୍କର ଦୈନନ୍ଦିନ ଜୀବିକାର୍ଜ୍ଜନର ସ୍ଥଳ ଥିଲା । ତେଣୁ ସେମାନେ ସାଜସଜ୍ଜାରେ ବିଶେଷ ଆଡ଼ମ୍ବରର ବ୍ୟବସ୍ଥା କରିପାରୁନଥିଲେ । ଏମାନଙ୍କର ନିଜର ସିନ୍ ଥାଏ, ନିଜ ହାତରେ ନିଜର ବେଶ ପୋଷାକ ଓ ମେକ୍ଅପ୍ ହୁଅନ୍ତି । ତେଣୁ ଦର୍ଶକମାନଙ୍କ ଦ୍ୱାରା ଆମେଚର୍ ଓ ପ୍ରଫେସ୍‌ନାଲ୍ ଅଭିନୟ ମଧ୍ୟରେ ତୁଳନା କରାଯାଉଥିଲା । ସେତେବେଳକୁ ଚାକିରୀ କ୍ଷେତ୍ରରେ ବଙ୍ଗଭାଷୀଙ୍କ ସଂଖ୍ୟା ଅଧିକ ଥିଲା ଏବଂ ସେମାନେ ବିଶେଷ ପ୍ରଭାବଶାଳୀ ଥିଲେ । Amateur Club ଗୁଡ଼ିକ ସେଇମାନଙ୍କ ଉଦ୍ୟମରେ ଗଢ଼ାଯାଇଥିଲା ବୋଲି କହିଲେ ଭୁଲ୍ ହେବ ନାହିଁ । ତେଣୁ ସେଇ କାଳରୁ ସୌଖୀନ୍ ଓ ପେଷାଦାର ଗୋଷ୍ଠୀ ମଧ୍ୟରେ ବିଭେଦ ସୃଷ୍ଟି ହୋଇଥିଲା । ଉଭୟ ଗୋଷ୍ଠୀର ନାଟକ ପରିବେଷଣ ଉପରେ ସାଧାରଣ

ଦର୍ଶକ ନିଜର ମତାମତ ଦେବା ପୂର୍ବରୁ ଉପରୋକ୍ତ ଦୁଇଗୋଷ୍ଠୀ ପରସ୍ପର ବିରୁଦ୍ଧରେ ଟିକା, ଟିପ୍ପଣୀ ଦେବାରେ ପଶ୍ଚାତ୍‌ପଦ ହେଉନଥିଲେ ।

## ମୌଳିକ ଓଡ଼ିଆ ନାଟକ ସଂଧାନ

ରାଧାକୃଷ୍ଣ ଥିଏଟର୍‌ର ପ୍ରତିଷ୍ଠାତା ଓଡ଼ିଆ ଭାଷାରେ ରଚିତ ପୌରାଣିକ ନାଟକର ଅନୁସନ୍ଧାନରେ ଥିବାବେଳେ କଟକ ରେଭେନ୍ସା କଲେଜ ତରଫରୁ ତତ୍କାଳୀନ ପ୍ୟାରିମୋହନ ଏକାଡ଼େମୀର ପ୍ରଧାନ ଶିକ୍ଷକ ୰ ଶ୍ରୀଯୁକ୍ତ ଅଶ୍ୱିନୀ କୁମାର ଘୋଷଙ୍କର ପୌରାଣିକ ନାଟକ 'ଭୀଷ୍ମ' ଅଭିନୀତ ହେଲା । ପତି ମହାଶୟ ସେ ନାଟକ ଦେଖିଲେ । ପରଦିନ ଅଶ୍ୱିନୀ ବାବୁଙ୍କଠାରୁ ନାଟକଟିକୁ ଆଣିଲେ ଏବଂ ସେହି ନାଟକ ରାଧାକୃଷ୍ଣ ଥିଏଟର ଦ୍ୱାରା ପ୍ରସ୍ତୁତ କରାଯାଇ ମଞ୍ଚସ୍ଥ କରାଗଲା । ଶ୍ରୀ ମାଣିଆ 'ଭୀଷ୍ମ' ନାଟକରେ ଶାନ୍ତନୁ ଋଷିଙ୍କ ସ୍ତ୍ରୀ (ଭୀଷ୍ମଙ୍କଙ୍କ ବିମାତା) ଚରିତ୍ରରେ ଅଭିନୟ କରିଥିଲେ । ପରବର୍ତ୍ତୀ ନାଟକ 'ସେଓଜୀ' ରେ ଶ୍ରୀ ମାଣିଆ ରାଜକୁମାରୀ 'ଚଞ୍ଚଳା' ଚରିତ୍ରରେ ଅଭିନୟ କରିଥିଲେ । ତା'ପରେ 'ସାବିତ୍ରୀ' ରେ ସତ୍ୟବାନଙ୍କର ମା, 'ଗୋବିନ୍ଦ ବିଦ୍ୟାଧର'ରେ ଜଗଦମ୍ବା ଚରିତ୍ରରେ ଅଭିନୟ କରିଥିଲେ । ସେ ମଞ୍ଚ ଜଗତରେ ବିଶେଷ ଖ୍ୟାତି ଲାଭ କରିଥିଲେ । 'ସାଲବେଗ' ନାଟକର ସାଲବେଗ ଭୂମିକାରେ ଅବତୀର୍ଣ୍ଣ ହେଲେ ତାଙ୍କ ବୟସ ଓ ଶାରିରୀକ ଗଠନ ଓ ସ୍ୱର ପରିବର୍ତ୍ତନ ଯୋଗୁଁ ଆଉ ସେ ନାରୀ ଚରିତ୍ରରେ ଅଭିନୟ କଲେ ନାହିଁ । ପରବର୍ତ୍ତୀ ନାଟକ 'କେଶରୀ ଗଙ୍ଗ'ରେ ସେ ଚୋଳଗଙ୍ଗ ଦେବ ଚରିତ୍ରରେ 'ଦାସିଆବାଉରୀ'ରେ ଦାସିଆ, 'କଳାପାହାଡ଼'ରେ କତଲୁ ଖାଁ, ପରେ 'ମୁକୁନ୍ଦ ଦେବ' ଏବଂ 'କଳାପାହାଡ଼' ଚରିତ୍ରରେ ଅଭିନୟ କରିଥିଲେ । ଉପରୋକ୍ତ ନାଟକ ଗୁଡ଼ିକ ୰ବୃନ୍ଦାବନ ବିହାରୀ ଦାଶଙ୍କ ନିର୍ଦ୍ଦେଶନାରେ ମଞ୍ଚସ୍ଥ ହୋଇଥିଲା । ଜ୍ୟୋତୀନ୍ଦ୍ର ମୋହନ ମୁଖାର୍ଜୀ (ମନିବାବୁ)ଙ୍କ 'ଶ୍ରୀମନ୍ଦିର' ନାଟକରେ ଶ୍ରୀ ମାଣିଆ ବିଦ୍ୟାପତି ଚରିତ୍ରରେ ଅଭିନୟ କରିଥିଲେ ।

ରାଧାକୃଷ୍ଣ ଥିଏଟର ବାସନ୍ତୀ ରଙ୍ଗମଞ୍ଚକୁ ସ୍ଥାୟୀ ରଙ୍ଗମଞ୍ଚ ରୂପେ ଗ୍ରହଣ କରିନେଲା । ଶୁଣାଯାଏ ମଞ୍ଚ ପ୍ରତିଷ୍ଠାତା କୁଞ୍ଜବିହାରୀ ବୋଷଙ୍କ ଠାରୁ ଶ୍ରୀ ବନମାଳୀ ପତି, ମଞ୍ଚଟିକୁ କ୍ରୟ କରିନେଲେ । ରାଧାକୃଷ୍ଣ ଥିଏଟର୍ ୧୦ ବର୍ଷ ଧରି ଧାରାବାହିକ ଭାବରେ କଟକ ସହରରେ ନାଟକ ପରିବେଷଣ କଲେ । ଏହି ଦଶ ବର୍ଷ ଭିତରେ ପ୍ରତି ଗ୍ରୀଷ୍ମ ଋତୁରେ ଓଡ଼ିଶାର ମୋଗଲ ବନ୍ଦୀ ଅଞ୍ଚଳର ବଡ଼ ବଡ଼ ସହର ଓ ସମସ୍ତ ଗଡ଼ଜାତ ଅଞ୍ଚଳର ରାଜନ୍ୟମଣ୍ଡଳୀଙ୍କ ବିଭିନ୍ନ ଉତ୍ସବ ମାନଙ୍କରେ ନାଟକ ପରିବେଷଣ ଦ୍ୱାରା ଓଡ଼ିଆ

ଭାଷାର ମୌଳିକ ନାଟକର ଗୁରୁତ୍ୱ ବଢ଼ିଲା । ସେସମୟର କଳାକାର ମାନେ ହେଲେ ୰ ରାମଚନ୍ଦ୍ର ମାଣିଆ, ୰ ଜ୍ୟୋତୀନ୍ଦ୍ର ମୋହନ ମୁଖାର୍ଜୀ, ୰ ଫନୀନ୍ଦ୍ର ମୋହନ ମୁଖାର୍ଜୀ, ୰ ଗଜପତି, ୰ମଧୁସୂଦନ ସାହୁ, ଅନାଥ ପୃଷ୍ଟି, ଅପର୍ତ୍ତି ଚରଣ ସାହୁ, କୁଞ୍ଜବିହାରୀ ପାତ୍ର, ଅନନ୍ତ ଚରଣ ସାହୁ, କାଶୀ ନାଥ ସାହୁ, ଭୀମ ପ୍ରଧାନ, ବାବାଜୀ ସ୍ୱାଇଁ, ବ୍ରଜ ମୋହନ ପଣ୍ଡା, ଗୌରାଙ୍ଗ ଚରଣ ଦାସ୍, କୃଷ୍ଣ ଚରଣ ବେହେରା, କ୍ଷୀରୋଦ ଚନ୍ଦ୍ର ଆଇଚି, ସୋମନାଥ ଶତପଥୀ, ବଙ୍କିମ୍ ଚକ୍ରବର୍ତ୍ତୀ, ନାଟ୍ୟ ଶିକ୍ଷକ ବୃନ୍ଦାବନ ବିହାରୀ ଦାଶ, ବାଞ୍ଛାନିଧି ମହାନ୍ତି, କୃଷ୍ଣ ଚନ୍ଦ୍ର ସାହୁ, ରଘୁନାଥ ଷଡ଼ଙ୍ଗୀ, ବାଞ୍ଛାନିଧି ଦାଶ, କୃଷ୍ଣ ଦାସ ମୁଖାର୍ଜୀ ପ୍ରମୁଖ । ପେଷାଦାର କଳାକାର ଭାବରେ ଏମାନେ ପରିଚିତ । ଏମାନଙ୍କ ସାହାଯ୍ୟକାରୀ ଭାବରେ ଯେଉଁ ସୌଖୀନ୍ କଳାକାରମାନେ ସାମିଲ୍ ହୋଇଥିଲେ, ସେମାନେ ହେଲେ ଅମଲା ରାୟ ଚୌଧୁରୀ, ମହେଶ ଚନ୍ଦ୍ର ରାୟ, ଦଲାଇ ଚୌଧୁରୀ ପ୍ରମୁଖ ।

## ୧୯୨୪ ମସିହାରେ ବଲାଇ ଚାନ୍ଦ ମୁଖାର୍ଜୀଙ୍କ ଯୋଗଦାନ

୰ ଶ୍ରୀ ବଲାଇ ଚାନ୍ଦ ବାନାର୍ଜୀ ବି.ଏ. ପାଶ୍ ପରେ କଲିକତାସ୍ଥ ଡ଼ାକ ବିଭାଗରେ କିରାଣୀ ଚାକିରୀ କରିବା ସହ ଆଇନ୍ ବିଦ୍ୟା ଅଧ୍ୟୟନ କରୁଥିଲେ । ସେତେବେଳେ ବଙ୍ଗଳା ରଙ୍ଗମଞ୍ଚ ଗୁଡ଼ିକରେ ସେଠିକାର ନାଟକ ଗୁଡ଼ିକ ଦେଖିବା ତାଙ୍କର ପ୍ରଧାନ କାମ ଥିଲା । ସେତେବେଳକୁ ନାରୀମାନେ ନାରୀ ଚରିତ୍ର ଗୁଡ଼ିକରେ ଅଭିନୟ କଲେଣି । ସେହି ଉନ୍ନତ ନାଟକ ପରିବେଷଣ ଦେଖି ତାଙ୍କ ଯୁବପ୍ରାଣରେ ଜନ୍ମଭୂମି ଓଡ଼ିଶାର ସ୍ଥିତି; ନିଶ୍ଚୟ ଦୁଃଖ ଜାତ କରିଥିବ ।

ବଙ୍ଗଭାଷୀମାନେ ଆଲୋଚନା ଛଳରେ କହନ୍ତି ଯେ 'ଓଡ଼ିଶାର ନାଟ୍ୟକଳା ମାନେ ଯାତ୍ରା; ଓଡ଼ିଆମାନେ ଯାତ୍ରା ଛଡ଼ା ଆଉ କିଛି ଜାଣନ୍ତି ନାହିଁ । ଓଡ଼ିଶାର ବ୍ୟବସାୟୀ ଯାତ୍ରାଦଳ ଗୁଡ଼ିକ କଲିକତାର ବିଭିନ୍ନ ଓଡ଼ିଆ ବହୁଳ ଅଞ୍ଚଳମାନଙ୍କରେ ସେମାନଙ୍କର ଗୀତିନାଟ୍ୟ ଗୁଡ଼ିକ ପରିବେଷଣ କରୁଥିବାରୁ ସମ୍ଭବତଃ ସେମାନେ ଏଭଳି କହୁଥିଲେ । ପ୍ରକୃତ ପକ୍ଷେ ସେତେବେଳେ ଥିଏଟର୍ କହିଲେ ଯାହା ବୁଝା ଯାଉଥିଲା, ତାହା ଓଡ଼ିଶାରେ ନଥିଲା । କେତେଗୁଡ଼ିଏ ସୌଖୀନ କ୍ଲବରେ କାଁଭାଁ ବଙ୍ଗଳାନୁବାଦିତ ଓଡ଼ିଆ ନାଟକ ଅଭିନୀତ ହେଉଥିଲା । ଯୁବକ ବଲାଇ ଚାନ୍ଦ ଏଭଳି ବନ୍ଧୁମାନଙ୍କ ମନ୍ତବ୍ୟରେ କ୍ଷୁବ୍ଧ ହୋଇ ଡାକ ବିଭାଗ ଚାକିରୀରୁ ଇସ୍ତଫା ଦେଇ କଟକ ଚାଲି ଆସିଥିଲେ । ଓକିଲାତି କରିବା କେବଳ ଗୋଟିଏ ବାହାନା ଥିଲା, ମାତ୍ର ମୁଖ୍ୟ କାମ ହେଲା, କିପରି ବହୁଳ

ଭାବରେ ଓଡ଼ିଆ ନାଟକ ଏକମୁଖୀ ରଙ୍ଗମଞ୍ଚରେ ଅଭିନୀତ ହେବ । ଓକିଲାତିରେ ମନ ନ ଦେଇ ଅଧିକ ଭାବେ ନାଟ୍ୟ ଭାବାପନ୍ନ ହେବାଯୋଗୁଁ ତାଙ୍କ ଅଭିଭାବକଙ୍କର ଅସନ୍ତୋଷର ପାତ୍ର ହେଲେ । ତାଙ୍କୁ ଯେତେବେଳେ ବିବାହ ବନ୍ଧନରେ ବାନ୍ଧିଦେବାର ପ୍ରସ୍ତାବ କରାଗଲା, ସେ ସେଥିରେ ସମ୍ମତି ପ୍ରକାଶ କଲେ ନାହିଁ । କଟକ ସାହେବଜାଦା ବଜାର, ଯେଉଁଠାରେ କି ଅତୀତରେ 'ମାଗ୍ନେଟିକ୍ ଥିଏଟର'ର ନାଟକ ପରିବେଷଣ ହେଉଥିଲା , ସେହି କ୍ଲବର କେତେକ ଯୁବକଙ୍କ ସହଯୋଗରେ ସେଠାରେ ବଙ୍ଗଳାନୁବାଦ ନାଟକର ପ୍ରଦର୍ଶନ କରାଇଲେ । ତାଙ୍କର ସହଯୋଗୀ ଆଡ଼ଭୋକେଟ୍ ଅନାଥ ବନ୍ଧୁରାୟ, ବିମଳ ଚନ୍ଦ୍ର ବୋଷ, ଖଗେନ୍ଦ୍ର ନାଥ ମିତ୍ର ପ୍ରମୁଖ ନିଜର ଜୀବିକା ନିର୍ବାହ ନିମନ୍ତେ କେହି ଓକିଲାତି ତ କେହି ସରକାରୀ ଚାକିରୀ କରୁଥିଲେ । ବଲାଇ ଚାନ୍ଦ କିନ୍ତୁ ନାଟ୍ୟକଳା ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟକୁ ଗୁରୁତ୍ୱ ଦେଉ ନଥିଲେ । ବାସନ୍ତୀ ରଙ୍ଗମଞ୍ଚରେ 'ରାଧାକୃଷ୍ଣ ଥିଏଟର' ପକ୍ଷରୁ ପ୍ରଥମ ବ୍ୟବସାୟୀକ ନାଟକ ପରିବେଷଣ ତାଙ୍କୁ ପ୍ରଭାବିତ କଲା । ତାଙ୍କର କଲେଜ ଜୀବନର ସହପାଠୀ ଅଶ୍ୱିନୀ କୁମାର ଘୋଷଙ୍କ ଲିଖିତ ନାଟକ ଗୁଡ଼ିକ କଲିକତାରେ ସେ ଦେଖିଥିବା ନାଟକ ଗୁଡ଼ିକ ତୁଳନାରେ ନ୍ୟୁନ ନଥିଲା । କେତେକ ବଙ୍ଗଭାଷୀ ଓଡ଼ିଆ ପରିବାରର ଶିକ୍ଷିତ ଯୁବକ ମଧ ନାଟକରେ ଅଂଶ ଗ୍ରହଣ କରୁଥିଲେ । ଅଶ୍ୱିନୀ କୁମାରଙ୍କ ଲିଖିତ 'କୋଣାର୍କ' ନାଟକର ପ୍ରସ୍ତୁତି ଚାଲିଥାଏ , ଅଶ୍ୱିନୀ ବାବୁଙ୍କ ଅନୁରୋଧରେ ବଲାଇ ଚାନ୍ଦ 'କୋଣାର୍କ' ନାଟକ ଶିକ୍ଷା ଦେଲେ, ସ୍ୱତ୍ୱାଧିକାରୀ ପଚିଙ୍କ ସମର୍ଥନ କ୍ରମେ ।

ବାସନ୍ତୀ ରଙ୍ଗମଞ୍ଚରେ ପ୍ରତି ସନ୍ଧ୍ୟାରେ ନାଟକ ଅଭିନୀତ ହୁଏ । ହଠାତ୍ ଜଣେ କଳାକାର ଅସୁସ୍ଥ ହୋଇ ପଡ଼ିଲେ । ଆଗରୁ ଟିକେଟ ବିକ୍ରୀ ସରିଛି । ନାଟକ ବନ୍ଦ କରି ଟିକଟ ଫେରସ୍ତ କରିହେବ ନାହିଁ । ରାମମାଣିଆ ମଞ୍ଚ ପରିଚାଳନା ଦାୟିତ୍ୱରେ ଥିଲେ । ସେ ବଲାଇ ବାବୁଙ୍କୁ ଅନୁରୋଧ କଲେ, ସେହି ଚରିତ୍ରର ଅଭିନୟ କରିବାକୁ । ଯୁବକ ବଲାଇ ଚାନ୍ଦ ସମସ୍ତଙ୍କର ଅନୁରୋଧ ଭାଙ୍ଗି ନପାରି ବାଧ ହୋଇ ମୁହଁରେ ରଙ୍ଗ ବୋଳିଲେ । ସେ ଦିନର ଦର୍ଶକମାନଙ୍କ ଭିତରେ ବଲାଇଚାନ୍ଦଙ୍କ ନିକଟତମ ସଂପର୍କୀୟ କେତେ ଜଣଥିଲେ । ପେଶାଦାର ରଙ୍ଗମଞ୍ଚରେ ବଲାଇ ଚାନ୍ଦଙ୍କର ଅଭିନୟ କରିବାଟାକୁ ସେମାନେ ପସନ୍ଦ କରିନଥିଲେ । ଏହି ଘଟଣାକୁ କେନ୍ଦ୍ର କରି ତାଙ୍କ ପରିବାରରେ ଅସନ୍ତୋଷ ସୃଷ୍ଟି ହେଲା । ଦୀର୍ଘଦିନର ଅଶାନ୍ତିର ପରିସମାପ୍ତି ଘଟାଇ ବଲାଇ ବାବୁ ଓକିଲାତି, ଘରଦ୍ୱାର, ବନ୍ଧୁ ପରିଜନ ସମସ୍ତଙ୍କ ସହ ସମ୍ପର୍କ ତୁଟାଇ 'ରାଧାକୃଷ୍ଣ

ଥିଏଟର୍'ରେ ନାଟ୍ୟ ନିର୍ଦ୍ଦେଶକ ଓ ମୁଖ୍ୟ ପରିଚାଳକ ଭାବରେ ଯୋଗଦେଲେ । ତା'ପରଠାରୁ ଅଶ୍ୱିନୀ ବାବୁଙ୍କର ରଚିତ 'କୋଣାର୍କ' 'ତାଜମହଲ', 'ପାଇକପୁଅ', 'ହିନ୍ଦୁରମଣୀ', 'ଭଂଜ ଭୁଜଙ୍ଗ' ଓ 'ସମଲେଶ୍ୱରୀ' ପ୍ରଭୃତି ନାଟକ ଗୁଡ଼ିକ ବଲାଇ ବାବୁଙ୍କ ନିର୍ଦ୍ଦେଶନାରେ ଅଭିନୀତ ହୋଇଥିଲା ।

ରାଧାକୃଷ୍ଣ ଥିଏଟର୍ ଆରମ୍ଭ ସମୟରେ ବଳଙ୍ଗାର ଆଖପାଖର ବହୁ କଳାକାର ଏଥିରେ ଯୋଗ ଦେଇଥିଲେ । କାଳକ୍ରମେ ଶିକ୍ଷିତ ଯୁବକଙ୍କୁ ନେଇ ନୂଆ ନୂଆ ଚିନ୍ତାଧାରା ପ୍ରସୂତ ନାଟକ ମାନ ପରିବେଷିତ ହେଲା । ଏଣୁ ପୁରାତନ ନାଟକ ଚାଲିଲା ନାହିଁ ଓ ସେମାନଙ୍କ ଗୁରୁତ୍ୱ କମିଗଲା । ପୁରାତନ ନାଟ୍ୟଗୁରୁ ଶ୍ରୀ ବୃନ୍ଦାବନ ବିହାରୀ ଦାଶଙ୍କ ଗୁରୁତ୍ୱ କମିଗଲା । ନାଟ୍ୟଗୁରୁ ଶ୍ରୀ ଦାଶ ଏକଥା ଅନୁଭବ କରି ଅବାଞ୍ଛିତ ଭାବରେ ସମୟ ଅତିବାହିତ କରିବାକୁ ଚାହିଁଲେ ନାହିଁ । ଏଣୁ ଅନୁଷ୍ଠାନରୁ ଅବ୍ୟାହିତ ନେଇଗଲେ । ଏହାର ପ୍ରଭାବ ମାଣିଆଙ୍କ ଉପରେ ମଧ ପଡ଼ିଲା । ସେ ଏହି ଘଟଣାରେ ବିଶେଷ ମର୍ମାହତ ହୋଇଥିଲେ ।





# ତୃତୀୟ ଅଧ୍ୟାୟ

## ଗୁରୁଭକ୍ତିର ପରାକାଷ୍ଠା

'ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱରଃ
ଗୁରୁ ସାକ୍ଷାତ୍ ପରମ୍ ବ୍ରହ୍ମ, ତସ୍ମୈ ଶ୍ରୀ ଗୁରୁବେ ନମଃ'

ଏହାର ମହତ୍ତ୍ୱ ଶ୍ରୀ ମାଣିଆ ଉପଲବ୍ଧି କରିପାରିଥିଲେ । ଫଳରେ ଗୁରୁ ବୃନ୍ଦାବନ ଦାଶଙ୍କ ପକ୍ଷ ସମର୍ଥନ କରି ତାଙ୍କ ସଙ୍ଗେ ଥିଏଟର୍ ପରିତ୍ୟାଗ କରିବା ପାଇଁ ସେ ଜିଦ୍ କରିବସିଲେ । ଏହି ଘଟଣାରେ ପତି ମହାଶୟ ଅଡୁଆରେ ପଡ଼ିଲେ । କାରଣ ଥିଏଟରର ବହୁ ବିଭାଗ ମାଣିଆ ଚଳାଉଥିଲେ । ପତି ମହାଶୟ ଥିଏଟର୍‌ର ଦୈନନ୍ଦିନ ଘଟଣା ବୁଝନ୍ତି ନାହିଁ । ଏହି ଅବସ୍ଥା ସମ୍ଭାଳିବା ପାଇଁ ପ୍ରତିଷ୍ଠାତା ପତି ଯୁବକ ମାଣିଆଙ୍କୁ ବୁଝାଇବାକୁ ଚେଷ୍ଟା କରିଥିଲେ । ମାଣିଆ କୌଣସି ଥିରେ ରାଜି ହେଲେ ନାହିଁ ଏବଂ କହିଲେ ମୋର ଗୁରୁଙ୍କର ମୁଁ ପଦାନୁସରଣ କରିବା ପାଇଁ ନିଷ୍ପତ୍ତି ନେଇସାରିଛି । ଆପଣ ଜଣେ ବ୍ୟବସାୟୀ, ଯାହାଦ୍ୱାରା କାମ ହାସଲ କରିପାରିବେ ତାକୁ ହିଁ ଗୁରୁତ୍ୱ ଦେବେ । ଗଲାଦିନର କଥାଗୁଡ଼ିକ ଆପଣଙ୍କ ପାଖରେ ମୂଲ୍ୟହୀନ । ଆପଣ ଆପଣଙ୍କର ବ୍ୟବସାୟ ଦୃଷ୍ଟିରୁ ଯାହା ଭଲ ଭାବିଛନ୍ତି ତାହା କରିଛନ୍ତି । ମୋର ଏଥିରେ କିଛି କହିବାର ନାହିଁ ।

ନାଟ୍ୟଗୁରୁ ବୃନ୍ଦାବନ ଦାଶ ଛାତ୍ରକୁ ବୁଝାଇଲେ, 'ଅନୁଷ୍ଠାନକୁ ଯେତେ ଯୋଗ୍ୟ ବ୍ୟକ୍ତି ଆସନ୍ତୁ ପଛେ, ତୋର ସ୍ଥାନ କେହି ପୂରଣ କରି ପାରିବେ ନାହିଁ । ତୁ ଯଦି ଭାବପ୍ରବଣ ହୋଇ ଅନୁଷ୍ଠାନ ପରିତ୍ୟାଗ କରୁ; ତେବେ ଅନୁଷ୍ଠାନ ଆଉ ରହିବ ନାହିଁ । ତୋ ପଛରେ ମୋର ଆଶୀର୍ବାଦ ସବୁବେଳେ ଥିବ । ମୋର ଶୁଭେଚ୍ଛାରେ ତୁ ଉନ୍ନତି କରିବୁ । ମାଲିକଙ୍କୁ ଅସମ୍ମାନ କରିବା ଅନୁଚିତ୍ ହେବ । ତୋର ନିଷ୍ପତ୍ତି ପରିବର୍ତ୍ତନ ପାଇଁ ମୁଁ ତୋତେ ଆଦେଶ ଦେଉଛି । ନାଟ୍ୟଗୁରୁ ଶ୍ରୀ ବୃନ୍ଦାବନ ରଣପୁର ରାଜ ଉଆସରେ ସ୍ଥାୟୀ ଭାବେ ନୃତ୍ୟ, ସଙ୍ଗୀତ, ନାଟ୍ୟଶିକ୍ଷକ ଭାବରେ ଯୋଗଦେଲେ । ମାଣିଆ ଗୁରୁଙ୍କ ଆଦେଶ ପାଳନ କରି 'ରାଧାକୃଷ୍ଣ ଥିଏଟର୍'ରେ ପୂର୍ବପରି ତାଙ୍କର ଦୈନନ୍ଦିନ କାର୍ଯ୍ୟ ସମାପନ କଲେ । ନାଟ୍ୟକାର ଅଶ୍ୱିନୀ କୁମାରଙ୍କର 'କୋଣାର୍କ' ନାଟକରେ ପ୍ରଥମେ ନରସିଂହ ଦେବ ଓ ପରେ ବିଶୁ ମହାରଣା ଚରିତ୍ରରେ ଅଭିନୟ କଲେ । ବଲାଇ ଚାନ୍ଦ, ଉଚ୍ଚ ଶିକ୍ଷିତ ହୋଇ ଓକିଲାତି ପାଶ୍ କରି କିଛି ଦିନ ଆଇନ୍ ବ୍ୟବସାୟ କରିଥିଲେ । ପୂର୍ବରୁ ଅନୁଷ୍ଠାନରେ ପାଠୁଆ

ଓ ଅପାଠୁଆଙ୍କ ମଧ୍ୟରେ ଅସ୍ପଷ୍ଟ ଭାବରେ ଯେଉଁ ବ୍ୟବଧାନ ପାଚେରୀ ଥିଲା, ବଳାଇ ଚାନ୍ଦ ସେ ସବୁର ଉର୍ଦ୍ଧ୍ୱରେ ଥିଲେ । ତେଣୁ ଶ୍ରୀ ମାଣିଆ ଅପାଠୁଆ ବା ଅଧାପାଠୁଆ ଥିଲେ ମଧ୍ୟ ବଲାଇଚାନ୍ଦ ତାଙ୍କୁ ବନ୍ଧୁ ଭାବରେ ଗ୍ରହଣ କରିଥିଲେ । ତାଙ୍କୁ 'ରାମବାବୁ' ନାମରେ ସମ୍ବୋଧନ କରୁଥିଲେ । ଶ୍ରୀ ମାଣିଆ ଓ ବଲାଇ ଚାନ୍ଦଙ୍କର ସହଯୋଗରେ ରାଧାକୃଷ୍ଣ ଥିଏଟର୍ ସାରା ରାଜ୍ୟ ଭ୍ରମଣ କରି ଓଡ଼ିଆ ନାଟକମାନ ରଙ୍ଗମଞ୍ଚରେ ଅଭିନୟ କରି ଓଡ଼ିଆ ଜାତୀୟତାର ପ୍ରଚାର ଓ ପ୍ରସାର କରିବାରେ ସଫଳ ହେଲେ । ବିଶେଷତଃ ଗଡ଼ଜାତ ରାଜନ୍ୟ ମଣ୍ଡଳୀ ଯଥା ମୟୂରଭଞ୍ଜ, ନୀଳଗିରି, କେଉଁଝର, ବାମଣ୍ଡା, ତାଳଚେର, ସୁନ୍ଦରଗଡ଼, ଖରିଆର, କଳାହାଣ୍ଡି, ଜୟପୁର, ପାରଳାଖେମୁଣ୍ଡି ପ୍ରଭୃତି ରାଜାଙ୍କର ଆମନ୍ତ୍ରଣରେ ନାଟକ ମଞ୍ଚସ୍ଥ କରିପାରି ଯଥାର୍ଥ ଭାବରେ ଓଡ଼ିଆ ନାଟକର ପ୍ରସାର କରିପାରିଥିଲେ ।

## ରଣପୁର ଉଆସ ସଙ୍ଗୀତ ଆସର

ନାଟ୍ୟଗୁରୁ ଶ୍ରୀ ବୃନ୍ଦାବନ ବିହାରୀ ଦାଶ ରଣପୁର ରାଜବାଟୀରେ ରହିବା ପରେ ମାଣିଆ ସମୟେ ସମୟେ ଛୁଟି ନେଇ ଗୁରୁଙ୍କ ଠାରୁ ବାଦ୍ୟଯନ୍ତ୍ର ଓ ଶାସ୍ତ୍ରୀୟ ସଙ୍ଗୀତରେ ଅଧିକ ଜ୍ଞାନ ଆହରଣ କଲେ । ସେତେବେଳେ ରେଡ଼ିଓ ଅଥବା ଗ୍ରାମୋଫୋନ୍ ପ୍ରାୟ ନଥାଏ । ରାଜା ବା ଜମିଦାର ମାନେ ଚିତ୍ତ ବିନୋଦନ ପାଇଁ ବାହାରୁ ବଡ଼ ବଡ଼ ସଙ୍ଗୀତଜ୍ଞମାନଙ୍କୁ ଡକାଇ ସଙ୍ଗୀତ ଆସରର ଆୟୋଜନ କରାଉଥିଲେ । ଏହାଦ୍ୱାରା ସ୍ଥାନୀୟ ସଙ୍ଗୀତଜ୍ଞ ମାନେ ଅଧିକ ଶିକ୍ଷା ଲାଭ କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କର ଚିତ୍ତ ବିନୋଦନର ବ୍ୟବସ୍ଥା ମଧ୍ୟ କରାଯାଉଥିଲା ।

ରଣପୁରଠାରେ ସଙ୍ଗୀତ ଆସରରେ ଗାୟକ ଥିଲେ ଜଣେ ହିନ୍ଦୁସ୍ଥାନୀ ସଙ୍ଗୀତଜ୍ଞ । ଶ୍ରୀ ମାଣିଆ ତାଙ୍କ ସାଙ୍ଗରେ ତବଲା ସଙ୍ଗତ କରିବାର ସୁଯୋଗ ପାଇଥିଲେ । ତାହରେ ସାମାନ୍ୟ ତ୍ରୁଟି ଯୋଗୁଁ ସେ ନିଜଗୁରୁ ଶ୍ରୀ ଦାଶଙ୍କ ଠାରୁ ଆସର ଚାଲୁଥିବା ବେଳେ ମାଡ଼ ଖାଇଥିଲେ । କିନ୍ତୁ ଶ୍ରୀ ମାଣିଆ ସେଥିରେ କ୍ଷୁବ୍ଧ ନହୋଇ ବା ଅପମାନିତ ବୋଧ ନକରି ଏହାକୁ ଗୁରୁଙ୍କର ଶ୍ରେଷ୍ଠ ଆଶୀର୍ବାଦ ଭାବେ ଗ୍ରହଣ କରିଥିଲେ । ସେତେବେଳକୁ ବୟସ ୨୮/୨୯ ବର୍ଷ । କିନ୍ତୁ ଗର୍ବ ବା ଅହଙ୍କାର ତାଙ୍କୁ ଯେ ସ୍ପର୍ଶ କରିନଥିଲା, ତାହା ଏଥିରୁ ସ୍ପଷ୍ଟ ପ୍ରମାଣିତ ।

ରାଧାକୃଷ୍ଣ ଥିଏଟର୍‌ରୁ ଆଣିଥିବା ଛୁଟି ସମୟ ପୂରିବା ପରେ ଶ୍ରୀ ମାଣିଆ ଗୁରୁଙ୍କ ଠାରୁ ବିଦାୟ ନେଇ ପୁନରାୟ କର୍ମକ୍ଷେତ୍ରକୁ ଫେରିଯାଉଥିଲେ ।

## ୧୯୨୮ : ପ୍ରତିଷ୍ଠାତା ପତିଙ୍କ ବିୟୋଗ ଏବଂ ରାଧାକୃଷ୍ଣ ଥିଏଟର ବନ୍ଦ

ଥିଏଟର୍ ଗ୍ରାମାଞ୍ଚଳ ଭ୍ରମଣରେ ଯାଇ ଯାଜପୁର ଠାରେ ଥିବା ସମୟରେ ପ୍ରତିଷ୍ଠାତା ବନମାଳୀ ପତିଙ୍କୁ ନିଜ ଗାଁର କେତେକ ଆତତାୟୀ ହତ୍ୟା କରିଥିଲେ । ତାଙ୍କର ମୃତ୍ୟୁ ସମ୍ବାଦ ଯାଜପୁର କ୍ୟାମ୍ପରେ ମିଳିବା ପରେ ଥିଏଟର୍ ବନ୍ଦ ହୋଇଗଲା । ପରେ ପରେ ୰ପତିଙ୍କର ଜାମାତାମାନେ ଥିଏଟରକୁ ବନ୍ଦ କରି, ଆସବାବ ପତ୍ର ସବୁ କଟକ ନେଇ ଆସିଥିଲେ । ତାଙ୍କର ଦୁଇ ଜାମାତା, ପୁରୀର ତତ୍କାଳୀନ ଓକିଲ ଶ୍ରୀ ଆର୍ତ୍ତ ତ୍ରାଣ ମିଶ୍ର ଏବଂ କଟକର ନାମଜାଦା ଓକିଲ ଶ୍ରୀ ବାଞ୍ଛାନିଧି ମହାପାତ୍ର । ଥିଏଟର୍ ଚଳାଇବା ଏକ ବ୍ୟୟବହୁଳ କାର୍ଯ୍ୟ । ପତିଙ୍କ ଅକାଳ ବିୟୋଗ ଫଳରେ ଥିଏଟର୍ ପୁରାପୁରି ବନ୍ଦ ହୋଇଗଲା । କଳାକାରମାନେ ନିଜ ନିଜ ଘରକୁ ଚାଲିଗଲେ । କେବଳ ରହିଗଲେ ରାମ ମାଣିଆ, ବଳାଇ ଚାନ୍ଦ ଏବଂ ଅଶ୍ୱିନୀ କୁମାର । ଏମାନେ କିଛି ଦିନ ଇତସ୍ତତଃ ଭ୍ରମଣ କଲେ । ମାଣିଆ ସମସ୍ତଙ୍କଠାରୁ ଅଧିକ ଅସୁବିଧାରେ ପଡ଼ିଲେ । ସେ ଆଉ ଯିବେ କୁଆଡ଼େ ? ଶିକ୍ଷାଗତ ଯୋଗ୍ୟାତା ସେପରି କିଛି ନଥିଲା । ସରକାରୀ ଚାକିରୀ ପାଇଁ ଅଯୋଗ୍ୟ । ଦୀର୍ଘଦିନ ସହରରେ ରହିଲେ ଚଳିବେ କିପରି ? ଗାଁକୁ ଯାଇ କରିବେ କ'ଣ ? ଜୀବିକା ନିର୍ବାହ ପାଇଁ କୌଳିକ ପେଶାରେ ନିଯୁକ୍ତ ହେବା ତାଙ୍କ ପକ୍ଷେ ସମ୍ଭବ ନଥିଲା । ପେଶାଦାର କଳାକାରର ଜୀବିକା ଅର୍ଜନ କିଭଳି କଷ୍ଟସାଧ, ତାହା ଏଥିରୁ ଅନୁମାନ କରାଯାଇପାରିବ । ଏହି ସମୟରେ ତାଙ୍କୁ କେହି କେହି କଟୁ ସମାଲୋଚନା କରିବାକୁ ମଧ ଛାଡ଼ି ନାହାନ୍ତି ।

## ମିଳିତ ପ୍ରଚେଷ୍ଟା



ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିଲା । ସେ ଏକ ସମ୍ଭ୍ରାନ୍ତ ପରିବାରର ଜ୍ୟେଷ୍ଠ ପୁତ୍ର । ତାଙ୍କର ପିତା ଶ୍ରୀ ଅକ୍ଷୟ କୁମାର ଘୋଷ ଜଣେ ପ୍ରଖ୍ୟାତ ଓକିଲ ତଥା ଜମିଦାର ଥିଲେ । କାଠଯୋଡ଼ି ନଦୀ ସେପାରିରେ ତାଙ୍କର ଚାଷଜମି ଥିଲା । ସେପାରି ଜମିରୁ ଧାନ ଯେତେବେଳେ ଆସୁଥିଲା ତାହା ଏକ ଦର୍ଶନୀୟ ଓ ଲୋଭନୀୟ ଦୃଶ୍ୟ । ବାଖରା ବାଦ୍‌ରେ ରାଜାଙ୍କ ଉଆସ ଭଳି ଏକ କୋଠାଘର । ଅଶ୍ୱିନୀ ବାବୁଙ୍କ ତଳେ ଆଉ ଚାରି ଭାଇ ଶରତ୍ କୁମାର, ଅଜୟ କୁମାର, କାର୍ତ୍ତିକ କୁମାର ଓ ସତିଶ୍ କୁମାର । ପିତାଙ୍କ ମୃତ୍ୟୁ ପରେ ଅନ୍ୟ ଭାଇମାନେ ବଡ଼ଭାଇଙ୍କୁ ଦେବତୁଲ୍ୟ ଭକ୍ତି କରନ୍ତି । ପ୍ରାୟ ସବୁ ଭାଇମାନେ ନାଟକ ପ୍ରେମୀ । ବଳାଇଚାନ୍ଦ ଓ

ରାମ ମାଣିଆଙ୍କ ସହ ଆଲୋଚନା ପରେ ନାଟ୍ୟକାର ଶ୍ରୀ ଘୋଷ ପୁନରାୟ ଥିଏଟର୍ ଚାଲୁ କରିବା ପାଇଁ ନିଷ୍ପତ୍ତି ନେଲେ ।

## 'ବନମାଳୀ ଆର୍ଟ ଥିଏଟର୍' ଆବିର୍ଭାବ

ଅଶ୍ୱିନୀ ବାବୁଙ୍କର ଏ ପ୍ରସ୍ତାବକୁ ତାଙ୍କର ଅନ୍ୟ ଭାଇମାନେ ସମର୍ଥନ କଲେ । ରାଧାକୃଷ୍ଣ ଥିଏଟରର ବେଶ, ପୋଷାକ, ସିନ୍ ଓ ସାଜ ସରଞ୍ଜାମ ଗୁଡ଼ିକ ୯ ପତିଙ୍କ ଜାମାତାମାନଙ୍କଠାରୁ କିଛି ଟଙ୍କା ନଗଦ ଆକାରରେ ଦେଇ ଏବଂ କିଛି ଟଙ୍କା ହ୍ୟାଣ୍ଡ ନୋଟ ଲେଖିଦେଇ ଅଣାଗଲା । ୯ ପତିଙ୍କ ସ୍ମୃତିକୁ ସମ୍ମାନ ଦେବା ଉଦ୍ଦେଶ୍ୟରେ ଥିଏଟରର ନାମ କରଣ କରାଗଲା 'ବନମାଳୀ ଆର୍ଟ ଥିଏଟର' ।

ଏହାପରେ ମାଷ୍ଟର ମାଣିଆଙ୍କ କାମ ବଢ଼ିଗଲା । ରାଧାକୃଷ୍ଣ ଥିଏଟରର କଳାକାରମାନଙ୍କୁ ପୁନରାୟ ଡ଼କାଗଲା । କେତେକ ଆସିଲେ, ଆଉ କେତେକ ନୂତନ ଭାବରେ ଯୋଗଦେଲେ । ପୁନରାୟ ବାସନ୍ତୀ ରଙ୍ଗମଞ୍ଚର କର୍ମ ତତ୍ପର ହୋଇ ଉଠିଲା ନୂଆ ଉତ୍ସାହ ନେଇ 'ବନମାଳୀ ଆର୍ଟ ଥିଏଟର୍'ରେ ନାଟକମାନ ଅଭିନୀତ ହେଲା । ସର୍ବଶ୍ରୀ କାର୍ତ୍ତିକ କୁମାର ଘୋଷ, ନବ କିଶୋର ମହାନ୍ତି, ଚତୁର୍ଭୁଜ ମହାନ୍ତି, ପୀତବାସ ଲେଙ୍କା, ମାୟାଧର ପଣ୍ଡା, ଭାଗବତ ପ୍ରଧାନ, ହାଡ଼ିବନ୍ଧୁ ମହାନ୍ତି ପ୍ରମୁଖ କଳାକାର ମାନେ ଏଥିରେ ଭାଗ ନେଉଥିଲେ । ଯେଉଁମାନେ ଥିଏଟର୍ ଛାଡ଼ି ଚାଲିଗଲେ ସେମାନେ ହେଲେ ଜ୍ୟୋତୀନ୍ଦ୍ର ନାଥ ମୁର୍ଖାର୍ଜୀ, ଫଣିନ୍ଦ୍ର ନାଥ ମୁର୍ଖାର୍ଜୀ, ମହେଶ ଚନ୍ଦ୍ର ରାୟ ପ୍ରମୁଖ । ଏମାନଙ୍କ ଭିତରୁ କେହି କେହି ସରକାରୀ ଚାକିରୀ ବା କେହି କେହି ସ୍କୁଲରେ ଶିକ୍ଷକତା କରୁଥିଲେ । ଏମାନେ ଥିଏଟର୍‌କୁ ମୁଖ୍ୟ ଜୀବିକା ରୂପେ ଗ୍ରହଣ କରିପାରିନଥିଲେ ।

ଥିଏଟର୍ ଚାକିରୀର ନିରାପତ୍ତା ବା ନିଯୁକ୍ତି ପତ୍ର ନଥିଲା । ମାସ ଶେଷରେ ଦରମା ଦେବାର ବ୍ୟବସ୍ଥା ମାଲିକମାନେ କରିପାରୁନଥିଲେ । ରାଧାକୃଷ୍ଣ ଥିଏଟର୍ ପରେ 'ବନମାଳୀ ଆର୍ଟ ଥିଏଟର୍' ଦ୍ୱିତୀୟ ପେଶାଦାର ଥିଏଟର୍ । ସମସ୍ତେ ଯେ ତାଙ୍କ ର ବେତନ ପାଉ ନଥିଲେ, ତାହା ନୁହେଁ, କେତେକ 'ଜୋର ଯା'ର ମୁଲକ ତା'ର' ନୀତି ଅବଲମ୍ବନ କରି ତାଙ୍କର ପ୍ରାପ୍ୟ ପାଇ ପାରୁ ଥିଲେ । ଆଉ ଯେଉଁମାନେ ଥିଏଟର୍ ଅଭାବ ଅସୁବିଧାକୁ ନିଜର ବୋଲି ଭାବିଲେ, ସେମାନେ ସେଥିରୁ ବଞ୍ଚିତ ହେଲେ । ମାଷ୍ଟର ମାଣିଆ କହୁଥିଲେ ଯେ ଉଭୟ ଥିଏଟର୍‌ର କାର୍ଯ୍ୟକାଳ ମଧ୍ୟରେ କେବେ ହେଲେ ସେ ମାସକର ଦରମା ଏକାଥରକେ ପାଇନାହାନ୍ତି । ତାଙ୍କର ବିବାହ ସମୟରେ ୯ ପତି ତାଙ୍କୁ କିଛି ଟଙ୍କା ସାହାଯ୍ୟ ଆକାରରେ ଦେଇଥିଲେ ।

ବନମାଳୀ ଆର୍ଟ ଥିଏଟର୍‌ର ମାଲିକ ଅଶ୍ୱିନୀ ବାବୁ ଓ ମ୍ୟାନେଜର ବଲାଇବାବୁ

ନୂଆ ଅନୁଷ୍ଠାନରେ ମାଣିଆଙ୍କର ଦାୟିତ୍ୱ ଟିକିଏ ହାଲ୍‌କା ହୋଇଗଲା । ପରିଚାଳନା ବ୍ୟବସ୍ଥା ବଦଳରେ ନାଟକରେ ଅଭିନୟ କରିବା ଥିଲା ତାଙ୍କର ମୁଖ୍ୟ କାମ । ସମୟେ ସମୟେ ସଙ୍ଗୀତ ବିଭାଗ ପାଇଁ ଗୌରାଙ୍ଗ ଚନ୍ଦ୍ର ଦାସ ଭଦ୍ରକରୁ ଓ ରାଧା ରମଣ ରାୟ ରମରୁ ଆସନ୍ତି । ଅଶ୍ୱିନୀ ବାବୁଙ୍କ ଭାଇ ତଥା ପରବର୍ତ୍ତୀ କାଳରେ ପ୍ରଖ୍ୟାତ ନାଟ୍ୟକାର ଶ୍ରୀ କାର୍ତ୍ତିକ କୁମାର କଲେଜ ପାଠ ଛାଡ଼ି ଆର୍ଟ ଥିଏଟର୍‌ରେ ଯୋଗ ଦେଲେ । ତା'ପରେ ଅଶ୍ୱିନୀ ବାବୁଙ୍କର ଆଉ କେତେ ଖଣ୍ଡ ନାଟକ 'ତାଜମହଲ', 'ପାଇକପୁଅ', 'ହିନ୍ଦୁରମଣୀ', 'ମାଷ୍ଟର ବାବୁ', 'ପେଟେଣ୍ଟ୍ ମେଡ଼ିସିନ୍', 'ଇରାନୀ', 'ଓଡ଼ିଆ ଝିଅ' ନାଟକ ଗୁଡ଼ିକରେ ମାଷ୍ଟର ମାଣିଆ ମୁଖ୍ୟ ଚରିତ୍ରରେ ଅଭିନୟ କଲେ ।

କାର୍ତ୍ତିକ କୁମାର ଘୋଷଙ୍କ ଦ୍ୱାରା ରଚିତ ନାଟକ 'ମାତୃପୂଜା', 'ମୀର୍ କାଶୀମ୍' ମଧ୍ୟ ବନମାଳୀ ଆର୍ଟ ଥିଏଟର୍ ଦ୍ୱାରା ଅଭିନୀତ ହେଲା ।

ଅଶ୍ୱିନୀ କୁମାର ତାଙ୍କର ଶିକ୍ଷକତା ଯୋଗୁଁ ଥିଏଟର୍ ଭ୍ରାମ୍ୟମାଣ ଅବସ୍ଥାରେ ଥିଲାବେଳେ ବିଶେଷ ସଂପର୍କ ରଖି ପାରନ୍ତି ନାହିଁ । ପରିଚାଳକ ବଲାଇ ଚାନ୍ଦଙ୍କର ଦୃଷ୍ଟିଭଙ୍ଗୀ ଅଲଗା । ବ୍ୟବସାୟିକ ଚିନ୍ତାଧାରା ତାଙ୍କର ନଥାଏ । ସେ ଅତ୍ୟନ୍ତ ସ୍ୱାଭିମାନୀ ଓ ଜିଦ୍‌ଖୋର ଲୋକ । ସମ୍ମାନ ପ୍ରତି ସେ ଗୁରୁତ୍ୱ ଦିଅନ୍ତି । ଏହା ଫଳରେ ଅନେକ ସମୟରେ ଅର୍ଥସଂଙ୍କଟ ଦେଖାଯାଏ । ଦଳର ଜଣେ ସାଧାରଣ କର୍ମଚାରୀକୁ ଜଣେ ରେଳ କର୍ମଚାରୀ ଅପମାନିତ କରିଥିବାରୁ ବେଙ୍ଗଲ୍-ନାଗପୁର୍ ରେଇଓ୍ୱେ କମ୍ପାନୀ ନାମରେ ମାନହାନୀ ମକଦ୍ଦମା କରି ସେ କ୍ଷତିପୂରଣ ଆଦାୟ କରିଥିଲେ । ଫଳରେ ଅଯଥାରେ ଗୋଟିଏ ସ୍ଥାନରେ ପଡ଼ିରହି ଭୟଙ୍କର ଆର୍ଥିକ ଦୁର୍ଗତିର ସମ୍ମୁଖୀନ ହେବାକୁ ପଡ଼େ । ଏହିପରି ବିଭିନ୍ନ କାରଣରୁ ଥିଏଟର୍ ତା'ର ପୂର୍ବ ଲୋକପ୍ରିୟତା ହରାଇଲା । ବ୍ୟବସାୟିକ ଦୃଷ୍ଟିକୋଣରୁ ଏହା ବୋଧ ହୁଏ ଠିକ୍ ନଥିଲା ।

'ବିଭିନ୍ନ ସ୍ଥାନରେ ନାଟକ ପରିବେଷଣ ବେଳେ ଜନସାଧାରଣଙ୍କ ସହିତ ସୁସଂପର୍କ ରଖିବା ଉଚିତ୍' ବୋଲି ଥିଏଟର୍‌ର ମୁଖ୍ୟ ମତଦେବାରୁ ଶ୍ରୀ ବାନାର୍ଜୀ ଆର୍ଟ ଥିଏଟର୍' ପରିତ୍ୟାଗ କଲେ । ତାଙ୍କ ପରି ଜଣେ ପ୍ରତିଭା ସଂପନ୍ନ ଅଭିନେତାଙ୍କ

ଅନୁପସ୍ଥିତି ଯୋଗୁଁ ଦୈନିକ ଆୟ କମିବାକୁ ଲାଗିଲା । ସେତେବେଳକୁ ଦେଶର ସବୁ ଅଞ୍ଚଳର ଲୋକମାନଙ୍କ ମଧ୍ୟରେ ଓଡ଼ିଆ ନାଟକ ଓ ଏକମୁଖୀ ମଞ୍ଚ ସଂପର୍କରେ ଚେତନା ସୃଷ୍ଟି ହେଲାଣି । ଭଲ ମନ୍ଦ ସଂପର୍କରେ ମତାମତ ପ୍ରକାଶ ପାଇଲାଣି । ନାରୀ ଭୂମିକାରେ ପୁରୁଷମାନଙ୍କର ଅଭିନୟ ଦେଖିବା ପାଇଁ ଆଉ ଦର୍ଶକମାନେ



ଆଗ୍ରହ ପ୍ରକାଶ କଲେ ନାହିଁ । ଇତି ମଧ୍ୟରେ କଲିକତାର ବିଭିନ୍ନ ବଙ୍ଗଳା ଥିଏଟର୍‌ର ନାରୀ ଶିଳ୍ପୀମାନେ ଓଡ଼ିଶାର ପ୍ରଧାନ ସାଂସ୍କୃତିକ ପୀଠ କଟକ ସହର, ମୟୂରଭଞ୍ଜ, ବାଲେଶ୍ୱରର ଭ୍ରାମ୍ୟମାଣ ଥିଏଟର୍ ଦଳଗୁଡ଼ିକରେ ଅଭିନୟ ଆରମ୍ଭ କରିବାରୁ ଆମ ଶିକ୍ଷିତ ଦର୍ଶକମାନଙ୍କ ଉପରେ ଏହାର ପ୍ରଭାବ ପଡ଼ିଲା । ଅନ୍ୟ ଦିଗରେ ସାଧାରଣ ଦର୍ଶକମାନଙ୍କୁ ୰ଗୋବିନ୍ଦ ଚନ୍ଦ୍ର ଶୂରଦେଓ, ମୋହନ ସୁନ୍ଦର ଦେବ ଗୋସ୍ୱାମୀ, କବିଚନ୍ଦ୍ର କାଳୀ ଚରଣ ପଟ୍ଟନାୟକ ପ୍ରମୁଖଙ୍କର ରାସଦଳ ଆକର୍ଷଣ କରୁଥିଲା ।

ଏହି ପରିସ୍ଥିତି ଭିତରେ 'ବନମାଳୀ ଆର୍ଟ ଥିଏଟର୍‌' ଆସ୍ତେ ଆସ୍ତେ ଆର୍ଥିକ ଅନଟନର ସମ୍ମୁଖୀନ ହୋଇ ୧୯୩୫ ମସିହାରେ ସଂପୂର୍ଣ୍ଣ ରୂପେ ବନ୍ଦ ହୋଇଗଲା ।

# ଚତୁର୍ଥ ଅଧ୍ୟାୟ

## ସୌଖୀନ ରଙ୍ଗମଞ୍ଚରେ ନିର୍ଦ୍ଦେଶନା

ବନମାଳୀ ଆର୍ଟ ଥିଏଟରର ବନ୍ଦ ହୋଇଯିବା ପରେ ରାମ ମାଣିଆ ଅସୁବିଧାରେ ପଡ଼ି ଲକ୍ଷ୍ୟହୀନ ଭାବେ ଏଣେତେଣେ କିଛି ଦିନ ବୁଲିଲେ । ୧୯୧୨ ମସିହାରୁ ୧୯୩୪ ଦୀର୍ଘ ୨୨ ବର୍ଷ ଧରି ସେ ନିଜ ଗାଁ ଘରଦ୍ୱାର ଛାଡ଼ି ରଙ୍ଗମଞ୍ଚ ସହିତ ମିଶିଯାଇଛନ୍ତି । ଏହା ଭିତରେ ତାଙ୍କର ପିତା ମାତାଙ୍କର ପରଲୋକ ହୋଇଯାଇଛି । ନିଜର ୨ଟି କନ୍ୟା, ଓ ବଡ଼ଭାଇଙ୍କ ପୁଅକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ସେମାନଙ୍କୁ ହାତକୁ ଦୁଇହାତ କରିସାରିଛନ୍ତି । ଏହି ଦୀର୍ଘ କର୍ମମୟ ଜୀବନରେ ନିଜ ଜନ୍ମସ୍ଥାନକୁ କୁଣିଆ ଘର ରୂପେ ମନେ କରିଛନ୍ତି । ନିଜର ସ୍ତ୍ରୀଙ୍କ ପ୍ରତି ମଧ ସେ ଯଥାର୍ଥ ଧ୍ୟାନ ଦେଇ ନାହାନ୍ତି । ଥିଏଟର୍‌ର ରୋଜଗାରରୁ ସଞ୍ଚୟ କରି ସେ ଭୂସମ୍ପତ୍ତି କରିବା ମଧ ସମ୍ଭବ ହୋଇନାହିଁ । ପୈତୃକ ସମ୍ପତ୍ତିରୁ ତାଙ୍କ ଭାଗକୁ କନିଷ୍ଠ ଭାବେ ସେ ଯାହା ପାଇଛନ୍ତି ସେ ବିଶେଷ କିଛି ନୁହେଁ । ଭାଗ୍ୟର ବିଡ଼ମ୍ବନାଯେ ଥିଏଟର୍ ବନ୍ଦ ହେବା ପରେ ସେ ସହରଠାରୁ ବିଚ୍ଛିନ୍ନ ହୋଇ ଗାଁରେ ଚଳିବାକୁ ବାଧ ହେଲେ । ତାଙ୍କ ଜୀବନରେ ଏହା ଥିଲା ବିଶେଷ ଯନ୍ତ୍ରଣାଦାୟକ । ପିଲାଦିନର ସାଙ୍ଗସାଥୀମାନେ ଯଦି ଭଲରେ କେବେ ପଚାରନ୍ତି 'କ'ଣ ରାମବାବୁ ! ଥିଏଟର୍ ଭାଙ୍ଗିଗଲା' ତେବେ ସେ ଏହାକୁ ବିଦ୍ରୁପ ପରି ମନେ କରୁଥିଲେ । ସାଙ୍ଗମାନଙ୍କ କଥା ଭାଷା, ଆଚାର, ବ୍ୟବହାର ତାଙ୍କୁ ଭଲ ଲାଗିଲା ନାହିଁ । ଗୋଟିଏ ଦିନ ତାଙ୍କୁ ଗୋଟିଏ ଯୁଗ ପରି ମନେହେଲା । କ'ଣ ବା ଧନ୍ଦା କରିବେ ? ଗାଈ, ମଇଁଷି ଓ ଚାଷ ଜମି କାମରେ ତାଙ୍କର ଅଭ୍ୟାସ ନଥିଲା । ରଙ୍ଗମଞ୍ଚର ସିନ୍, ସିନେରୀ, ବାଦ୍ୟଯନ୍ତ୍ରମାନ ତାଙ୍କ ଆଖିରେ ନାଚି ମନକୁ ବିଷର୍ଣ୍ଣ କଲା ।

ଜଟଣୀ ବଜାର ଉପରେ ତାଙ୍କ ଭାଇ ଗୋଟିଏ ଦୋକାନ କରିଥିଲେ । ସେଠି ଦହି, ଦୁଧ, ଘିଅ ବିକ୍ରି କରାଯାଏ । ସମୟେ ସମୟେ ସେ ସେହି ଦୋକାନକୁ ଆସନ୍ତି ।

ଦଶହରା ଓ ରଜ ଭଳି ପର୍ବ ପର୍ବାଣୀ ମାନଙ୍କରେ ବିଭିନ୍ନ ସ୍ଥାନରେ ନାଟକୋତ୍ସବ ଅନୁଷ୍ଠିତ ହୁଏ । ସେହି ସବୁ ନାଟକରେ ନିର୍ଦ୍ଦେଶନା ଦେବାର ସୁଯୋଗ ପାଇଲେ । ରଙ୍ଗମଞ୍ଚ ଓ ନାଟ୍ୟ ଚେତନା ସମସ୍ତଙ୍କୁ ଅଳ୍ପେ ବହୁତ ପ୍ରଭାବିତ କରୁଥିଲା ସତ, ମାତ୍ର ନାଟ୍ୟ ଶିକ୍ଷକଙ୍କର ଅଭାବ ଥିଲା । ରାମ ମାଣିଆ ଏହି ଅଭାବ ପୂରଣ କଲେ । ସେ ଏକାଧାରରେ ନୃତ୍ୟ, ସଙ୍ଗୀତ ଓ ନାଟ୍ୟ ଶିକ୍ଷକ ଥିଲେ । ନିଜ ହାତରେ ସିନ୍ ବାନ୍ଧି ପାରୁଥିଲେ । ତେଣୁ ତାଙ୍କର ଅତୀତର ଅନୁଭୂତିକୁ ସମ୍ବଳ କରି ସେ ପୁଣି ନୂଆ ରୂପରେ ନାଟକ ଜଗତରେ ଅବତୀର୍ଣ୍ଣ ହେଲେ । ଗୋଟିଏ ମାସ ପାଇଁ ତାଙ୍କର ବ୍ୟକ୍ତିଗତ ଖର୍ଚ୍ଚ ବ୍ୟତୀତ ଦୁଇଶହ ଟଙ୍କା ପାରିଶ୍ରମିକ

ମିଳୁଥିଲା । ସେ ସମୟରେ ସୌଖୀନ୍ ନାଟ୍ୟ ନିର୍ଦ୍ଦେଶକ ଭାବେ ପୁରୀରେ ଡାଃ ଅଦ୍ୱୈତ ଚରଣ ମହାନ୍ତି, ରାଧାରମଣ ରାୟ, ବଳାଇ ଚାନ୍ଦ ବାନାର୍ଜ୍ଜୀ ଓ ଖୋରଧାର ବ୍ରଜ କିଶୋରୁ ନାୟକ, ଜୟକୃଷ୍ଣ ପରିଡ଼ା ପ୍ରମୁଖ ମଧ ନିର୍ଦ୍ଦେଶନା ଦେଉଥାନ୍ତି ।

## ଜଟଣୀରେ ଉତ୍ତରାୟଣୀ କ୍ଲବ ପ୍ରତିଷ୍ଠା

ଆଗରୁ କୁହାଯାଇଛି ଓଡ଼ିଶାର ସବୁ ଅଞ୍ଚଳରେ ପର୍ବ ପର୍ବାଣୀ ଯଥା ଦୋଳ, ଦଶହରା, ରଜ ସମୟରେ ନାଟକ ପ୍ରଦର୍ଶନ ହୁଏ । ସେତେବେଳକୁ ଓଡ଼ିଶାର ପେଶାଦାର ନାଟ୍ୟସଂସ୍ଥା 'ଆର୍ଟ ଥିଏଟର୍', ଗୋବିନ୍ଦ ଚନ୍ଦ୍ର ଶୂରଦେଓ, ମୋହନସୁନ୍ଦର ଦେବ ଗୋସ୍ୱାମୀ ଓ କାଳୀ ଚରଣ ପଟ୍ଟନାୟକଙ୍କ ରାସଦଳ ଗୁଡ଼ିକ ବନ୍ଦ ହୋଇଯାଇଥାଏ । ମାତ୍ର ସୌଖୀନ୍ ଭାବରେ ବିଭିନ୍ନ ସ୍ଥାନରେ ସ୍ଥାନୀୟ ବାସିନ୍ଦାଙ୍କ ଉଦ୍ୟମରେ ନାଟକ ଅଭିନୀତ ହେଉଥାଏ ।

ଏହି ସମୟରେ ଜଟଣୀ ରାମଚନ୍ଦ୍ରପୁର (ନୂଆ ଗାଁ)ରେ ଶ୍ରୀ ଶ୍ରୀ ଉତ୍ତରାୟଣୀ (ଡ଼ମୁଣାଇ) ଠାକୁରାଣୀଙ୍କ ନାମାନୁସାରେ ଗୋଟିଏ କ୍ଲବ୍ ଗଢ଼ାଗଲା । ତା'ର ମୁଖ୍ୟ ଉଦ୍ୟୋକ୍ତା ଥିଲେ ଗୋବର୍ଦ୍ଧନ ଶତପଥୀ ଓ ଅନ୍ୟ କେତେକ ଆଗ୍ରହୀ ବ୍ୟକ୍ତି । ଖୋରଧା ଟାଉନ୍‌ରେ ବରୁଣେଇ କ୍ଲବ ଗଢ଼ାଯାଇ ୧୯୦୮ ମସିହାରୁ ପ୍ରତିବର୍ଷ ଗୋଟିଏ ଦୁଇଟି ନାଟକ ଅଭିନୀତ ହେଉଥିଲା । ସେଥିପାଇଁ ଗୋଟିଏ ପେଣ୍ଡାଲ ଗଢ଼ାଯାଇ ଥିଲା । ଖୋରଧାର ବାସିନ୍ଦା ଏବଂ ଅମଲାମାନଙ୍କ ମଧ୍ୟରେ ଏହାର କାର୍ଯ୍ୟକ୍ରମ ସୀମାବଦ୍ଧ ଥିଲା । ଜଟଣୀ ସହରଟି ମୁଖ୍ୟତଃ ରେଲୱେ ଯୋଗୁଁ ଗଢ଼ି ଉଠିଥିଲା । ରେଲୱେ କଲୋନୀରେ ସେତେବେଳେ ଗୋରା ଲୋକ ବେଶୀ ଥିଲେ । ରେଳ କର୍ମଚାରୀ ବେଶୀ ପରିମାଣରେ ଅଣଓଡ଼ିଆ, ତେଲୁଗୁ ଓ ବଙ୍ଗାଳୀ ଥିଲେ । କମ୍ପାନୀର ଅମଲାମାନଙ୍କ ଚିତ୍ତବିନୋଦନ ପାଇଁ ରେଲୱେ ଇନଷ୍ଟିଚ୍ୟୁଟ୍‌ରେ ଏକ ପ୍ରେକ୍ଷାଳୟ ସହ ସିନ୍ ସିନାରୀ ଥାଏ । କେବଳ ରେଳ କର୍ମଚାରୀମାନେ ସେଠାରେ ନାଟକ ପ୍ରଦର୍ଶନ କରୁଥିଲେ । ବାହାର ଲୋକଙ୍କୁ ସେଠି ନାଟକ ମଞ୍ଚସ୍ଥ କରିବାକୁ ଅନୁମତି ମିଳୁ ନଥିଲା । ଜଟଣୀରେ ବେଶୀ ସଂଖ୍ୟାରେ ବ୍ୟବସାୟୀ ଥିଲେ ମାରୱାଡ଼ି । ଓଡ଼ିଆ ନାଟକ ଦେଖିବା ପାଇଁ ସେମାନଙ୍କର ଆଗ୍ରହ ଥିଲେ ମଧ ସୁବିଧା ନଥିଲା । ମା 'ଉତ୍ତରାୟଣୀ କ୍ଲବ' ପ୍ରତିଷ୍ଠା ହେବା ପରେ ପ୍ରଥମେ କୁଦିଆରୀ ବଜାର ନିକଟରେ ଅସ୍ଥାୟୀ ପେଣ୍ଡାଲ ଗଢ଼ି ଶତପଥୀ ପରିବାର ତଥା କେତେକ ଓଡ଼ିଆ ରେଳ କର୍ମଚାରୀ ବଙ୍ଗଳାନୁବାଦ ନାଟକ ଶ୍ରୀରାମଚନ୍ଦ୍ର ମାଣିଆଙ୍କ ନିର୍ଦ୍ଦେଶନାରେ ମଞ୍ଚସ୍ଥ କରିଥିଲେ । ଦଶହରା ଉପଲକ୍ଷେ ୧୯୩୫ ମସିହାରେ, ଏହି ନାଟକ ଅନ୍ୟାନ୍ୟ

ଭାଷା ଭାଷୀ ନାଟକ ଅପେକ୍ଷା ଅଧିକ ଉଚ୍ଚ ପ୍ରଶଂସିତ ହୋଇଥିଲା । ପରବର୍ତ୍ତୀ ବର୍ଷମାନଙ୍କରେ ଉତ୍ତରାୟଣୀ ପୀଠରେ ପ୍ରତିବର୍ଷ ଦଶହରା ଉପଲକ୍ଷେ ତିନିଦିନ ଧରି ଓଡ଼ିଆ ନାଟକ ମଞ୍ଚସ୍ଥ ହେଉଥିଲା । ଶ୍ରୀ ମାଣିଆ ଉତ୍ତରାୟଣୀ କ୍ଲବର ନାଟ୍ୟ ଶିକ୍ଷକ ହେଲେ । ପୁନରାୟ ସୌଖୀନ ଥିଏଟର୍‌ର ଶିକ୍ଷକ ଭାବରେ ଭିଙ୍ଗାରପୁର, ଜଟଣୀ କୁଦିଆରୀ ଏବଂ ପୁରୀ ଜିଲ୍ଲାର ବଡ଼ ବଡ଼ ଗାଁ ମାନଙ୍କରେ ସମୟ ଅତିବାହିତ କରୁଥିଲେ ।

## ୧୯୩୬ରେ ଅନ୍ନପୂର୍ଣ୍ଣା ନାଟ୍ୟ ମଣ୍ଡଳୀରେ ଯୋଗଦାନ

ପୁରୀ ଜିଲ୍ଲା ଭଗବତୀଙ୍କ ପୀଠ ବାଣପୁରଠାରୁ ଅନ୍ନପୂର୍ଣ୍ଣା ନାଟ୍ୟମଣ୍ଡଳୀ ଗଢ଼ିଉଠିଥିଲା । ଦକ୍ଷିଣ ଓ ଉତ୍ତର ଓଡ଼ିଶାର ବିଭିନ୍ନ ସ୍ଥାନ ଭ୍ରମଣ ସାରି କଟକ ଜିଲ୍ଲା ଭଟିମୁଣ୍ଡାକୁ ବର୍ଷାଦିନିଆ ବିଶ୍ରାମ ସ୍ଥଳ ରୂପେ ଏହି ନାଟକଦଳ ବାଛି ନେଇଥାଏ । ନବ ପ୍ରତିଷ୍ଠିତ ନାଟ୍ୟସଂସ୍ଥାର ମ୍ୟାନେଜର ଥିଲେ ବାଉରି ବନ୍ଧୁ ମହାନ୍ତି । ମଞ୍ଚଜଗତକୁ ମାଷ୍ଟର ମାଣିଆଙ୍କ ଅବଦାନ ସମ୍ପର୍କରେ ସେ ବହୁ ମୁଖରେ ଉଚ୍ଚ ପ୍ରଶଂସା ଶୁଣି ଥିଲେ । ଏଣୁ ତାଙ୍କୁ ଏହି ଦଳର ସ୍ଥାୟୀ ନାଟ୍ୟ ଶିକ୍ଷକ ଭାବେ ରହିବା ପାଇଁ ଅନୁରୋଧ କଲେ । ମାଷ୍ଟର ମାଣିଆ ସେଥିରେ ସ୍ୱୀକୃତି ଦେଲେ, ମାତ୍ର ଗୋଟିଏ ସର୍ତ୍ତ ରଖିଲେ । ପ୍ରତିବର୍ଷ ଦଶହରାର ଏକମାସ ପୂର୍ବରୁ ସେ ଉତ୍ତରାୟଣୀ କ୍ଲବର ନାଟକ ପାଇଁ ନିଜକୁ ନିୟୋଜିତ କରିବେ । ଅନ୍ନପୂର୍ଣ୍ଣାର କର୍ମକର୍ତ୍ତା ମାନେ ଏଥିରେ ଏକମତ ହେଲେ । ୧୯୩୬ ଜୁଲାଇ ମାସରେ ସେ ଭଟିମୁଣ୍ଡାରେ ପହଞ୍ଚି ପ୍ରଥମେ ଶ୍ରୀ ସତ୍ୟନାରାୟଣ ପଣ୍ଡାଙ୍କର ଲିଖିତ 'ବିଜୟ କୁମାର' ନାଟକ ଶିକ୍ଷା ଦେଲେ । ସେଠାରେ ପୂର୍ବରୁ ନିଯୁକ୍ତ ନାଟ୍ୟ ଶିକ୍ଷକମାନେ ସର୍ବଶ୍ରୀ ରଘୁନାଥ ମିଶ୍ର, ଲକ୍ଷ୍ମୀନାରାୟଣ ପାତ୍ର ତାଙ୍କ ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟ କରିବାରେ କୁଣ୍ଠାବୋଧ କଲେ ନାହିଁ । 'ବିଜୟ କୁମାର' ନାଟକର ସେ ଏକ ଖଳ ଚରିତ୍ର 'ଉଗ୍ରସିଂହ'ଭୂମିକାରେ ଅଭିନୟ କଲେ । ପନ୍ଦର ଦିନ ଭିତରେ 'ବିଜୟ କୁମାର'ର ପ୍ରସ୍ତୁତି କାର୍ଯ୍ୟ ଶେଷ ହେଲା । ପରେ ପରେ ବଙ୍ଗଳାନୁବାଦ 'ଜୟଦେବ' ଓ 'ଅଲିବାବା' ଯାହାକି ବହୁ ବର୍ଷ ପୂର୍ବେ 'ରାଧାକୃଷ୍ଣ ଥିଏଟର' ଦ୍ୱାରା ଅଭିନୀତ ହୋଇଥିଲା, ସେହି ଦୁଇଟି ନାଟକକୁ ମଧ ଶିକ୍ଷା ଦେଲେ । ଦଶହରା ପୂର୍ବରୁ ସର୍ତ୍ତ ଅନୁଯାୟୀ ସେ ଏକମାସ ପାଇଁ ଜଟଣୀକୁ ଫେରିଲେ । ଅନ୍ନପୂର୍ଣ୍ଣା ନାଟ୍ୟମଣ୍ଡଳୀ କପିଳାସ ରୋଡ୍ ଟାଙ୍ଗୀରେ କିଛି ଦିନ ନାଟକ ପ୍ରଦର୍ଶନ କରି ପରବର୍ତ୍ତୀ କ୍ୟାମ୍ପ ଜଟଣୀରେ ପକାଇଲେ ।

ଜଟଣୀରେ ବଙ୍ଗଳାନୁବାଦ ପୌରାଣିକ ନାଟକ 'କ୍ଷେତ୍ରବୀର' (ଅଭିମନ୍ୟୁ ବଧ) ଅଭିନୀତ ହେଲା । ମାଷ୍ଟର ମାଣିଆ ସେଥିରେ ନିଜେ 'କର୍ଣ୍ଣ' ଭୂମିକାରେ ଅଭିନୟ

କରିଥିଲେ । ଛଟଣୀ ଥାନା ପାଖରେ ଗୋଟିଏ ଦୋମହଲା କୋଠାରେ ଅନ୍ନପୂର୍ଣ୍ଣାର କଳାକାରମାନେ ରହୁଥିଲେ । ଛଟଣୀ କ୍ୟାମ୍ପର ସବୁ ଦାୟିତ୍ୱ ମାଣିଆଙ୍କ ଉପରେ ଥିଲା । ନଭେମ୍ବର ଓ ଡ଼ିସେମ୍ବର ଦୁଇମାସ, ଛଟଣୀରେ କ୍ୟାମ୍ପ କରାଗଲା । ମାଷ୍ଟର ମାଣିଆଙ୍କ ଯୋଗଦାନ ପରେ ପୂର୍ବ ନାଟକଗୁଡ଼ିକ ଭିତରୁ କେବଳ 'ଭକ୍ତର ଭଗବାନ' ନାଟକ ଅନୁକୂଳ ନାଟକ ଭାବେ ରହିଲା ଏବଂ ଅନ୍ୟାନ୍ୟ ରାସଲୀଳା ଗୁଡ଼ିକୁ ବାଦ୍ ଦିଆଗଲା । ଏହି ଦୁଇମାସ ଭିତରେ ପ୍ରତିଦିନ ନାଟକ ଅଭିନୟ ହେବା ସଙ୍ଗେ ସଙ୍ଗେ ବଙ୍ଗଳାନୁବାଦ ନାଟକ 'ରାଜା ହରିଶ୍ଚନ୍ଦ୍ର' (ଯାହାକୁ ବଙ୍ଗଳା ଥିଏଟର୍‌ରେ ମଞ୍ଚସ୍ଥ କରାଯାଇଥିଲା) ପ୍ରସ୍ତୁତ କରାଗଲା । ଦୁଇ ବର୍ଷ ତଳେ କଲିକତାରୁ ଯେଉଁ ସିନ୍‌ଗୁଡ଼ିକ କିଣାଯାଇଥିଲା ସେଗୁଡ଼ିକର ରଙ୍ଗଛାଡ଼ି ଯାଇଥିବା ଯୋଗୁଁ ଗଞ୍ଜାମ ଜିଲ୍ଲା ପିତଳ ଗ୍ରାମରେ ଏବଂ ସେତେବେଳେ ଖଲିକୋଟ ସ୍କୁଲର ଶ୍ରୀ ଲକ୍ଷ୍ମୀ ନାରାୟଣ ଆଚାରୀଙ୍କୁ ଡ଼କାଯାଇ ନୂଆ ସିନ୍ ପ୍ରସ୍ତୁତ କରାଗଲା ।

## ଦଳର ନାମ ପରିବର୍ତ୍ତନ : ଅନ୍ନପୂର୍ଣ୍ଣା ଥିଏଟର

ପୂର୍ବରୁ ବନ୍ଦ ହୋଇଯାଇଥିବା ଆର୍ଟ ଥିଏଟର ଓ ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କର ରାସଦଳରୁ ଆସି ଯେଉଁମାନେ ଏହି ସଂସ୍ଥାରେ ଯୋଗଦେଲେ 'ଅନ୍ନପୂର୍ଣ୍ଣା ନାଟ୍ୟମଣ୍ଡଳୀ' ନାମ ସେମାନଙ୍କୁ ଭଲ ଲାଗିଲା ନାହିଁ । ଏଣୁ ସର୍ବସମ୍ମତ ପ୍ରସ୍ତାବ କ୍ରମେ ଦଳର ନାମ 'ଅନ୍ନପୂର୍ଣ୍ଣା ଥିଏଟର୍' ରଖାଗଲା ।

୧୯୩୭ ମସିହା ଆରମ୍ଭରୁ ଦଳର ନାମ 'ଅନ୍ନପୂର୍ଣ୍ଣା ଥିଏଟର୍' ରୂପେ ଘୋଷଣା କରାଗଲା । 'ହରିଶ୍ଚନ୍ଦ୍ର' ନାଟକରେ ମାଣିଆ ନିଜେ 'ରାଜା ହରିଶ୍ଚନ୍ଦ୍ର' ଚରିତ୍ରରେ ଅଭିନୟ କଲେ । ପରବର୍ତ୍ତୀ କ୍ୟାମ୍ପ ଗଞ୍ଜାମ ଜିଲ୍ଲାର ଖଲିକୋଟ ଗଡ଼ରେ ପଡ଼ିଲା । ବଙ୍ଗଳା ଥିଏଟର୍‌ରେ ରାମ ମାଣିଆ, ମନିବାବୁ, ବଳାଇଚାନ୍ଦ ଜଣେ ଜଣେ ଲବ୍ଧ ପ୍ରତିଷ୍ଠିତ କଳାକାର ଭାବେ ଖ୍ୟାତିଲାଭ କରିଥିଲେ । ଅନ୍ନପୂର୍ଣ୍ଣା ଥିଏଟର୍‌ରେ ମାଷ୍ଟର ମାଣିଆଙ୍କ ଭୂମିକା ପ୍ରତି ଦର୍ଶକ ମାନେ ବିଶେଷ ଆକୃଷ୍ଟ ହେଉଥିଲେ । ସେ ଅଭିନୟ କରୁଥିବା ନାଟକ ଗୁଡ଼ିକ ଦେଖିବା ପାଇଁ ଅଧିକ ଦର୍ଶକ ଆସୁଥିଲେ । ଏହି କାରଣରୁ ଅନୁଷ୍ଠାନର ପ୍ରତିଷ୍ଠାତା ୰ ସୋମନାଥ ଦାଶ୍ ଓ ପରିଚାଳକ ୰ ବାଉରି ବନ୍ଧୁ ମହାନ୍ତି ମାଷ୍ଟର ମାଣିଆଙ୍କୁ ବିଶେଷ ଗୁରୁତ୍ୱ ଦେଉଥିଲେ ।

## ପେଣ୍ଡାଲ ନିର୍ମାଣ ଓ ପରିଚାଳନା

ପ୍ରତି କ୍ୟାମ୍ପରେ ପେଣ୍ଡାଲ ତିଆରି କରିବାକୁ ପଡ଼େ । ପେଣ୍ଡାଲ ତିଆରି କରିବାରେ ସେ ଦିଗ ନିର୍ଣ୍ଣୟ କରନ୍ତି । ପେଣ୍ଡାଲରେ ସିନ୍ ବାନ୍ଧିବା ବେଳେ ନିଜେ ଉପସ୍ଥିତ

ରହି ଷ୍ଟେଜ୍‌ମ୍ୟାନେଜର ଓ ସହକର୍ମୀ ମାନଙ୍କୁ ନେଇ କାମ କରନ୍ତି । ସେ କିନ୍ତୁ ପ୍ରେକ୍ଷାଳୟରେ ମଧ୍ୟସ୍ଥଳରେ ବସି ପେଣ୍ଡାଲ ପଛସିନ୍ ପର୍ଯ୍ୟନ୍ତ ପ୍ରତି ଉଇଙ୍ଗସ୍ ବାନ୍ଧିବା ଦେଖନ୍ତି । ଯେପରି ଉଇଙ୍ଗସ୍ ଗୁଡ଼ିକ ଆଗପଛ ନହୁଏ । ପେଣ୍ଡାଲର ଦୁଇ କଡ଼ରେ ଦୁଇଟି ଦଉଡ଼ି ଟାଣି ରଖିଦିଅନ୍ତି । ସେହି ଅନୁଯାୟୀ ଉଇଙ୍ଗସ୍ ଗୁଡ଼ିକ ବନ୍ଧାଯାଏ । କ୍ୟାମ୍ପ ଆରମ୍ଭ ହେଲା ପ୍ରତିକ୍ୟାମ୍ପରେ ପ୍ରଥମ ନାଟକ ଭାବେ 'ଭକ୍ତର ଭଗବାନ', 'ସୁଦାମା' ନାଟକ ମଞ୍ଚସ୍ଥ କରାଯାଉଥିଲା । ନାଟକ ଆରମ୍ଭ ଦିନ ସମସ୍ତେ ଅରୁଆଭାତ ଖାଆନ୍ତି । ମଞ୍ଚ ଉପରକୁ ଜୋତା ଚପଲ ନେବା ବାରଣ କରାଯାଉଥିଲା । ନାଟକ ଚାଲୁଥିବା ସମୟରେ ଶୃଙ୍ଖଳା ରକ୍ଷା ଉପରେ ମାଷ୍ଟର ମାଣିଆ ବିଶେଷ ଗୁରୁତ୍ୱ ଦିଅନ୍ତି । କେହି ପରସ୍ପର ମଧ୍ୟରେ ଆଲୋଚନା ମନା କିମ୍ବା ବଡ଼ପାଟିରେ କଥାବାର୍ତ୍ତା କରିବା ମଧ ମନା । ଏହି ଭୁଲ୍ ପାଇଁ ଦଣ୍ଡବିଧାନ କରାଯାଉଥିଲା । ଏ ଲେଖକ ଏଭଳି ଦଣ୍ଡ ପାଇବାରୁ ବାଦ୍ ପଡ଼ିନାହାନ୍ତି ।

ପ୍ରତିଦିନ ଭୋର୍ ପାଞ୍ଚଟାରୁ ଉଠି ଶିଶୁ ଶିଳ୍ପୀମାନଙ୍କ ସ୍ୱର ସାଧନା ତା'ପରେ ନାଚ ଅଭ୍ୟାସ ଦିନ ନଅଟାଠାରୁ ମଧ୍ୟାହ୍ନ ପର୍ଯ୍ୟନ୍ତ ନୂଆ ବା ପୁରୁଣା ନାଟକର ପରୀକ୍ଷା ମୂଳକ ଅଭିନୟ କରାଯାଏ । ସେ ନିଜେ ସେଠାକୁ ଯିବା ପୂର୍ବରୁ ଅନ୍ୟ କଳାକାର ମାନେ ସେଠାରେ ଉପସ୍ଥିତ ହୋଇଥାନ୍ତି । ଚାଲୁଥିବା ବେଳେ କେହି ଯଦି ବାହାରକୁ ଯିବାକୁ ଚାହୁଁଥିଲା ତେବେ ତାଙ୍କର ଅନୁମତି ନେବାକୁ ପଡୁଥିଲା ।

ଖଲିକୋଟ୍, ରମ୍ଭା, ପୁରୁଷୋତ୍ତମପୁର, ଆସ୍କା, ପିତଳରେ କ୍ୟାମ୍ପ ପଡ଼ିଲା । ଏହାଭିତରେ ନାଟ୍ୟକାର କାର୍ତ୍ତିକ କୁମାର ଘୋଷଙ୍କ ଲିଖିତ 'ମାତୃପୂଜା' ନାଟକ ଶିକ୍ଷା ଦେଲେ । ଶ୍ରୀମାଣିଆ ନିଜେ ବ୍ୟାଧରାଜା 'କାଳକେତୁ' ଚରିତ୍ରରେ ଅଭିନୟ କଲେ ।

ଉପରୋକ୍ତ ସ୍ଥାନ ଗୁଡ଼ିକର ଦର୍ଶନୀୟ ସ୍ଥାନ ଯଥା ଖଲିକୋଟର ନିର୍ମଳଝର, ପୁରୁଷୋତ୍ତମପୁରର ତାରାତାରିଣୀ ପାହାଡ଼ ଓ ଆସିକା ଚିନି କଳ ଦେଖିବାକୁ ଯିବାବେଳେ ସେ ନିଜର ସହଯୋଗୀ କଳାକାର ଓ ଛୋଟଛୋଟ ପିଲାମାନଙ୍କୁ ସାଙ୍ଗରେ ନେଇଯାଆନ୍ତି । ସେଥିପାଇଁ ଅନୁଷ୍ଠାନ ତରଫରୁ ଖର୍ଚ୍ଚର ବ୍ୟବସ୍ଥା ମାଲିକ ଓ ପରିଚାଳକଙ୍କ ଦ୍ୱାରା ମଞ୍ଜୁର କରାଇ ନିଅନ୍ତି ।

ନାଟ୍ୟସଂସ୍ଥାକୁ ସେ ନିଜ ପରିବାର ଭଳି ମନେ କରୁଥିଲେ । ନାଟ୍ୟଶିକ୍ଷା ସାଙ୍ଗକୁ କ୍ୟାମ୍ପର ସବୁ ବିଷୟ ପରିବାରର ମୁରବୀ ଭଳି ସେ ଟିକିନିଖି ଭାବେ ବୁଝୁଥିଲେ । କିଏ ଖାଇଲା କିଏ ନଖାଇଲା, ଖାଦ୍ୟ ପ୍ରସ୍ତୁତି ଏବଂ କାମରେ ଯଦି କିଏ ବାହାରକୁ ଯାଇଥାଏ ତା' ପାଇଁ ଖାଦ୍ୟ ରଖିବା ତାଙ୍କର ଦୈନନ୍ଦିନ ଅଭ୍ୟାସରେ ପରିଣତ

ହୋଇଥିଲା । ସମସ୍ତଙ୍କ ଶେଷରେ ସେ ନିଜେ ଖାଆନ୍ତି । ଛୋଟ ଛୋଟ ପିଲାମାନେ ବାହାରେ ବୁଲିବା ବେଳେ ସେ ସେମାନଙ୍କୁ ଦୃଢ଼ ହସ୍ତରେ ଶାସନ କରନ୍ତି । ସେ ନିଜେ ମଧ ବଜାରରେ ବେଶୀ ସମୟ ବୁଲିବାକୁ ପସନ୍ଦ କରନ୍ତି ନାହିଁ ।

ପିତଳ ଗୋଟିଏ ବଡ଼ ଗାଁ । କେଉଁ ପୁରୁଣା କାଳରୁ ଏହି ଗାଁର ଦୁଇଟି ପେଣ୍ଡାଲ୍ ଅଛି । ସ୍ଥାନୀୟ ଲୋକମାନେ, ଅଧିକାଂଶ ନାଟ୍ୟପ୍ରେମୀ । ଗଞ୍ଜାମ ଜିଲ୍ଲାରେ ଝାମୁଯାତ, ରାସଲୀଳା, ଦାସ୍‌କାଠିଆ ପ୍ରଭୃତି ଲୋକନାଟ୍ୟ ଛଡ଼ା ଗଣନାଟ୍ୟ ବା ଛାମୁଣ୍ଡିଆ ଦଳର ଯାତ୍ରା ଆଦିର ପ୍ରଚଳନ ଥାଏ । ଗଞ୍ଜାମ ଜିଲ୍ଲାରେ ଯେତୋଟି ସ୍ଥାନ ଏପର୍ଯ୍ୟନ୍ତ ଭ୍ରମଣ କରାଗଲା ସବୁ ସ୍ଥାନରେ ଗୋଟିଏ ଦୁଇଟି ଡ୍ରାମା ପେଣ୍ଡାଲ୍ ଥିବାର ଲକ୍ଷ୍ୟ କରାଗଲା । ପିତଳ ଗାଁରେ କେତେ ବର୍ଷ ଧରି 'କିଶୋର ଚନ୍ଦ୍ର ନାଟ୍ୟସଂଘ' ନାରୀମାନଙ୍କୁ ନେଇ ଗୋଟିଏ ଭ୍ରାମ୍ୟମାଣ ଦଳ ଗଢ଼ାଯାଇଥିଲା । ୩ ବର୍ଷ ତଳୁ ତାହା ବନ୍ଦ ହୋଇଯାଇଥାଏ । ସେହି ଦଳର ପ୍ରତିଷ୍ଠାତା ଶ୍ରୀ ରଘୁନାଥ ପଣ୍ଡାଙ୍କ ତତ୍ତ୍ୱାବଧାନରେ କିଛି ଦିନ ସେଠି ନାଟକ ପ୍ରଦର୍ଶନ କରାଗଲା । ମାଷ୍ଟର ମାଣିଆଙ୍କ ପ୍ରତି ସେଠାକାର ନାଟ୍ୟପ୍ରେମୀ ଦର୍ଶକମାନଙ୍କର ଯଥେଷ୍ଟ ସମ୍ମାନ ଥିଲା । ପରବର୍ତ୍ତୀ କ୍ୟାମ୍ପ ରସୁଲ୍‌କୋଣ୍ଡାରେ 'ମାତୃପୂଜା' ନାଟକ ମଞ୍ଚସ୍ଥ କରାଗଲା । ସେଠିକାର ଜଳଭଣ୍ଡାର, କୁଲାଦ୍‌ଗଡ଼, ବାଗ୍‌ଦେବୀ ପୀଠ ସମସ୍ତେ ଦେଖିଯିବା ପାଇଁ ଆବଶ୍ୟକ ଟଙ୍କା ଅନୁଷ୍ଠାନ ବହନ କରିବା ପାଇଁ ଦାବୀ କରିବାରୁ ମାଲିକ ଓ ପରିଚାଳକଙ୍କ ମଧ୍ୟରେ ମତାନ୍ତର ଘଟିଲା । ଏହା ଶ୍ରୀ ମାଣିଆଙ୍କୁ ବିବ୍ରତ କରିଥିଲା ଓ ସେ ନିଜ ଗାଁକୁ ଚାଲିଗଲେ । ପରବର୍ତ୍ତୀ କ୍ୟାମ୍ପ ନୟାଗଡ଼ରେ ତାଙ୍କ ଅଭାବ ବିଶେଷ ଭାବରେ ଅନୁଭୂତ ହେଲା । ଆଭ୍ୟନ୍ତରୀଣ ବିଶୃଙ୍ଖଳା ମଧ ବଢ଼ିଲା । ଏହା ଫଳରେ ଆୟ ମଧ କମିଗଲା । ପୁନରାୟ ତାଙ୍କୁ ସ୍ୱତନ୍ତ୍ର ଲୋକ ପଠାଇ ଗାଁରୁ ଡ଼କାଗଲା । ପୁରୀ ଜିଲ୍ଲା ଟାଙ୍ଗୀ ଓ ଗଙ୍ଗାଧରପୁର କ୍ୟାମ୍ପରେ ପରେ ମାଲିକ ସୋମନାଥ ଦାଶ୍‌ଙ୍କ ଗାଁ ଖଣ୍ଡୁଆଳ କୋଟ୍‌ରେ କିଛିଦିନ ନାଟକ ମଞ୍ଚସ୍ଥ ହେବାପରେ ଏକମାସ ଛୁଟି ଦିଆଗଲା ।



# ପଞ୍ଚମ ଅଧ୍ୟାୟ

## ଗୋଷ୍ଠୀ ବିବାଦରେ ନିରପେକ୍ଷତା

୧୯୩୭ ମସିହା ଅଗଷ୍ଟ ଓ ସେପ୍ଟେମ୍ବର ଦୁଇମାସ ଭିତରେ ଅଶ୍ୱିନୀ ବାବୁଙ୍କ ଲିଖିତ 'କଳାପାହାଡ଼' ଓ 'ସେଓଳୀ' ଏହି ଦୁଇଟି ନାଟକ ଶ୍ରୀ ମାଣିଆ ଶିଖାଇଲେ । ପୂର୍ବ ସର୍ତ୍ତାନୁଯାୟୀ ଦଶହରା ପୂର୍ବରୁ ଜଟଣୀ ଉତ୍ତରାୟଣୀ କ୍ଲବରେ ନାଟକ ଶିଖାଇବା ପାଇଁ ଗଲେ । ନଭେମ୍ବର ମାସରେ ଅନ୍ନପୂର୍ଣ୍ଣା ଥିଏଟର୍‌ର ଟୁରିଙ୍ଗ ଆରମ୍ଭ ହେଲା । ପ୍ରଥମେ ବାଣପୁର ଅଞ୍ଚଳର ଭାଟପଡ଼ା ଓ ପରେ ଗଞ୍ଜାମ ଜିଲ୍ଲାର ଛତ୍ରପୁରରେ କ୍ୟାମ୍ପ ପଡ଼ିଲା । ଡ଼ିସେମ୍ବର ମାସରେ ବ୍ରହ୍ମପୁର ନ୍ୟାସ୍‌ନାଲ୍ ହୋଟେଲ୍ ପରିସର ଭିତରେ ଦୁଇମାସ ନାଟକ ମଞ୍ଚସ୍ଥ କରାଗଲା । ଏହା ମଧ୍ୟରେ ଦଳରେ ଛୋଟବଡ଼ ଭେଦଭାବ ଦେଖାଦେଲା । ଯେଉଁ କଳାକାରମାନେ ସଂଗଠନ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ ସେମାନେ ସ୍ୱଳ୍ପ ପାରିଶ୍ରମିକ ପାଉଥିଲେ । ସେମାନେ ଅଧିକାଂଶ ବାଣପୁର ଅଞ୍ଚଳରୁ ଆସିଥିଲେ ଏବଂ ତାଙ୍କ ମଧ୍ୟରୁ କେତେକ ଏଇ ସଂସ୍ଥାର ଏକୁଡ଼ିଶାଳ ଶିଳ୍ପୀ । ଏ-ଲେଖକ ମଧ୍ୟ ତହିଁରୁ ଅନ୍ୟତମ ଅଟେ । ଅନ୍ୟାନ୍ୟ ଜିଲ୍ଲା ମାନଙ୍କରୁ ବିଭିନ୍ନ ଅନୁଷ୍ଠାନରୁ ଯେଉଁ କଳାକାରମାନେ ଆସିଥିଲେ ସେମାନେ ଥିଲେ ତତ୍କାଳୀନ ଖ୍ୟାତନାମା କଳାକାର । ଏଇ ଦୁଇଗୋଷ୍ଠୀଙ୍କ ମଧ୍ୟରେ ଭେଦଭାବ ମୁଣ୍ଡ ଟେକିଉଠିଲା । ଶ୍ରୀ ମାଣିଆଙ୍କ ପ୍ରତି ଉଭୟ ଗୋଷ୍ଠୀର ସମ୍ମାନ ଥାଏ । ସେ ବହୁ ଚେଷ୍ଟା କରି ଗୋଷ୍ଠୀଗତ ବିବାଦ ଦୂର କରିବାରେ ସମର୍ଥ ହେଲେ ନାହିଁ । ଲାଞ୍ଛିତ, ଅପମାନିତ, ନିର୍ଯାତିତ ଗୋଷ୍ଠୀଙ୍କୁ ସାହାଯ୍ୟ ଦେଇପାରିଲେ ନାହିଁ । ତାଙ୍କ ର ଉଦାସୀନତାର ସୁଯୋଗ ନେଇ ଭିନ୍ନ ଗୋଷ୍ଠୀର କଳାକାରମାନଙ୍କର ପ୍ରଭାବ ଅଧିକ ହେଲା । ନୂତନ ନାଟକରେ ଚରିତ୍ର ବଣ୍ଟନରେ ସେମାନେ ହସ୍ତକ୍ଷେପ କରିବା ଦ୍ୱାରା ସେ (ମାଣିଆ) ନ୍ୟାୟପୂର୍ଣ୍ଣ ନିଷ୍ପତ୍ତି ଦେଇପାରୁନଥିଲେ । ଫଳରେ ଅନ୍ୟମାନେ ମାଷ୍ଟର ମାଣିଆଙ୍କୁ ଦୋଷାରୋପ କଲେ । ପରିଚାଳନା କ୍ଷେତ୍ରରେ ମଧ୍ୟ ଏଇ ବିଭେଦର ପ୍ରଭାବ ପଡ଼ିଲା । ପୁରାତନ ଶିଳ୍ପୀ ଗୋଷ୍ଠୀଙ୍କୁ ନେତୃତ୍ୱ ଦେଲେ ଶ୍ରୀ ଲିଙ୍ଗରାଜ୍ ନନ୍ଦ । ଯେ ପରବର୍ତ୍ତୀ କାଳରେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପର ସ୍ୱତ୍ୱାଧିକାରୀ ହେଲେ । ମୁଖ୍ୟ ପରିଚାଳକ ବାଉରିବନ୍ଧୁ ବାବୁ ସଙ୍କଟର ସମାଧାନ ପାଇଁ ବିଶେଷ ଉଦ୍ୟମ କଲେ ।

## ଅନ୍ନପୂର୍ଣ୍ଣା ଥିଏଟର୍‌ରେ କାଶୀନାଥ ସାହୁ

ଆର୍ଟ୍ ଥିଏଟର୍‌ର ସ୍ୱନାମଧନ୍ୟ କଳାକାର ନର୍ତ୍ତକ କାଶୀନାଥ ସାହୁ

ସେତେବେଳର ଜଣେ ଉତ୍ସାହୀ, ଉଦ୍ୟମଶୀଳ ଓ ଖ୍ୟାତି ସମ୍ପନ୍ନ କଳାକାର । ସେ ଏକାଧାରରେ ଅନେକ ଗୁଣର ଅଧିକାରୀ ଥିଲେ । ଗଞ୍ଜାମ ଜିଲ୍ଲା ଆସିକା ସହରରେ ସେ 'ଶ୍ରୀ ଥିଏଟର୍' ଆରମ୍ଭ କରିଥିଲେ । ସେଥିରେ କେତେଜଣ ଅଭିନେତ୍ରୀମାନଙ୍କୁ ସଂଗ୍ରହ କରିନାଟ୍ୟ ଶିକ୍ଷା ଦେଇଥିଲେ । ସେ ବ୍ରହ୍ମପୁର ସହରରୁ କେତେକ ଥିଏଟର୍‌ର ପ୍ରୟୋଜନୀୟ ଜିନିଷ ଖରିଦ୍ ପାଇଁ ଆସିବା ସମୟରେ ଆର୍ଟ ଥିଏଟରର ପୂର୍ବତନ ନାଟ୍ୟ ଶିକ୍ଷକ ଶ୍ରୀ ମାଣିଆଙ୍କ ସହ ଦେଖା ହେଲା । ଏହି ସାକ୍ଷାତ୍ ସମୟରେ ମାଷ୍ଟର ମାଣିଆ କାଶୀବାବୁଙ୍କୁ ଅନ୍ନପୂର୍ଣ୍ଣା ଥିଏଟର୍‌ରେ ଯୋଗଦେବାକୁ ପରାମର୍ଶ ଦେଲେ । କାରଣ ଅନୁଷ୍ଠାନକୁ ସର୍ବାଙ୍ଗ ସୁନ୍ଦର ଓ ଅପ୍ରତିଦ୍ୱନ୍ଦୀ ଭାବେ ଗଢ଼ିବାକୁ ସେ ଅଦମ୍ୟ ଉତ୍ସାହୀ ଥିଲେ ।

## ଦଳର ବଡ଼ ମାଷ୍ଟ୍ରେ ସର୍ବସାଧାରଣରେ 'ମାଷ୍ଟର ମାଣିଆ'

ସେତେବେଳେ ଦଳରେ ୩ ଜଣ ନାଟ୍ୟ ଶିକ୍ଷକ ଥିଲେ । ସର୍ବଶ୍ରୀ ରଘୁନାଥ ମିଶ୍ର (ରଘୁ ମାଷ୍ଟ୍ରେ), ଲକ୍ଷ୍ମୀ ନାରାୟଣ ପାତ୍ର (ଲକ୍ଷ୍ମୀ ମାଷ୍ଟ୍ରେ) ଓ ରାମଚନ୍ଦ୍ର ମାଣିଆ । ଶ୍ରୀ ମାଣିଆଙ୍କୁ ଦଳର ମାଲିକ, ସଂଗଠନ କର୍ମଚାରୀ ଓ କଳାକାର ମାନେ ବଡ଼ ମାଷ୍ଟ୍ରେ ବୋଲି ଡ଼ାକନ୍ତି । ଓଡ଼ିଆ ନାଟକ ଜଗତର ତାଙ୍କ ସମସାମୟିକ ପ୍ରଖ୍ୟାତ କଳାକାର ମାନେ ଜନମାନସରୁ ଦୂରେଇ ଯାଇଥିଲେ । ତାଙ୍କର କଳାପ୍ରତିଭା ଦର୍ଶକମାନଙ୍କୁ ବିଶେଷ ଆକୃଷ୍ଟ କରୁଥିଲା । ଦଳର ପରିଚାଳକ ବ୍ୟବସାୟ ଦୃଷ୍ଟିରୁ ଯେଉଁନାଟକରେ ଶ୍ରୀ ମାଣିଆ ଅଭିନୟ କରିବାର ଥାଏ ମଞ୍ଚରେ ତାହା ପୂର୍ବଦିନରୁ ଘୋଷଣା କରନ୍ତି । ଶ୍ରୀ ମାଣିଆଙ୍କ ଲୋକପ୍ରିୟତା ଏତେବଢ଼ିଯାଇଥିଲା ଯେ ତାଙ୍କ ପିତୃଦତ୍ତ ନାମ 'ରାମଚନ୍ଦ୍ର' କେଉଁ ଆଡ଼େ ଲୁପ୍ତ ହୋଇଯାଇ ସର୍ବସାଧାରଣଙ୍କ ନିକଟରେ 'ମାଷ୍ଟର ମାଣିଆ' ହୋଇଗଲା ।

ବ୍ରହ୍ମପୁର, ପାରଳାଖେମୁଣ୍ଡି, ଜୟପୁର, ରାୟଗଡ଼ା, ଟିଟିଲାଗଡ଼, ବଲାଙ୍ଗୀର, ବରଗଡ଼, ସମ୍ବଲପୁର ଭ୍ରମଣ ଭିତରେ ବଙ୍ଗଳାନୁବାଦ ନାଟକ 'ଶକ୍ତିମନ୍ତ୍ର' ନିଜେ ଅନୁବାଦ କରି ସେ ଶିକ୍ଷା ଦେଲେ । ମେ' ମାସରେ ଅନୁଗୁଳ ସଭାଘର ପେଣ୍ଡାଲ୍‌ରେ 'ଶକ୍ତିମନ୍ତ୍ର' ନାଟକର ଶୁଭାରମ୍ଭ ହେଲା ।

ସେ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ଉଚ୍ଚାଭିଳାଷୀ ଥିଲେ । ଭଲ ପିନ୍ଧିବା, ଭଲ ଜିନିଷ ବ୍ୟବହାର କରିବା, ଭଲ ଖାଇବା, ବିଶିଷ୍ଟ ଲୋକମାନଙ୍କ ସହ ମିଳାମିଶା କରିବା ତାଙ୍କର ସହଜାତ ପ୍ରକୃତି ଥିଲା । ବରଗଡ଼, ସମ୍ବଲପୁର କ୍ୟାମ୍ପ ସମୟରେ ମଠାକନା ଖରିଦ୍ କରି ଜାମା ଓ ପଞ୍ଜାବୀ ତିଆରି କରିବା ଏବଂ ସମ୍ବଲପୁରୀ

ଗାମୁଛା କିଣି ପାଣିର କଷ ଦେଇ ପଇଡ଼ ପାଣି ଓ ଶୋରିଷତେଲରେ ତାକୁ ରଙ୍ଗୀନ୍ କରିବା ତାଙ୍କର ଏକ ସଉକ୍ ଥିଲା ।

**ବିଶିଷ୍ଟ ସଙ୍ଗୀତଜ୍ଞଙ୍କ ସହ ବାଦ୍ୟଯନ୍ତ୍ର ସଂଗତ**

ସେ ସମୟରେ ରେଡ଼ିଓ ଦ୍ୱାରା ପ୍ରସାରିତ ସଙ୍ଗୀତ ଅଳ୍ପସଂଖ୍ୟକ ଶ୍ରୋତାଙ୍କ ନିକଟରେ ପହଞ୍ଚୁପାରୁ ଥିବାରୁ ସାଧାରଣରେ ପରିବେଷିତ ସଙ୍ଗୀତ ଆସର ବିଶେଷ ଲୋକପ୍ରିୟ ହେଉଥିଲା । ସଙ୍ଗୀତ ଆସରକୁ ଶ୍ରୀ ମାଣିଆ ତାଙ୍କ ଛାତ୍ର ମାନଙ୍କୁ ନେଇ ଯୋଗ ଦିଅନ୍ତି । ଏହାରି ମାଧମରେ ସେ ଜନସାଧାରଣଙ୍କ ସହ ସୁସମ୍ପର୍କ ରଖି ପାରୁଥିଲେ ।

ଆଗାମୀ ବର୍ଷାଦିନ ରହଣୀ ପାଇଁ ସମସ୍ତେ ଛୁଟିରେ ଗଲେ । ୧୯୩୮ ମସିହା ଅଗଷ୍ଟ ମାସରେ ଦଳର ସମସ୍ତ କଳାକାର ପୁନର୍ବାର ଯୋଗ ଦେଲେ । ଶ୍ରୀ କାଶୀନାଥ ସାହୁ ଥିଲେ ସେମାନଙ୍କ ମଧ୍ୟରୁ ଅନ୍ୟତମ । ସେ ମଧ ନାଟ୍ୟ ଶିକ୍ଷକ ଭାବେ ଯୋଗ ଦେଲେ ।

ସେ ପ୍ରଥମେ ଅଶ୍ୱିନୀ କୁମାର ଘୋଷଙ୍କ ରଚିତ 'କୋଣାର୍କ', ଜ୍ୟୋତୀନ୍ଦ୍ର ମୋହନ ମୁଖାର୍ଜୀଙ୍କ ଲିଖିତ 'ଶ୍ରୀମନ୍ଦିର' ଓ କାର୍ତ୍ତିକ ଘୋଷଙ୍କ ଲିଖିତ 'ମୀରକାଶିମ୍' ନାଟକ ଶିକ୍ଷା ଦେଲେ । ମାଷ୍ଟର ମାଣିଆ ଯଥାକ୍ରମେ 'କୋଣାର୍କ'ରେ ବିଶୁ ମହାରଣା, 'ଶ୍ରୀମନ୍ଦିର'ରେ ବିଶ୍ୱାବସୁ ଚରିତ୍ରରେ ଅଭିନୟ କରିଥିଲେ । ନିଜ ଛାତ୍ରକୁ ଗୁରୁ ରୂପେ ଗ୍ରହିଣ କରିବାରେ ତାଙ୍କର କୌଣସି ଦ୍ୱିଧା ନଥିଲା ।

ସେହି ବର୍ଷ ଦଳ ଓଡ଼ିଶାର ଦକ୍ଷିଣ ପଶ୍ଚିମ ଓ ଉତ୍ତର ଅଞ୍ଚଳ, ବାଲେଶ୍ୱର ଓ କଟକ ଜିଲ୍ଲାରେ ୧୯୩୯ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ଭ୍ରମଣ କଲା । ଯାଭିତରେ ସେ ଦୁଇଟି ନାଟକ ଶିକ୍ଷା ଦେଲେ ଯଥା ବଙ୍ଗଳାନୁବାଦ ନାଟକ 'ଦସ୍ୟୁ' ଯେଉଁଥିବରେ କି ସେ ଦସ୍ୟୁ ପ୍ରତାପ ଚରିତ୍ରରେ ଅଭିନୟ କରିଥିଲେ । ଅନ୍ୟ ନାଟକଟି ବଙ୍ଗଳା ନାଟକ 'ପଥେର ଶେଷ' ଯାହାକୁ ପୂର୍ବରୁ ଉତ୍ତରାୟଣୀ କ୍ଲବ ଦ୍ୱାରା ମଞ୍ଚସ୍ଥ କରାଇଥିଲେ, ତାକୁ ଅନୁବାଦ କରାଯାଇ 'ମହାପଥର ଯାତ୍ରୀ' ନାମ କରଣ କରାଯାଇଥିଲା । ସେଥିରେ ଶ୍ରୀ ମାଣିଆ ନିଜେ ମୁଖ୍ୟ ଚରିତ୍ର ଜମିଦାର ଦୁର୍ଗାଶଙ୍କର ପଟ୍ଟନାୟକ ଭୂମିକାରେ ଅଭିନୟ କରିଥିଲେ । ସେହି ବର୍ଷ ଟାଟା ନଗରସ୍ଥ ଉତ୍କଳ ସମାଜ ତରଫରୁ ତାଙ୍କୁ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେ ପୌରାଣିକ ଓ ଐତିହାସିକ ନାଟକର ଜଣେ ସଫଳ କଳାକାର ଭାବେ ପ୍ରତିଷ୍ଠା ଲାଭ କରିଥିଲେ । ସାମାଜିକ ନାଟକ 'ମହାପଥର ଯାତ୍ରୀ'ର ଜମିଦାର ଦୁର୍ଗାଶଙ୍କରଙ୍କ ଭୂମିକାରେ ଅଭିନୟ କରି

ଏହି ଚରିତ୍ରକୁ ଅତ୍ୟନ୍ତ ପ୍ରଭାବଶାଳୀ ଭାବେ ପ୍ରସ୍ତୁତିତ କରିପାରିଥିଲେ ଓ ଦର୍ଶକମାନଙ୍କୁ ଅଭିଭୂତ କରିପାରିଥିଲେ । ତାଙ୍କର ସ୍ୱର ସଂଳାପର ସ୍ପଷ୍ଟ ଉଚ୍ଚାରଣ ଯୁଗୋପଯୋଗୀ ଅଭିନୟ ଶୈଳୀ ସମସାମୟିକ କଳାକାରମାନଙ୍କଠାରେ କ୍ୱଚିତ୍ ଦେଖାଯାଉଥିଲା । ଏହି ଭ୍ରମଣ ସମୟରେ ତାଙ୍କର ପୂର୍ବ ପରିଚିତ ସୌଖୀନ ଓ ପେଶାଦାର କଳାକାର ଏବଂ ସଙ୍ଗୀତଜ୍ଞ ମାନଙ୍କ ସହ ଦେଖାହୋଇଛି । ସମ୍ବଲପୁରର ଜନାର୍ଦ୍ଦନ ପୂଜାରୀ, ଟାଟା ନଗରର ଚତୁର୍ଭୁଜ ମହାନ୍ତି, ବଲାଇଚାନ୍ଦ ବାନାର୍ଜୀ, ଗୋବିନ୍ଦ ଚନ୍ଦ୍ର ଶୁରଦେଓ, ବାରିପଦାର ହରିଶ ଚନ୍ଦ୍ର ଦାସ, ସୁରେଶ ଚନ୍ଦ୍ର ମିଶ୍ର, ବାଲେଶ୍ୱରର ସୁକୁମାର ସାହୁ ଇତ୍ୟାଦି ।

## ନାଟ୍ୟଗୁରୁଙ୍କ ସହ ବହୁ ବର୍ଷ ପରେ ସାକ୍ଷାତ୍

ତାଙ୍କର ନାଟ୍ୟଗୁରୁ ଥିଲେ ବୃନ୍ଦାବନ ବିହାରୀ ଦାଶ । ମାଣିଆଙ୍କୁ ୪୭ ବର୍ଷ ବୟସ ହୋଇଥିଲେ ମଧ୍ୟ ସେ ଗୁରୁଙ୍କୁ ଯେଉଁଳି ସମ୍ମାନ ପ୍ରଦର୍ଶନ କରିଥିଲେ ତାହା ବାସ୍ତବିକ୍ ପ୍ରଶଂସନୀୟ । ଚାଟଶାଳୀରେ ପାଠ ପଢ଼ିଥିବା ବ୍ୟକ୍ତି ତାଙ୍କର ଦୀର୍ଘ କର୍ମମୟ ଜୀବନରେ ଅସଂଖ୍ୟ ଶିକ୍ଷିତ ଓ କଲେଜ ପଢୁଆ କଳାକାରଙ୍କ ମଧ୍ୟରେ ଉଚ୍ଚକୋଟୀର ଅଭିନୟ ପ୍ରଦର୍ଶନ କରି ମଧ୍ୟାହ୍ନ ସୂର୍ଯ୍ୟର ଦୀପ୍ତି ପ୍ରକାଶ କରିଥିଲେ ଓ ଓଡ଼ିଶାର ଅଗଣିତ ନାଟ୍ୟ ପିପାସୁଙ୍କ ଅନ୍ତରର ଶୁଭେଚ୍ଛା ପାଇ ରଙ୍ଗମଞ୍ଚରେ ନିଜର ସ୍ଥିତିକୁ ଅକ୍ଷୁର୍ଣ୍ଣ ରଖିପାରିଥିଲେ । ଯାଜପୁର ଟାଉନ୍‌ରେ କବି ମଞ୍ଜୁଳ କୃଷ୍ଣ ପ୍ରସାଦ ବସୁ, ଗୋକୁଳା ନନ୍ଦ ମହାନ୍ତି ଓ ଅକ୍ଷୟ ଦାସ୍ ପ୍ରମୁଖ ତାଙ୍କ ପ୍ରତି ବିଶେଷ ସମ୍ମାନ ପ୍ରଦର୍ଶନ କରିଥିଲେ ।

୧୯୩୯ ମସିହା ଅଗଷ୍ଟ ମାସରୁ ପୁଣି ମାଷ୍ଟର କାଶୀନାଥ ସାହୁ, ନିତ୍ୟାନନ୍ଦ ମହାପାତ୍ରଙ୍କ ଲିଖିତ ସମାଜ ସଂସ୍କାର ମୂଳକ ସର୍ବପ୍ରଥମ ମୌଳିକ ସାମାଜିକ ନାଟକ 'ମନ୍ଦିର ପ୍ରବେଶ' ଶିକ୍ଷା ଦେଲେ । ଆଉ କେତେଗୁଡ଼ିଏ ନାଟକ ମଧ୍ୟ ଶିକ୍ଷା ଦେଲେ । ମାଷ୍ଟର ମାଣିଆଙ୍କ ପାଇଁ ଉପଯୁକ୍ତ ଚରିତ୍ରାଭାବରୁ ସେ ଅଭିନୟ କରିନଥିଲେ । ଅନ୍ୟପକ୍ଷରେ ଅନୁଷ୍ଠାନର ପୁରାତନ ନାଟ୍ୟଶିକ୍ଷକ ଲକ୍ଷ୍ମୀ ନାରାୟଣ ପାତ୍ର କେତେଗୁଡ଼ିଏ ନୃତ୍ୟ ଶିଖାଇଲେ । ମାଣିଆଙ୍କ ଦୁଇ ଛାତ୍ରଙ୍କ ମଧ୍ୟରେ ନିଜ ନିଜ କଳାବୃତ୍ତିର ପ୍ରତିଯୋଗିତା ଚାଲିଲା । ମାଷ୍ଟର ମାଣିଆ ବଙ୍ଗଳା ନାଟକ 'ସରମା'କୁ ଅନୁବାଦ କରି 'ରାବଣ' ନାମକରଣ କଲେ ଓ ନିଜେ ଶିକ୍ଷା ଦେଲେ । ଦଶହରାରୁ ଭ୍ରମଣ ଆରମ୍ଭ ହେଲା । ଜୟପୁର ମହାରାଜାଙ୍କର ସଂସ୍କୃତ ନାଟକ 'ବୁଦ୍ଧ ଚରିତ' କୁ ଶିକ୍ଷା ଦେଲେ । ଜୟପୁର, ରାୟଗଡ଼ା, ଗୁଣୁପୁର, ପଦ୍ମପୁର, ପାରଳାଖେମୁଣ୍ଡି,

ମଞ୍ଜୁଷାଗଡ଼ ଦେଇ ବ୍ରହ୍ମପୁରରେ 'ରାବଣ' ନାଟକ ମଧ୍ୟ ଅଭିନୀତ ହେଲା । ସେ ନିଜେ 'ରାବଣ' ଚରିତ୍ରରେ ଅଭିନୟ କରିଥିଲେ ।

## କାର୍ତ୍ତିକ କୁମାର ଘୋଷଙ୍କ ସହ ସାକ୍ଷାତ

ଅନେକ ବର୍ଷ ପରେ କାର୍ତ୍ତିକ କୁମାର ଘୋଷଙ୍କ ସହ ଶ୍ରୀ ମାଣିଆଙ୍କର ସାକ୍ଷାତ୍ ହେଲା । ଅନ୍ନପୂର୍ଣ୍ଣାରେ ତାଙ୍କୁ ରଖିବା ପ୍ରସ୍ତାବକୁ ସେ ସ୍ୱାଗତ କରିଥିଲେ । କେତେ ମାସ ପରେ ୧୯୪୦ ମସିହା ଅଗଷ୍ଟ ଓ ସେପ୍ଟେମ୍ବର ମାସରେ ନାରୀ କାଳାକାରମାନଙ୍କୁ ସଂଗ୍ରହ କରାଗଲା । ସେମାନଙ୍କୁ ଶିକ୍ଷା ଦେବାର ଦାୟିତ୍ୱ ତାଙ୍କର ଦୁଇ ଛାତ୍ର କାଶୀନାଥ ସାହୁ ଓ ଲକ୍ଷ୍ମୀ ନାରାୟଣ ପାତ୍ରଙ୍କୁ ସେ ଦେଲେ । ସେ କେବଳ ନିରୀକ୍ଷକ ଭାବେ ରହିଲେ । ସେ ବର୍ଷ ନୂତନ ନାଟକ ଶିଖାଗଲା ନାହିଁ । ପ୍ରତି ନାଟକରେ ମହିଳାମାନଙ୍କୁ ନାରୀ ଚରିତ୍ର ଗୁଡ଼ିକରେ ତାଲିମ୍ ଦିଆଗଲା । ୧୯୪୧ ମସିହାରେ ନାଟ୍ୟକାର କାର୍ତ୍ତିକ କୁମାର ଘୋଷ ଯୋଗଦେଲେ । ସେହି ବର୍ଷ ଅଗଷ୍ଟ ମାସରେ ଖୋର୍ଦ୍ଧା ସହରକୁ ବର୍ଷାଦିନିଆ ନାଟ୍ୟ ଶିକ୍ଷା କେନ୍ଦ୍ର ରୂପେ ପରିଚାଳନା କର୍ତ୍ତୃପକ୍ଷ ସ୍ଥିର କଲେ । ମାଷ୍ଟର ମାଣିଆଙ୍କ ଗ୍ରାମ ଜଟଣୀ ପାଖାପାଖି । ଏଣୁ ଅଧିକାଂଶ ସମୟରେ ସେ ନିଜର କର୍ମପୀଠ 'ଉତ୍ତରାୟଣୀ ପୀଠ'ର ଉନ୍ନୟନ କାର୍ଯ୍ୟରେ ନିୟୋଜିତ ହେବାର ସୁଯୋଗ ପାଇଲେ । କାର୍ତ୍ତିକ ବାବୁଙ୍କ ନିର୍ଦ୍ଦେଶନାରେ ବଙ୍ଗଳାନୁବାଦ ନାଟକ 'P. W. D' ପ୍ରସ୍ତୁତ ହେଲା । ମାଷ୍ଟର ମାଣିଆ ସେଥିରେ ରାୟବାହାଦୂର ଚରିତ୍ରରେ ଅଭିନୟ କଲେ । ସମୟାନୁକ୍ରମେ ସେ ନାଟ୍ୟଶିକ୍ଷା, ସଙ୍ଗୀତ, ନୃତ୍ୟ ଶିକ୍ଷାରୁ ଅପସରି ଗଲେ । ମାତ୍ର ଅନୁଷ୍ଠାନର କର୍ମକର୍ତ୍ତାମାନେ ଅନୁଷ୍ଠାନରେ ତାଙ୍କର ଉପସ୍ଥିତି ପ୍ରତି ଗୁରୁତ୍ୱ ଦେଉଥିଲେ ।

## ସମ୍ବାଦପତ୍ର ପଢ଼ିବା ଅଭ୍ୟାସ

ସେତେବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥାଏ । ଦୈନିକ ସମ୍ବାଦପତ୍ର ପଢ଼ିବା ତାଙ୍କର ଆଗରୁ ଅଭ୍ୟାସ ଥିଲା । ଏହି ସମୟରେ ପାର୍ଟିର ସମାଜ ପତ୍ରିକାଟି ମଧ୍ୟାହ୍ନ ଭୋଜନ ଶେଷ ବେଳକୁ ତାଙ୍କ ବିଛଣାର ତକିଆତଳେ ନିଶ୍ଚୟ ଥିବ । ସେଥିରେ କେବେ ବ୍ୟତିକ୍ରମ ଘଟିଲେ ସେ ଭୀଷଣ ବିରକ୍ତ ହୁଅନ୍ତି । ପ୍ରତି ସନ୍ଧ୍ୟାରେ କ୍ଲବରେ ଯାଇ ରେଡ଼ିଓ ଶୁଣନ୍ତି । ସମ୍ବାଦପତ୍ର ଜରିଆରେ ଦେଶ ବିଦେଶର ଖବର ରଖନ୍ତି ।

୧୯୪୨ ମସିହା ମାର୍ଚ୍ଚ ମାସରେ କ୍ୟାପିଟାଲ ସିନେମାର ସେହି ସମୟର ଚାଳଛପର ବରଡ଼ା ତାଟି ଘେରା ହୋଇଥିବା ସିନେମା ଘରଟିକୁ ଅନ୍ନପୂର୍ଣ୍ଣା ଥିଏଟର୍ ଦୁଇମାସ ପାଇଁ ଭଡ଼ା ନେଇ ନାଟକ ପରିବେଷଣ କଲା ।

ମାଷ୍ଟର ମାଣିଆ ତାଙ୍କର ପୂର୍ବ ପରିଚିତ କଳାକାର ଓ ନାଟ୍ୟସଂଗଠନର ବନ୍ଧୁ ମାନଙ୍କ ସହ ସାକ୍ଷାତ୍ କରି ଭବିଷ୍ୟତ କର୍ମପନ୍ଥା ସମ୍ପର୍କରେ ଆଲୋଚନା କଲେ । ଆର୍ଟ୍ ଥିଏଟର୍‌ର ପତନ ପରେ ନିଜ ନିଜ ଶିକ୍ଷାଗତ ଯୋଗ୍ୟତା ନେଇ କେହି କେହି ସରକାରୀ ଚାକିରୀ ଅଥବା ବ୍ୟବସାୟ କରି ନାଟ୍ୟ ଦୁନିଆଠାରୁ ଦୂରେଇ ଯାଇଥିଲେ । ମାତ୍ର ଶ୍ରୀ ମାଣିଆ ଘର ସଂସାରଠାରୁ ଦୂରେଇ ରହି ଜନ୍ମ ଭୂମିକୁ କୁଣିଆ ଘର ଭାବେ ଗ୍ରହଣ କରି ଯାଯାବର ଭାବେ ଧୂଳି ଧୂସରିତ ମଞ୍ଚର ପରିଧି ଭିତରେ ଜୀବନର ତିନି ଭାଗ ବିତାଇ ଦେଇଥିଲେ ।

ଓଡ଼ିଆ ନାଟକର ଆଧୁନିକ ଯୁଗ ଆରମ୍ଭ ହେବାପରେ ଦର୍ଶକମାନେ ପୌରାଣିକ ଓ ଐତିହାସିକ ନାଟକରୁ ଦୂରେଇ ଗଲେ । ଯୁବ ନାଟ୍ୟକାର ଓ କଳାକାର-ମାନେ ସାମାଜିକ ନାଟକରେ ଅଭିନୟ କରିବା ଉପରେ ଗୁରୁତ୍ୱ ଦେଲେ । ଏଭଳି ପରିସ୍ଥିତିରେ ମଧ ପୁରାତନ ଯୁଗର ଖ୍ୟାତି ସମ୍ପନ୍ନ କଳାକାର ମାଷ୍ଟର ମାଣିଆ ନୂତନ ଯୁଗ ସହିତ ସମତା ରକ୍ଷା କରି ତାଙ୍କର ପୂର୍ବ ଖ୍ୟାତିକୁ ଅକ୍ଷୁର୍ଣ୍ଣ ରଖିପାରିଥିଲେ ।

ବହୁ ସମାଲୋଚକଙ୍କ ମତରେ 'ମହାପଥର ଯାତ୍ରୀ' ନାଟକର ଜମିଦାର ଦୁର୍ଗାଶଙ୍କର ପଟ୍ଟନାୟକଙ୍କ ଚରିତ୍ରରେ ସେ ନିଖୁଣ ତଥା ପ୍ରାଣସ୍ପର୍ଶୀ ଅଭିନୟ କରିପାରିଥିଲେ ।

ସେହି ବର୍ଷ ଜୁଲାଇ ମାସରେ ଟାଙ୍ଗୀରେ ବର୍ଷାଦିନ ରହଣି ସମୟରେ ନାଟ୍ୟ ଶିକ୍ଷା କେନ୍ଦ୍ର ଖୋଲାଗଲା । କେତେକ ପୁରାତନ କଳାକାର ବିଦାୟ ନେଲେ । ତତ୍କାଳୀନ ଖଳ ଚରିତ୍ରର ପ୍ରଭାବଶାଳୀ ଅଭିନେତା ଶ୍ରୀ ନବ କିଶୋର ମହାନ୍ତି ତାଙ୍କ ପରିବାରର ଚାପ ଯୋଗୁଁ ନାଟ୍ୟ ଦୁନିଆରୁ ବିଦାୟ ନେଲେ । ସେ ୧୯୩୨-୩୩ ମସିହାରୁ ବନମାଳୀ ଆର୍ଟ୍ ଥିଏଟର୍‌ରେ ମାଟ୍ରିକ ପାଶ୍ କରି ନିଜର କଳାକାର ଜୀବନର ଆରମ୍ଭ କରିଥିଲେ ଓ ଜଣେ ସଫଳ କଳାକାର ଭାବେ ଖ୍ୟାତି ଅର୍ଜନ କରିଥିଲେ । ମଞ୍ଚ ଜଗତରୁ ତାଙ୍କର ବିଦାୟ ଶ୍ରୀ ମାଣିଆଙ୍କୁ ମର୍ମାହତ କରିଥିଲା ।

କାର୍ତ୍ତିକ ଘୋଷଙ୍କ ନିର୍ଦ୍ଦେଶନାରେ ବଙ୍ଗଳାନୁବାଦ ନାଟକ 'ମାନମୟୀ ଗାର୍ଲସ୍କୁଲ' ନାଟକ ପ୍ରସ୍ତୁତ କରାଗଲା । ମାଷ୍ଟର ମାଣିଆ ସେଥିରେ ଜମିଦାର ଚରିତ୍ରରେ ଅଭିନୟ କରିଥିଲେ । ବନମାଳୀ ଆର୍ଟ ଥିଏଟର୍ ସମୟରୁ ଶ୍ରୀ ଘୋଷଙ୍କ ସହିତ ତାଙ୍କର ପରିଚୟ ହୋଇଥିଲା । ବୟସରେ ସେ ଘୋଷଙ୍କ ଠାରୁ ବହୁତ ବଡ଼ । ଶ୍ରୀ ଘୋଷ ଜଣେ ଉଚ୍ଚଶିକ୍ଷିତ ଏବଂ ନାଟ୍ୟକାର ତଥା ପୂର୍ବତନ ଆର୍ଟ ଥିଏଟର୍‌ର ପୃଷ୍ଠପୋଷକ ଶ୍ରୀ ଅଶ୍ୱିନୀ

କୁମାର ଘୋଷଙ୍କର ଭାଇ । ତଥାପି ଏ ଉଭୟଙ୍କ ମଧ୍ୟରେ ଜ୍ୟେଷ୍ଠ କନିଷ୍ଠର ସମ୍ପର୍କ ଅତୁଟ ଥାଏ । ତାଙ୍କର ନିର୍ଦ୍ଦେଶନାକୁ ସେ ମାନି ଚଳନ୍ତି । ଶ୍ରୀ ଘୋଷ ମଧ୍ୟ ପଦପଦବୀର କ୍ଷମତା କେବେ ମାଷ୍ଟର ମାଣିଆଙ୍କ ଉପରେ ପ୍ରୟୋଗ କରନ୍ତି ନାହିଁ । ବୟସ ଅପେକ୍ଷା ଗୁଣୀର ଗୁଣକୁ ସମ୍ମାନ ଦେବା ସେମାନଙ୍କର ଥିଲା ପରମ କର୍ତ୍ତବ୍ୟ ।

ବର୍ଷାଦିନ ରହଣି ଶିକ୍ଷାକେନ୍ଦ୍ରରେ ଶ୍ରୀ ମାଣିଆ ବେଶୀ ସମୟ ରହିପାରନ୍ତି ନାହିଁ । ଜଟଣୀର ଉତ୍ତରାୟଣୀ କ୍ଲବ୍ ପେଣ୍ଡାଲ ନିର୍ମାଣ ନିମନ୍ତେ ଅଧିକ ସମୟ ଦିଅନ୍ତି । ପ୍ରତି ଦଶହରାରେ ନାଟକ ମଞ୍ଚସ୍ଥ ଏବଂ ଅନ୍ୟାନ୍ୟ କାର୍ଯ୍ୟ ସଂପାଦନ କରିବା ପରେ ଅନ୍ନପୂର୍ଣ୍ଣା ଥିଏଟର୍‌ରେ ଅବଶିଷ୍ଟ ସମୟ କଟାନ୍ତି । ଅନ୍ନପୂର୍ଣ୍ଣା ଥିଏଟର୍‌ରେ ସେ ସାତ ମାସ ରହିପାରନ୍ତି । ଆସ୍ତେ ଆସ୍ତେ ଦଳ ମଧ୍ୟରେ ଗୋଷ୍ଠୀ କନ୍ଦଳ ଦେଖାଗଲା । ମାଷ୍ଟର ମାଣିଆ ତାଙ୍କ ବନମଳୀ ଆର୍ଟ୍ ଥିଏଟର୍ ସମୟର ସହକର୍ମୀ ଓ ଛାତ୍ରମାନଙ୍କଠାରୁ କ୍ରମଶଃ ଦୂରେଇ ଯାଇ ଅନ୍ନପୂର୍ଣ୍ଣା ଥିଏଟର୍‌ର ଛାତ୍ର ଓ ସହକର୍ମୀ ମାନଙ୍କର ନିକଟତର ହେଲେ ।

## ସ୍ଥାୟୀ ରଙ୍ଗମଞ୍ଚ ଗଠନ

୧୯୪୨ ମସିହାର ବର୍ଷାକାଳୀନ ବିଶ୍ରାମ ପରେ ନାଟକ ଦଳ ଗସ୍ତରେ ବାହାରିଲେ । ସେ ବର୍ଷର ଭ୍ରମଣ ପୂର୍ବ ବର୍ଷ ଅପେକ୍ଷା ସ୍ୱତନ୍ତ୍ର ଥିଲା । ପ୍ରଥମ କ୍ୟାମ୍ପ ଢେଙ୍କାନାଳରୁ ଆରମ୍ଭ ହେଲା । ପ୍ରାୟ ଅଧିକାଂଶ ଗଡ଼ଜାତ ଅଞ୍ଚଳର ରାଜା, ରାଜୁଡ଼ାଙ୍କ ଉଆସ ମାନଙ୍କରେ ନାଟକ ପ୍ରଦର୍ଶନ ଫଳରେ ଆର୍ଥିକ ସ୍ୱଚ୍ଛଳତା ବୃଦ୍ଧି ପାଇଲା । ଭ୍ରମଣ ସମୟରେ ସାମାଜିକ ନାଟକ 'ଧର୍ମପତ୍ନୀ' କାର୍ତ୍ତିକ କୁମାର ଘୋଷଙ୍କ ନିର୍ଦ୍ଦେଶନାରେ ବଉଦ ରାଜବାଟୀରେ ପ୍ରଥମାଭିନୟ ହେଲା । ମୌଳିକ ଓଡ଼ିଆ ସାମାଜିକ ନାଟକ ଭାବେ ଅନ୍ନପୂର୍ଣ୍ଣାର ଏହା ଦ୍ୱିତୀୟ ନାଟକ । ବିଶିଷ୍ଟ ଔପନ୍ୟାସିକ ଲକ୍ଷ୍ମୀଧର ନାୟକ ଥିଲେ ତାର ରଚୟିତା । ମାଷ୍ଟର ମାଣିଆ ସେଥିରେ ରାୟବାହାଦୂର ଚରିତ୍ରରେ ଅଭିନୟ କରିଥିଲେ । ଭ୍ରମଣର ଶେଷ କ୍ୟାମ୍ପ ନୟାଗଡ଼ ରାଜାସାହେବଙ୍କ ଆହ୍ୱାନରେ ଦୁଇଦିନ ପାଇଁ ଆସି ୧୪ ଦିନ ଅଭିନୟ କରିବା ପାଇଁ ପ୍ରାୟ ଏକ ମାସ ରହିବାକୁ ପଡ଼ିଲା । ସ୍ଥାନୀୟ ହାଇସ୍କୁଲର ପ୍ରଧାନ ଶିକ୍ଷକଙ୍କ ଦ୍ୱାରା ଲିଖିତ ସାମାଜିକ ନାଟକ 'ପ୍ରେମଇତା ଭୁଲ' ସେହି ନୟାଗଡ଼ ମଞ୍ଚରେ ଅଭିନୀତ ହୋଇଥିଲା । ମାଷ୍ଟର ମାଣିଆ ସେଥିରେ ଗୋଟିଏ କଲେଜ ଛାତ୍ରର ଅପାଠୁଆ ଅଜା ଭୂମିକାରେ ଅଭିନୟ କରିଥିଲେ ।

ପରବର୍ତ୍ତୀ ୧୯୪୩ ମସିହାରେ ବର୍ଷାକାଳୀନ ବିଶ୍ରାମ ଏବଂ ନାଟ୍ୟଶିକ୍ଷା କେନ୍ଦ୍ର ଭାବେ ପୂର୍ବର ସେହି ଖୋର୍ଦ୍ଧା ସହରକୁ ନିରୂପଣ କରାଗଲା । କଳାକାରମାନେ

ଏକମାସ ଛୁଟିରେ ଯିବା ପୂର୍ବରୁ ଅନ୍ନପୂର୍ଣ୍ଣାର ସତ୍ତ୍ୱାଧିକାରୀ, ପରିଚାଳକ, ସଂଗଠକ, ନିର୍ଦ୍ଦେଶକ ଶ୍ରୀ ଘୋଷ ଓ ଶ୍ରୀ ମାଣିଆଙ୍କ ମଧ୍ୟରେ ବିଚାର ଆଲୋଚନା କରାଯାଇ କଟକ, ପୁରୀ ଓ ବ୍ରହ୍ମପୁରରେ ୩ଟି ସ୍ଥାୟୀ ରଙ୍ଗମଞ୍ଚ ଗଠନ କରାଯିବା ପାଇଁ ସ୍ଥିର ହେଲା । ଅନ୍ନପୂର୍ଣ୍ଣା ଥିଏଟର୍ ୩ଟି ଗ୍ରୁପ୍ A, B, C, ନାମରେ ରହିବ ଓ ଜଣେ ମାଲିକ ଓ ଜଣେ ମ୍ୟାନେଜର ପ୍ରତ୍ୟେକଟିର ପରିଚାଳନା ଦାୟିତ୍ୱ ନେବେ ବୋଲି ସ୍ଥିର କରାଗଲା । ଖୋର୍ଦ୍ଧା ରହଣୀ ସମୟରେ ଶ୍ରୀ ଘୋଷଙ୍କ ନିର୍ଦ୍ଦେଶନାରେ ଗୋଟିଏ ବଙ୍ଗଳାନୁବାଦ ନାଟକ 'ସେକ୍ରେଟେରୀ' ପ୍ରସ୍ତୁତ ପରେ ବହୁଦିନ ବାଦ୍ ଶ୍ରୀ ମାଣିଆ ବଙ୍ଗଳାନୁବାଦ ନାଟକ 'ପୋଷ୍ୟପୁତ୍ର' ଶିକ୍ଷା ଦେଲେ । ନାଟକର ମୁଖ୍ୟ ଚରିତ୍ର ଜମିଦାର ଭୂମିକାରେ ସେ ନିଜେ ଅଭିନୟ କଲେ ।

କଟକ ବକ୍ସିବଜାରସ୍ଥ ତିନିକୋଣିଆ ବଗିଚାରେ ପୂର୍ବରୁ ଥିବା ସିନେମା ହଲ ଘରଟି ଭାଙ୍ଗି ଯାଇ ସେଠାରେ 'ପ୍ରକାଶ' ନାମରେ ଅନ୍ୟ ଏକ ସିନେମା ହଲ ତିଆରି ହୋଇଥାଏ । ଅନ୍ନପୂର୍ଣ୍ଣା ଥିଏଟର୍ ତାକୁ ଭଡ଼ା ସୂତ୍ରରେ ନେଲେ । ୧୯୪୩ ମସିହା ନଭେମ୍ବର ୩ ତାରିଖରେ ମଞ୍ଚ ଉଦ୍‌ଘାଟନ ହେଲା ।

□ □ □



# ଷଷ୍ଠ ଅଧ୍ୟାୟ

## କଟକରେ ଅନ୍ନପୂର୍ଣ୍ଣା ଥିଏଟରର ପ୍ରଥମ ନାଟକ ଅଭିନୟ

ସେତେବେଳକୁ କଟକ ବାଙ୍କା ବଜାରରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ପୃଷ୍ଠପୋଷକତାରେ 'ଓଡ଼ିଶା ଥିଏଟର୍ସ' ଏବଂ କେତେକ ସରକାରୀ ଅମଲାଙ୍କ ଯୌଥ ପୃଷ୍ଠପୋଷକତାରେ 'ଭାରତୀ ଥିଏଟର୍ସ' ମାଣିକ ଘୋଷ ବଜାରରେ ଚାଳଘର ପେଣ୍ଡାଲ୍ କରି ଧାରାବାହିକ ନାଟକ ମଞ୍ଚସ୍ଥ ଦୁଇ ବର୍ଷ ପୂର୍ବରୁ କରି ଆସୁଥିଲେ । ତୃତୀୟ ଥିଏଟର୍ ଭାବେ ଅନ୍ନପୂର୍ଣ୍ଣା ଥିଏଟର୍ ପକ୍କା ପେଣ୍ଡାଲ୍‌ରେ ଅପୂର୍ବ ସାଜସଜ୍ଜାରେ ନାଟକ ଗୁଡ଼ିକ ଗୋଟିକ ପରେ ଗୋଟିଏ ମଞ୍ଚସ୍ଥ କଲେ । ନାଟ୍ୟପ୍ରେମୀ ଦର୍ଶକମାନଙ୍କ ପାଇଁ ପ୍ରତିଦ୍ୱନ୍ଦୀ ଭାବେ କଟକ ସହରରେ ତିନିଗୋଟି ଅନୁଷ୍ଠାନ ଧାରାବାହିକ ଭାବେ ସପ୍ତାହରେ ୬ ଦିନ ନାଟକ ମଞ୍ଚସ୍ଥ କଲେ । କଟକ ସହର ତଥା ଓଡ଼ିଶାର ନାଟ୍ୟାମୋଦୀ ବୁଦ୍ଧିଜୀବୀମାନଙ୍କ ମନରେ ବହୁ ବର୍ଷ ପୂର୍ବରୁ ଲୁପ୍ତ ହୋଇଯାଇଥିବା ଓଡ଼ିଆ ନାଟକ ସଂପର୍କରେ ଜାଗରଣ ସୃଷ୍ଟି ହେଲା । ସାମ୍ବାଦିକ, ସମାଲୋଚକ ଗଣ ନାଟକ ଗୁଡ଼ିକର ଭଲମନ୍ଦ ସଂପର୍କରେ ମତାମତ ପ୍ରକାଶ କଲେ । ଅନ୍ନପୂର୍ଣ୍ଣା ଥିଏଟର୍‌ରେ ବଙ୍ଗଳାନୁବାଦ ନାଟକଗୁଡ଼ିକର ପରିବେଷଣ କଟୁ ସମାଲୋଚନାର ଶରବ୍ୟ ହେଲା । ଟୁରିଙ୍ଗ୍ ସମୟରେ ଯେଉଁ ପ୍ରଚୁର ଅର୍ଥ ଆୟ ହେଉଥିଲା, ସ୍ଥାୟୀ ମଞ୍ଚରେ ତାହା ହ୍ରାସ ପାଇଲା । ସାମୟିକ ଆର୍ଥିକ ଅନଟନ ଅଭିନେତା, ଅଭିନେତ୍ରୀ ମାନଙ୍କୁ ବାଧିଲା । ପୁରୁଖା କଳାକାରମାନଙ୍କର ବିଶେଷ ଅସୁବିଧା ହେଲା । କଟକରେ ରହି ନିଜ ନିଜର ନାଟ୍ୟକୃତିର ପରିଚୟ ଦେବାର ଆଗ୍ରହ କମିଗଲା । କେତେକ ନୂତନ କିଛି ସୃଷ୍ଟି କରିବା ପାଇଁ ଆଗ୍ରହୀ ଥିଲେ ଓ ଆଉ କେତେକ ସ୍ଥାୟୀ ମଞ୍ଚରେ ସ୍ଥାୟୀ ଭାବରେ ରହି ଧାରାବାହିକ ଭାବରେ ନାଟକ ଅଭିନୟ କରିବାକୁ ପସନ୍ଦ କରୁଥିଲେ । ଏହି ଦୁଇ ଗୋଷ୍ଠୀ ମଧ୍ୟରେ ମାନସିକ ସ୍ତରରେ ଦ୍ୱନ୍ଦ ସୃଷ୍ଟି ହେଲା । ମାଣିଆ ପୁରୁଣା ଗୋଷ୍ଠୀକୁ ସମର୍ଥନ କରୁଥିଲେ ।

ଅନ୍ୟାନ୍ୟ ଅନୁଷ୍ଠାନର କେତେଜଣ ଖ୍ୟାତି ସମ୍ପନ୍ନ କଳାକାର ଅନ୍ନପୂର୍ଣ୍ଣା ଥିଏଟର୍ ପକ୍ଷରୁ ତିନିଗୋଟି ଅନୁଷ୍ଠାନ ଗଢ଼ାଯିବାର ପ୍ରଚାର ଶୁଣି ଏହି ଦଳରେ ଯୋଗଦେଲେ । ପାର୍ଟିରେ ଆଗରୁ ଥିବା ଗୋଷ୍ଠୀ ଗତ କନ୍ଦଳ ବଢ଼ିଲା । ଅନ୍ୟାନ୍ୟ ପ୍ରତିଷ୍ଠିତ ମଞ୍ଚରୁ ଖ୍ୟାତି ସମ୍ପନ୍ନ କଳାକାରଙ୍କୁ ଅନ୍ନପୂର୍ଣ୍ଣାରେ ରଖିବାଟାକୁ ମାଷ୍ଟର ମାଣିଆ ପସନ୍ଦ କରିନଥିଲେ । କାରଣ ଅନ୍ୟ ଅନୁଷ୍ଠାନରୁ କଳାକାର ମାନଙ୍କୁ ଆଣି ସେ ଅନୁଷ୍ଠାନକୁ ଦୁର୍ବଳ କରିଦେବାର ସେ ପକ୍ଷପାତୀ ନଥିଲେ । ମାତ୍ର ତାଙ୍କର ପ୍ରସ୍ତାବ ଗ୍ରହଣୀୟ ହେଲାନାହିଁ । ଏଣୁ ସେ ଏହି ଘଟଣାବଳୀର ଜଣେ ନୀରବ ଦର୍ଶକ ସାଜିଲେ ।

ସେତେବେଳର କଲେଜ ଛାତ୍ର ଶ୍ରୀ ମନୋରଞ୍ଜନ ଦାସ୍‌ଙ୍କ ଲିଖିତ ନାଟକ 'ଯୌବନ' ଓଡ଼ିଶା ଥିଏଟର୍ସର ପ୍ରଖ୍ୟାତ କଳାକାର ସାମୁଏଲ୍ ସାହୁ (ବାବି)ଙ୍କ ନିର୍ଦ୍ଦେଶନାରେ ପ୍ରସ୍ତୁତ ହେଲା । 'ଯୌବନ' ନାଟକର ଚରିତ୍ର ବଣ୍ଟନ ସମୟରେ ଶ୍ରୀ ସାହୁ ପୁରାତନ ଓ ପୁରୁଖା ଅଭିନେତା-ଅଭିନେତ୍ରୀଙ୍କୁ ବାଦ୍ ଦେଇ ଦେଲେ । ଫଳରେ ଦଳର କଳାକାରମାନଙ୍କ ମଧ୍ୟରେ ଆଉ ଗୋଟିଏ ତୃତୀୟ ଗୋଷ୍ଠୀ ମୁଣ୍ଡ ଟେକିଲା ।

'ଯୌବନ' ନାଟକରେ ଖଳ ଚରିତ୍ର ଭୂମିକାରେ ନିଜେ ନିର୍ଦ୍ଦେଶକ ସାହୁ, ନାୟକ ଚରିତ୍ରରେ ଶ୍ରୀ ଭୋଲାନାଥ ଦାସ୍, ହାସ୍ୟରସ ଭୂମିକାରେ ଶ୍ରୀ ବେଣୁଧର ପଟ୍ଟନାୟକ, ରାୟ ବାହାଦୂର ଭୂମିକାରେ ମଧୁଦତ୍ତ, କ୍ୟାପ୍‌ଟେନ୍ ରାୟ ଭୂମିକାରେ ଶ୍ରୀ ବିଦ୍ୟାଧର ମହାପାତ୍ର, ସ୍ୱାମିଜୀ ଚରିତ୍ରରେ ଏ ଲେଖକ ଅଭିନୟ କରିଥିଲେ । ନାରୀ ଚରିତ୍ରରେ ନବାଗତା ସାବିତ୍ରୀ ଚୌଧୁରୀ, ପାର୍ଶ୍ୱନାୟିକା ଭୂମିକାରେ ନିର୍ମଳା (ବୁଚି) ଅଭିନୟ କଲେ । ବିଦ୍ୟାଧର ମହାପାତ୍ର ଅନ୍ନପୂର୍ଣ୍ଣା ଥିଏଟର୍‌କୁ ଫେରିଆସିଲେ । କଟକର ସ୍ଥାୟୀ ବାସିନ୍ଦାଙ୍କ ପକ୍ଷେ କଟକରୁ ଦୀର୍ଘଦିନ ଅନୁପସ୍ଥିତ ରହିବା ସମ୍ଭବ ହେଉନଥିଲା । ସ୍ଥାୟୀ ନିର୍ଦ୍ଦେଶକ କାର୍ତ୍ତିକ ବାବୁ ନାଟ୍ୟଶିକ୍ଷକ ଦାୟିତ୍ୱ ନେଲେ । ଅସ୍ଥାୟୀ ଭାବେ ଦେଖାଦେଇଥିବା ତୃତୀୟ ଗୋଷ୍ଠୀର ପ୍ରଭାବ ମଧ୍ୟ ମଉଳି ଗଲା । ଫଳରେ ଚରିତ୍ର ବଣ୍ଟନରେ ଶ୍ରୀ ମାଣିଆ 'ମିଷ୍ଟର'ରେ ଖଳଚରିତ୍ରରେ ଭୋଳାନାଥ ଦାସ ନାୟକ ଚରିତ୍ରରେ କାଶୀନାଥ ଦାସ ନାୟକ ଚରିତ୍ରରେ କାଶୀନାଥ ସାହୁଙ୍କୁ ବାଛିଲେ । ଯୁବ କଳାକାରମାନେ ସମୟେ ସମୟେ ଭଲ ବ୍ୟବହାର ଦେଖାନ୍ତି ନାହିଁ । ମାଷ୍ଟର ମାଣିଆ ସେଥିରେ ବିବ୍ରତ ହୁଅନ୍ତି ନାହିଁ । ତାହାକୁ ଧୈର୍ଯ୍ୟରସହ ଗ୍ରହଣ କରି ନିଅନ୍ତି ।

ଭ୍ରମଣ ସମୟରେ ମାଷ୍ଟର ମାଣିଆଙ୍କ ରାଧାକୃଷ୍ଣ ଥିଏଟର୍ ଅମଳର ଜଣେ ପୁରାତନ କଳାକାର ବନ୍ଧୁ ଶ୍ରୀ ଶ୍ୟାମସୁନ୍ଦର ଶତପଥୀଙ୍କର ପାରଳାଖେମୁଣ୍ଡି କ୍ୟାମ୍ପରେ ମୃତ୍ୟୁ ହେଲା । ତାଙ୍କର ମୃତ୍ୟୁ ମାଣିଆଙ୍କୁ ବ୍ୟଥିତ କରିଥିଲା । ୧୯୪୪ ଜୁଲାଇ ମାସ ବେଳକୁ ପାର୍ଟି ସ୍ଥାୟୀ ରଙ୍ଗମଞ୍ଚ କଟକକୁ ଫେରିଆସିଲା । ଏହାପରେ ସବୁ କଳାକାରମାନଙ୍କୁ ଏକମାସ ଛୁଟି ଦିଆଯାଏ । ମାତ୍ର ଏଥର ଯାହାର ଛୁଟି ନିହାତି ଦରକାର, ତାକୁ ହିଁ ଛୁଟି ଦିଆଗଲା । କଟକରେ ପାର୍ଟି ପହଞ୍ଚିବାର କିଛି ଦିନ ପରେ ନବାଗତ କଳାକାର ଭୋଳାନାଥ ଦାସ୍, ଦଳର ଅନ୍ୟତମ ନୃତ୍ୟାଭିନେତ୍ରୀ ସୁରେଖା (ସର) ଓଡ଼ିଶା ଥିଏଟର୍ସକୁ ଚାଲିଗଲେ ।

'ଯୌବନ' ନାଟକଟିର ଚରିତ୍ର ବଣ୍ଟନରେ ପୁନରାୟ ସାମାନ୍ୟ ପରିବର୍ତ୍ତନ କରାଗଲା । ଖଳନାୟକ ଚରିତ୍ରରେ ନିର୍ଦ୍ଦେଶକ ଶ୍ରୀ ଘୋଷ ଅଭିନୟ କଲେ ।

ସେତେବେଳକୁ 'ଭାରତୀ ଥିଏଟର୍ସ' ବନ୍ଦ ହୋଇଯାଇଥାଏ । ଓଡ଼ିଶା ଥିଏଟର୍ସର 'ଭାତ' ନାଟକ ମଞ୍ଚସ୍ଥ ହେଉଥାଏ । ତାର କେତେ ସପ୍ତାହ ପରେ 'ଯୌବନ' ନାଟକ ଅନ୍ନପୂର୍ଣ୍ଣା ଥିଏଟର୍‌ରେ ପୁନଶ୍ଚ ଆତ୍ମପ୍ରକାଶ କଲା । ସମାଲୋଚକମାନଙ୍କ ମତରେ 'ଭାତ'ର ଲୋକପ୍ରିୟତା କୁ 'ଯୌବନ' କ୍ଷୁର୍ଣ୍ଣ କରିବାରେ ସମର୍ଥ ହୋଇଥିଲା । ଅନ୍ନପୂର୍ଣ୍ଣା ଥିଏଟର୍ ବଙ୍ଗଳାନୁବାଦ ନାଟକକୁ ଉତ୍ସାହିତ କରୁଛି ବୋଲି ଯେଉଁ ସମାଲୋଚନା ହେଉଥିଲା ତାହା କ୍ରମଶଃ ଦୂରେଇଗଲା ।

ନାଟ୍ୟରତ୍ନାକର ଶ୍ରୀ ଅଶ୍ୱିନୀ କୁମାର ଘୋଷ, ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ନାଟ୍ୟପ୍ରେମୀଙ୍କର ଚାହିଦାନୁଯାୟୀ ତାଙ୍କର ଲେଖାର ରଙ୍ଗ ପରିବର୍ତ୍ତନ କଲେ । ସାଧାରଣ କଥିତ ଗାଉଁଲି ଭାଷାରେ ସଂଳାପ ନେଇ 'ବନ୍ଧୁ ମହାନ୍ତି' ନାଟକ ରଚନା କଲେ । ଶ୍ରୀ କାର୍ତ୍ତିକ ଘୋଷ ନିଜେ ଏହି ନାଟକଟିକୁ ନିର୍ଦ୍ଦେଶନା ଦେଲେ । ନାଟକ ପ୍ରସ୍ତୁତି ଚାଲିଲା । ଶ୍ରୀ ମାଣିଆ ମୁଖ୍ୟ ଚରିତ୍ର 'ବନ୍ଧୁ ମହାନ୍ତି' ଭୂମିକାରେ ଅଭିନୟ କଲେ ।

## 'ବି' ଗ୍ରୁପ୍ ପରିକଳ୍ପନାକୁ ବିରୋଧ

ଓଡ଼ିଶା ଥିଏଟର୍ସରେ 'ଭାତ' ନାଟକ ସଫଳତାର ସହ ଏକ ଶତ ରଜନୀ ଅଭିନୟ କରାଯିବା ପରେ 'ଜୟନ୍ତୀ ଉତ୍ସବ' ପାଳନକରିବାକୁ ମୁଖ୍ୟ କଳାକାର ବୃନ୍ଦ ପ୍ରସ୍ତାବ ଦେଲେ । ଏହି ଘଟଣା ଉପରେ ପ୍ରତିଷ୍ଠାତା କାଳିବାବୁଙ୍କ ସହ ମତଭେଦ ହୋଇ ଧର୍ମଘଟ ହେଲା । ଏହାର ସୁଯୋଗ ନେଇ ଅନ୍ନପୂର୍ଣ୍ଣାର କର୍ମକର୍ତ୍ତା ମାନେ 'ବି' ଗ୍ରୁପ୍ ଗଢ଼ିବାର କଳ୍ପନାକୁ ରୂପାୟିତ କରି ଓଡ଼ିଶା ଥିଏଟର୍ସର କଳାକାରମାନଙ୍କୁ ଏଥିରେ ଯୋଗ ଦେବା ପାଇଁ ଆମନ୍ତ୍ରଣ କଲେ । ଶ୍ରୀ ମାଣିଆ ଏଥିରେ ସହମତ ହୋଇନଥିଲେ । ତାଙ୍କ ପ୍ରସ୍ତାବ ଗ୍ରହଣ କରାନଯିବାରୁ ସେ ନୀରବ ରହିଲେ । ସେତେବେଳକୁ ପୁରୀରେ ପେଣ୍ଡାଲ୍ ତିଆରି କାମ ଚାଲିଥାଏ । ଅନ୍ନପୂର୍ଣ୍ଣା ଥିଏଟର୍ କେନ୍ଦ୍ରାପଡ଼ାରେ ବଡ଼ କୋଠା ନିକଟରେ ପେଣ୍ଡାଲ୍ ପ୍ରସ୍ତୁତ କରି ନାଟକ ପ୍ରଦର୍ଶନ କଲେ ।

## କେନ୍ଦ୍ରପଡ଼ା ବଡ଼ କୋଠାର ଧ୍ୱଂସାବଶେଷ ସ୍ମରଣେ

ଚଳିତ ଶତାବ୍ଦୀର ପ୍ରଥମ ଦଶକରୁ ଓଡ଼ିଆ ମଞ୍ଚ ଓ ନାଟକକୁ ସୁପ୍ରତିଷ୍ଠିତ କରିବା ପାଇଁ ଯେଉଁମାନେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ ସେମାନଙ୍କ ମଧ୍ୟରେ ନରେନ୍ଦ୍ର ପରିବାରର ଶ୍ରୀ ଗୋବିନ୍ଦ ଚନ୍ଦ୍ର ଶୂରଦେଓ ଅଗ୍ରଗଣ୍ୟ । ସେ ରାଜଗାଦିର ପ୍ରଲୋଭନ ତ୍ୟାଗ କରି ଶ୍ରୀ ଗୋବିନ୍ଦ ରାସ ଦଳର ପ୍ରତିଷ୍ଠାକଲେ । ସେହି ଶ୍ରୀଗୋବିନ୍ଦ

ରାସ ଦଳ ଆଜି ବିଲୁପ୍ତ । କେନ୍ଦ୍ରାପଡ଼ାର ସୁପରିଚିତ ବଡ଼ କୋଠାର ସେ ଥିଲେ ମାଲିକ, ଯାହାର ବିଭବ ଆଜି ଆଉ ନାହିଁ । ସେହି ପରିବାରର ଉତ୍ତରାଧିକାରୀ ମାନେ ଏହି କୋଠାର ପଥର ବିକ୍ରି କରି କୌଣସି ମତେ ଏବେ ଦୈନନ୍ଦିନ ଗୁଜରାଣ ମେଣ୍ଟାଉଛନ୍ତି । ଅନ୍ୟମାନେ କିଏ କୁଆଡ଼େ ବିସ୍ମୃତି ଗର୍ଭରେ ଲୋପ ପାଇ ଗଲେଣି । କେନ୍ଦ୍ରାପଡ଼ାରେ ଅବସ୍ଥାନ କାଳରେ ମାଣିଆଙ୍କର ବହୁ କଳାକାରଙ୍କ ସହ ସାକ୍ଷାତ୍ ହେଲା । ସେମାନେ ଆଜି ବିଭିନ୍ନ କାରଣରୁ କଳାସଂସ୍କୃତି ଠାରୁ ଦୂରେଇ ରହିଛନ୍ତି । ଏହି କଥା ଚିନ୍ତା କରି ମାଷ୍ଟର ମାଣିଆଙ୍କ ମନ ଆନ୍ଦୋଳିତ ହେଲା । ମାଷ୍ଟର ମାଣିଆଙ୍କର ନିର୍ଦ୍ଦିଷ୍ଟ ମତ ଥିଲା ଯେ ଯୁଗର ପ୍ରଗତି ସଙ୍ଗେ ସଙ୍ଗେ ନୂତନତ୍ୱର ସୃଷ୍ଟି ଅବଶ୍ୟ ଅଭିନନ୍ଦନୀୟ କିନ୍ତୁ ପୁରାତନକୁ ସମ୍ପୂର୍ଣ୍ଣ ରୂପେ ଭୁଲିଯିବା ଆମ ସଂସ୍କୃତିର ପରିପନ୍ଥୀ ।

## ପଟ୍ଟାମୁଣ୍ଡାଇରେ କ୍ୟାମ୍ପ

ପଟ୍ଟାମୁଣ୍ଡାଇରେ ଥିବା ସମୟରେ ମାଣିଆ ଭୀଷଣ ଭାବେ ପୀଡ଼ିତ ହେଲେ । ଡ଼ାକ୍ତରଙ୍କ ପରାମର୍ଶ କ୍ରମେ ତାଙ୍କୁ କଟକ ବଡ଼ ଡ଼ାକ୍ତର ଖାନାକୁ ସ୍ଥାନାନ୍ତରିତ କରାଗଲା । ସେତେବେଳେ କଟକ ପେଣ୍ଡାଲ୍‌ରେ ଓଡ଼ିଶା ଥିଏଟର୍ସର ୮/୧୦ ଜଣ ପ୍ରଭାବଶାଳୀ ଅଭିନେତା ଅଭିନେତ୍ରୀ ଥିଲେ । ଲିଙ୍ଗରାଜ ନନ୍ଦ ମୁଖ୍ୟ ପରିଚାଳକ, ରାଜକିଶୋର ମହାନ୍ତି ସହକାରୀ ପରିଚାଳକ ଓ କେତେକ ନୂଆ ନୂଆ ଅଭିନେତା, ଅଭିନେତ୍ରୀ ସଂଗ୍ରହ କରି ପ୍ରତିଷ୍ଠାତା ଦାଶ୍, ମ୍ୟାନେଜର ବାଉରି ବନ୍ଧୁ ମହାନ୍ତି ଓ ନିର୍ଦ୍ଦେଶକ କାର୍ତ୍ତିକ ବାବୁଙ୍କ ସମର୍ଥନରେ ନୂତନ ନାଟ୍ୟକାର ଶ୍ରୀ ରାମଚନ୍ଦ୍ର ମିଶ୍ରଙ୍କ ଲିଖିତ 'ମ୍ୟାନେଜର୍' ନାଟକ ପ୍ରସ୍ତୁତ ଚାଲିଛି । ଏହି ଘଟଣା ଜାଣି ତାଙ୍କର ଶାରୀରିକ ଅସୁସ୍ଥତା ସାଙ୍ଗକୁ ମାନସିକ ଅସୁସ୍ଥତା ମଧ୍ୟ ବୃଦ୍ଧି ପାଇଲା । ବଡ଼ ଡାକ୍ତରଖାନାରେ ଏକମାସ ଧରି ଚିକିତ୍ସା ପରେ ସେ ନିଜ ଗାଁକୁ ଚାଲିଗଲେ । ଗୋଟିଏ ମାସ ଗାଁରେ ବିଶ୍ରାମ ନେଇ ବ୍ରହ୍ମପୁର କ୍ୟାମ୍ପରେ ଯୋଗଦେଲେ ।

'ବି' ଗ୍ରୁପ୍‌କୁ କେନ୍ଦ୍ର କରି ଅନ୍ନପୂର୍ଣ୍ଣାର ପୁରୁଣା ଓ ପୁରୁଖା କଳାକାରମାନଙ୍କ ମଧ୍ୟରେ ଆଲୋଚନା ହେଲା । 'ବି'ଗ୍ରୁପ୍ ଗଢ଼ାଯିବାରେ ଆପତ୍ତି ନଥିଲା କିନ୍ତୁ ଯେଉଁମାନଙ୍କୁ ନେଇ ତାହା ଗଢ଼ାଗଲା ସେଥିରେ ଅନେକ ଅସନ୍ତୁଷ୍ଟ ହେଲେ । ଦୁଇମାସ ପରେ କ୍ୟାମ୍ପରେ ଯୋଗ ଦେବାପରେ ସେ ଏ ଘଟଣାକୁ ଅଧିକ ବଢ଼ିବାର ସୁଯୋଗ ଦେଲେ ନାହିଁ । ଯଦିଓ ସେ ମାଲିକ ଓ ପରିଚାଳକଙ୍କ ନିଷ୍ପତ୍ତିର ଖୋଲା ପ୍ରତିବାଦ କରିବାକୁ ପସନ୍ଦ କଲେ ନାହିଁ, ତାଙ୍କର ବ୍ୟକ୍ତିଗତ ପ୍ରଭାବ ବିସ୍ତାର କରି ଅସନ୍ତୋଷ ଦୂର କରିବାରେ ସହାୟକ ହେଲେ ।

## ମୂଳ ଥିଏଟର୍‌କୁ 'ଏ' ଗ୍ରୁପ୍ ନାମରେ ଘୋଷଣା : ପୁରୀରେ ସ୍ଥାୟୀ ପେଣ୍ଡାଲ

ପୁରୀରେ ସ୍ଥାୟୀ ଭାବରେ ରହିବା ପରେ ସେ ପ୍ରତି ସକାଳ ଓ ସନ୍ଧ୍ୟାରେ ନିୟମିତ ଭାବେ ଜଗନ୍ନାଥଙ୍କ ଦର୍ଶନ କରିବାର ସୁଯୋଗ ପାଇଲେ । ରାଧାକୃଷ୍ଣ ଥିଏଟର୍ ଓ ବନମାଳୀ ଆର୍ଟ ଥିଏଟର୍ ସମୟର ପୁରାତନ ବନ୍ଧୁ ବଲାଇ ଚାନ୍ଦ ବାନାର୍ଜୀଙ୍କ ସହ ତାଙ୍କର ସାକ୍ଷାତ୍ ହେଲା । ଶ୍ରୀ ବାନାର୍ଜୀ ବନମାଳୀ ଆର୍ଟ ଥିଏଟର୍ ଛାଡ଼ିବା ପରେ ଗଡ଼ଜାତ ଅଞ୍ଚଳର କେଉଁଝର, ଦେବଗଡ଼, କଳାହାଣ୍ଡି ପ୍ରଭୃତି ରାଜ ଉଆସରେ ସ୍ଥାୟୀ ଭାବେ ନାଟ୍ୟ ଶିକ୍ଷକତା କରୁଥିଲେ । ବର୍ଷର ୯ମାସ ରାଜା, ରାଜୁଡ଼ାଙ୍କ ଗହଣରେ ଅତିବାହିତ କରି ଗ୍ରୀଷ୍ମଋତୁ ଆରମ୍ଭରେ ସେ ପୁରୀ ଚାଲି ଆସନ୍ତି । ପୁରୀ ପେଣ୍ଡାଲ୍‌ର ଜମି ମାଲିକ ଉତ୍ତର ପାର୍ଶ୍ୱ ମଠ ମହନ୍ତଙ୍କର ସେ ପୂର୍ବପରିଚିତ ଅତିଥି । ଅନ୍ନପୂର୍ଣ୍ଣା ସହ ଚୁକ୍ତି ସମୟରେ ମହନ୍ତ ବଲାଇଚାନ୍ଦଙ୍କୁ ଗୋଟିଏ କୋଠରୀ ଦେବାର ବ୍ୟବସ୍ଥା କରିଥିଲେ । ତେଣୁ ବଲାଇବାବୁଙ୍କ ପାଇଁ ଅନ୍ନପୂର୍ଣ୍ଣା କର୍ତ୍ତୃପକ୍ଷ ଗୋଟିଏ କୋଠରୀ ଛାଡ଼ି ଦେଇଥିଲେ । ଦୁଇବନ୍ଧୁଙ୍କ ମଧ୍ୟରେଆଳାପ ଆଲୋଚନା ଓ ଭାବ ବିନିମୟ ଅତ୍ୟନ୍ତ ଆନ୍ତରିକତାପୂର୍ଣ୍ଣ ଥିଲା । ଏଭଳି ସୁସମ୍ପର୍କ ବାସ୍ତବିକ ଅନୁକରଣୀୟ । ଶ୍ରୀ ବାନାର୍ଜୀ ଜଣେ ଆଇନଜ୍ଞ ଓ ଉଚ୍ଚଶିକ୍ଷିତ । ମାତ୍ର ମାଷ୍ଟର ମାଣିଆ ଜଣେ ଦରପାଠୁଆ । ସେମାନଙ୍କ ମଧ୍ୟରେ କେବେ ଭେଦଭାବ ଥିବାର ଦେଖାଯାଏ ନାହିଁ । ମାଷ୍ଟର ମାଣିଆ ପ୍ରତିଦିନ ରାଜମିସ୍ତ୍ରୀ, ମୂଲିଆ ଓ ଇଟା, ବାଲି ଓ ସିମେଣ୍ଟ ଆଦି ସଂଗ୍ରହ କରି କାନ୍ଥ ଉଠାଇବା କାମ ତଦାରଖ କରନ୍ତି ଏବଂ ପେଣ୍ଡାଲ ସାମନାରେ ବିଭିନ୍ନ ଫୁଲଗଛ ଲଗାଇବାରେ ସମୟ ବିତାନ୍ତି । ସେପ୍ଟେମ୍ବର ମାସ ଭିତରେ ତିନିଗୋଟି ନୂତନ ନାଟକ 'ଜମିଦାର', 'ମୁକ୍ତି' ଓ 'ଚଷାଝିଅ' ଅଭିନୀତ ହେଲା, କାର୍ତ୍ତିକ ଘୋଷଙ୍କ ନିର୍ଦ୍ଦେଶନାରେ । ତାଙ୍କ ପାଇଁ ଚରିତ୍ର ଉପଯୋଗୀ ଥିଲେ ମଧ୍ୟ ସେ କୌଣସି ନାଟକରେ ଅଭିନୟ କଲେ ନାହିଁ । ଅନ୍ୟମାନଙ୍କ କଳାକୃତି ପ୍ରଦର୍ଶନ କରିବା ପାଇଁ ସେ ସୁଯୋଗ ଦେଇଥିଲେ ।

## 'କଳାପାହାଡ଼' ଓ 'କୋଣାର୍କ' ନାଟକ ଅଭିନୟ

ପୁରୀ ସହରର ନାଟ୍ୟପ୍ରେମୀ ମାନେ ପୁରାତନ ପରମ୍ପରାକୁ ଭୁଲି ନଥିଲେ । ସାମାଜିକ ନାଟକର ହାୱା ଦର୍ଶକମାନଙ୍କୁ ପ୍ରଭାବିତ କରିଥିଲେ ମଧ୍ୟ ସେଇ ପୁରାତନ ନାଟକ 'କଳାପାହାଡ଼' ଓ 'କୋଣାର୍କ' ଦେଖିବାପାଇଁ ପ୍ରବଳ ଆଗ୍ରହ ଥିଲା । ଏହି ନାଟକ ଦୁଇଟିରେ ଶ୍ରୀ ବାନାର୍ଜୀ କଳାପାହାଡ଼ ଓ ବିଶୁ ମହାରଣା ଚରିତ୍ରରେ ଏବଂ ଶ୍ରୀ ମାଣିଆ ମୁକୁନ୍ଦଦେବ ଓ ନରସିଂହଦେବ ଭୂମିକାରେ ଅଭିନୟ କରିବାକୁ ସମ୍ମତି ଦେଇଥିଲେ ।

ସାତଦିନ ପୂର୍ବରୁ ପ୍ରଚାର କରାଗଲା । ପୁରୀ ସହରରେ ବଲାଇ ବାବୁ, ମାଣିଆଙ୍କ ଯୁଗର ବହୁ ସୌଖୀନ୍ କଳାକାର ଥିଲେ ଏବଂ ବହୁ ବୁଦ୍ଧିଜୀବୀ ନାଟ୍ୟପ୍ରେମୀ ମଧ୍ୟ ଥିଲେ । ଏ ଦୁଇ କଳାକାରଙ୍କ ବହୁ ବର୍ଷପରେ ଗୋଟିଏ ନାଟକରେଦେଖିବାର ସୁଯୋଗ ମିଳିଲା । ଏହି ନାଟକ ଦେଖିବା ପାଇଁ ପ୍ରବଳ ଜନସମାବେଶ ହେଲା । ଏପରିକି ନାଟକ ଆରମ୍ଭ ହେବାର ବହୁ ପୂର୍ବରୁ ଟିକେଟ୍ ମିଳିଲା ନାହିଁ । ଉଭୟ ଚରିତ୍ରକୁ ରୂପ ଦେବାରେ ଏକୁ ଆରେକ ବଳିୟାନ । ସେମାନଙ୍କର ଅଭିନୟ ଦର୍ଶକମାନଙ୍କୁ ବିଶେଷ ପ୍ରଭାବିତ କରିଥିଲା । କେତେ ଘଣ୍ଟା ପାଇଁ ସେ ଦୁହେଁ ବାସ୍ତବ ଦୁନିଆରୁ ଦୂରେଇ ଯାଇ କଳ୍ପନା ଜଗତରେ ଗୋଟିଏ ରାକ୍ଷସ ଓ ଦେବତା ରୂପରେ ମଞ୍ଚରେ ଅବତରଣ କରିଥିଲେ । ମଞ୍ଚରେ ସେମାନଙ୍କର ଛଳନା ବିହୀନ ଅଭିନୟର ପବିତ୍ରତା, ଏକାଗ୍ରତା ଓ ଭାବବିହ୍ୱଳତା ବାସ୍ତବିକ ଅବର୍ଣ୍ଣନୀୟ ।

## ପୁରୀର ଭାଙ୍ଗ

ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଶ୍ରୀ ମାଣିଆ ପ୍ରତିଦିନ ଅଳ୍ପଟିକିଏ ଭାଙ୍ଗ ଖାଇବା ଆରମ୍ଭ କରିଥିଲେ । ଏହି ଅଭ୍ୟାସ ପୁରୀରେ ସ୍ଥାୟୀ ଭାବରେ ଅନ୍ନପୂର୍ଣ୍ଣାରେ ରହିବା ପରେ ହୋଇଥିଲା । ସେଠି ତାଙ୍କର ବହୁତ ପୁରାତନ କଳାକାରଙ୍କ ସହ ଦେଖାହୁଏ । ପୁରୀ ଜଳବାୟୁରେ କୁଆଡ଼େ ଭାଙ୍ଗ ନଖାଇଲେ ସ୍ୱାସ୍ଥ୍ୟ ଭଲ ରହେନାହିଁ ବୋଲି ଅନେକେ କୁହନ୍ତି । ଏହାର ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । ବିଭିନ୍ନ ମଠମନ୍ଦିର ମାନଙ୍କରେ ସଙ୍ଗୀତ ଆସରରେ ସେ ଯୋଗଦିଅନ୍ତି ।

## କାହାରିକୁ ଉପବାସ ରହିବା ପାଇଁ ଦିଅନ୍ତି ନାହିଁ

ନାଟକ ନିର୍ଦ୍ଦେଶନା ଓ ଅଭ୍ୟାସ ଦାୟିତ୍ୱ ଗ୍ରହଣ ନକରିଥିଲେ ମଧ୍ୟ ଅନୁଷ୍ଠାନର ସୁନାମ ରକ୍ଷା କରିବା ପାଇଁ ସେ ସବୁବେଳେ ତତ୍ପର ଥିଲେ । ଅନ୍ନପୂର୍ଣ୍ଣାକୁ ସେ ନିଜର ପରିବାର ଭାବେ ଗ୍ରହଣ କରିଥିଲେ ଓ ସବୁ ଭଲମନ୍ଦ ସେ ବୁଝାବୁଝି କରୁଥିଲେ । ଏଭଳିକି ଖାଦ୍ୟ ପାଇଁ କଣ ପ୍ରସ୍ତୁତ କରାଯିବ ଓ କେଉଁଥିରେ କାହାର ମାନ ଅଭିମାନ ରହୁଛି ତାହା ଅନୁସନ୍ଧାନ କରି ସେ ସମାଧାନ କରୁଥିଲେ । ସମସ୍ତେ ଖାଇସାରିବା ପରେ ମୁରବିଭାବରେ ସେ ଶେଷରେ ଖାଆନ୍ତି । କେହି ଅତିଥି ତଥା ନାଟ୍ୟକାର, ସଙ୍ଗୀତଜ୍ଞ ଆସିଲେ ସେମାନଙ୍କର ଚର୍ଚ୍ଚାର ଦାୟିତ୍ୱ ମଧ୍ୟ ସେ ସୁଚାରୁ ରୂପେ ତୁଲାଇଥାନ୍ତି ।

## ଅନ୍ନପୂର୍ଣ୍ଣା 'ଏ' ଓ 'ବି' ମଧ୍ୟରେ ସମ୍ପର୍କ ବିଚ୍ଛିନ୍ନ

କଟକର 'ବି' ଗ୍ରୁପ୍‌ର ଦ୍ୱିତୀୟ ନାଟକ 'ମୁଲିଆ' ବିଶେଷ ସଫଳତା ଲାଭକରିଥିଲା । 'ଏ' ଗ୍ରୁପ୍ ଯେ 'ବି' ଗ୍ରୁପ୍ ସୃଷ୍ଟି କରିଥିଲା ଏକଥା 'ବି'ଗ୍ରୁପ୍‌ର

କଳାକାରମାନେ ସ୍ୱୀକାର କରିବା ପାଇଁ ପ୍ରସ୍ତୁତ ନଥିଲେ । ଏପରି ଘଟିଛି 'ଏ' ଗ୍ରୁପ୍‌ର ମ୍ୟାନେଜର ବାଉରୀବନ୍ଧୁ ବାବୁ କଟକ 'ବି' ଗ୍ରୁପ୍‌ରୁ ସାମାନ୍ୟ ଟିକିଏ ସମ୍ମାନ ମଧ ପାଇଲେ ନାହିଁ । ଏଭଳି ଘଟଣାମାନ ମାଣିଆଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କଲା ।

୧୯୪୫ ମସିହା ନଭେମ୍ବର ମାସରୁ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ଆଠମଲ୍ଲିକ ରାଜାଙ୍କ ଆହ୍ୱାନରେ ନାଟକ ପ୍ରଦର୍ଶନ କରିବା ପାଇଁ ଉତ୍ତର ଓଡ଼ିଶା ଭ୍ରମଣ କରିବାକୁ ଗଲେ ।

## ପ୍ରତିଷ୍ଠାତାଙ୍କ ପକ୍ଷପାତିତାରେ ପ୍ରତିବାଦ

୧୯୪୬ ଏପ୍ରିଲ ମାସରେ ଜଣାଗଲା ଯେ 'ବି' ଗ୍ରୁପ୍‌ର ମ୍ୟାନେଜରଙ୍କୁ ପ୍ରତିଷ୍ଠାତା ଦାଶ୍ କ୍ଷମତା ପ୍ରାପ୍ତ ମ୍ୟାନେଜର ଭାବେ ରେଜିଷ୍ଟ୍ରୀ ଦଲିଲ୍ କରିଦେଇଛନ୍ତି । 'ଏ' ଗ୍ରୁପ୍ ପ୍ରତି, ତଥା ମ୍ୟାନେଜର ବାଉରି ବନ୍ଧୁ ବାବୁଙ୍କ ପ୍ରତି ଅବିଚାର କରିଥିବା ଯୋଗୁଁ ସମସ୍ତ କଳାକାର ସମୂହ ଭାବେ ଆନ୍ଦୋଳନ କଲେ । ମାଷ୍ଟର ମାଣିଆ ଏହି ଘଟଣାରେ ନୀରବ ରହିପାରିନଥିଲେ । ପ୍ରତିଷ୍ଠାତାଙ୍କୁ ଡ଼କାଇ ତାଙ୍କର ପକ୍ଷପାତ ନିଷ୍ପତ୍ତିକୁ ପ୍ରତ୍ୟାହାର କରିବାପାଇଁ ଅନୁରୋଧ କରିଥିଲେ । ପ୍ରତିଷ୍ଠାତା କହିଲେ ଯେ ପ୍ରତ୍ୟାହାର କଲେ ଅସୁବିଧା ଉପୁଜିବ ବରଂ 'ଏ' ଗ୍ରୁପ୍‌ର ପରିଚାଳନା ଦାୟିତ୍ୱ ମୁଁ ବାଉରି ବନ୍ଧୁଙ୍କ ନାମରେ ରେଜିଷ୍ଟ୍ରି କରିଦେଉଛି । ଏ ସମ୍ପର୍କରେ ଆନ୍ଦୋଳନ କାରୀମାନେ ମତାମତ ଦେବା ପୂର୍ବରୁ ବାଉରିବନ୍ଧୁ ବାବୁ ନିଜେ ଏଭଳି ପ୍ରସ୍ତାବକୁ ପ୍ରତ୍ୟାଖାନ କଲେ । ପରବର୍ତ୍ତୀ ସମୟ ଅନ୍ନପୂର୍ଣ୍ଣା 'ଏ' ଓ 'ବି' ଗ୍ରୁପ୍ ମଧ୍ୟରେ ଦଳଗତ ଓ ଗୋଷ୍ଠୀଗତ ବିଭେଦ ଉତ୍କଟ ହେଲା । ସେହିବର୍ଷ ମେ ମାସରେ ବାରିପଦାରୁ ଫେରି କଟକ ପେଣ୍ଡାଲରେ 'ଏ' ଗ୍ରୁପ୍ ଦୁଇମାସ ଅଭିନୟ ସାରି ପୁରୀ ଫେରିଗଲେ ।

ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କ ଲିଖିତ 'ଶ୍ରୀ ଲୋକନାଥ' ନାଟକ କାର୍ତ୍ତିକ ଘୋଷଙ୍କ ନିର୍ଦ୍ଦେଶନାରେ ମଞ୍ଚସ୍ଥ ହେଲା । ମାଷ୍ଟର ମାଣିଆ ଏଇ ନାଟକରେ 'ଦାସ ସାହେବ' ଚରିତ୍ରରେ ଅଭିନୟ କରିବାକୁ ପ୍ରସ୍ତାବ ଦିଆଯିବାରୁ ସେ ତାହା ଗ୍ରହଣ କରିଥିଲେ । ଘୋଷ ଓ ମାଣିଆଙ୍କ ମଧ୍ୟରେ ବହୁ ବର୍ଷର ବନ୍ଧୁତା ଥିଲା । ଶ୍ରୀ ମାଣିଆ ଜାଣିଥିଲେ ଯେ ଥିଏଟର୍ ପାଇଁ ସେ ଚାକିରୀ ଓ ପୈତୃକ ସମ୍ପତ୍ତି ହରାଇଛନ୍ତି । ସେହି ଉତ୍ସର୍ଗୀକୃତ ମହାନ୍ ନାଟ୍ୟକାରଙ୍କର ସମ୍ମାନ ପାଇଁ 'ଶ୍ରୀ ଲୋକନାଥ'ରେ ଅଭିନୟ କରିବାକୁ ସେ ସମ୍ମତ ହୋଇଥିଲେ ।

## ଏକ ଆଲୌକିକ ଘଟଣା

'ଶ୍ରୀଲୋକନାଥ' ପୁରୀରେ ଅପୂର୍ବ ସଫଳତା ହାସଲ କଲା । ନାଟକ

ଚାଲିବାର ସାତଦିନ ପରେ ଗୋଟିଏ ନାଗସାପ ଆସି ପେଣ୍ଡାଲ ପରିସର ଭିତରେ ବୁଲିବା ଦେଖାଗଲା । ଶ୍ରୀ ଲୋକନାଥ ଦେବଙ୍କ ବେଢ଼ା ପ୍ରାଚୀରର ଭାଙ୍ଗିଯାଇଥିବା ଅଂଶଟି ଅନ୍ନପୂର୍ଣ୍ଣା ଥିଏଟର୍ ତରଫରୁ ତିଆରି କରିବାକୁ ସ୍ଥିର ହେଲା ଓ ମାଷ୍ଟର ମାଣିଆ ଏହାର ଦାୟିତ୍ୱ ନେଲେ । ତାପରଠାରୁ ନାଗସାପ ଆଉ ଦେଖିବାକୁ ମିଳିଲା ନାହିଁ । ଏହାପରେ ନାଟ୍ୟକାର ରାମଚନ୍ଦ୍ର ମିଶ୍ରଙ୍କ ଲିଖିତ 'କବିସୂର୍ଯ୍ୟ' କାର୍ତ୍ତିକ ବାବୁଙ୍କର ନିର୍ଦ୍ଦେଶନାରେ ପ୍ରସ୍ତୁତ ହେଲା । ଅଶ୍ୱିନୀ ବାବୁଙ୍କର ସାମାଜିକ ନାଟକ 'ମାମଲତକାର'ରେ ସେ ମୁଖ୍ୟ ଚରିତ୍ରରେ ଅଭିନୟ କରିଥିଲେ ।

## ନିଖିଳ ଉତ୍କଳ ଅଭିନେତୃ ସଂଘ ପ୍ରତିଷ୍ଠା ଉଦ୍ୟମ

ମାଷ୍ଟର ମାଣିଆଙ୍କ ଜୀବନ ଭିନ୍ନ ଧାତୁରେ ଗଢ଼ା ହୋଇଥିଲା । ସରଳ, ଅମାୟିକ, ନିଷ୍କପଟ ଓ ଗର୍ବ-ଅହଂକାର ଶୂନ୍ୟ ଜୀବନ ଯାପନ ତାଙ୍କର ଜୀବନର ବୈଶିଷ୍ଟ୍ୟ ଥିଲା । କୌଣସି ପ୍ରକାର ବାଦ-ବିବାଦରୁ ଦୂରରେ ରହି ନାଟ୍ୟକଳା କ୍ଷେତ୍ରରେ ଉତ୍କର୍ଷତା ହାସଲ କରିବା ଥିଲା ତାଙ୍କ ଜୀବନର ମୂଳ ଲକ୍ଷ୍ୟ । ତାଙ୍କ ସମୟରେ କଳାକ୍ଷେତ୍ରରେ ରାଜନୀତି ପ୍ରବେଶ କରିନଥିଲା, ମାତ୍ର ସମୟର ବିବର୍ତ୍ତନ ଫଳରେ ନାଟ୍ୟଜଗତରେ ବହୁ ନୂଆ ନୂଆ ସମସ୍ୟା ଦେଖାଦେଲା । ନୂତନ ପିଢ଼ୀ ଓ ପୁରାତନ ପନ୍ଥୀଙ୍କ ମଧ୍ୟରେ ନୀତିଗତ ସଂଘର୍ଷ ଲାଗିରହିଲା । ଏମାନଙ୍କ ମଧ୍ୟରୁ କେତେକ ମାଲିକ ଓ ନିର୍ଦ୍ଦେଶକ ମାନଙ୍କ ସୌଜନ୍ୟରୁ ସବୁପ୍ରକାର ଫାଇଦା ଉଠାଇଲେ । ଏହା ଫଳରେ ଗୋଷ୍ଠୀ ବିବାଦ ବଢ଼ି ଆନ୍ଦୋଳନ ଓ ଧର୍ମଘଟର ଆକାର ଧାରଣ କଲା । କଳାକାରମାନେ ନିଜର ବିବେକାନୁମୋଦିତ ପନ୍ଥାରେ କାର୍ଯ୍ୟକରିବାରେ ବିଫଳ ହେବାରୁ ସେମାନଙ୍କ ସ୍ୱାର୍ଥର ସୁରକ୍ଷା ପାଇଁ ନିଖିଳ ଉତ୍କଳ ଅଭିନେତୃ ସଂଘ ଗଠନ ପାଇଁ ପ୍ରସ୍ତାବ କଲେ । ମାଷ୍ଟର ମାଣିଆ ପୁରାତନ ଗୋଷ୍ଠୀର ପ୍ରତିନିଧିତ୍ୱ କରୁଥିଲେ ମଧ୍ୟ ଏଭଳି ଏକ ପ୍ରସ୍ତାବ ପ୍ରତି ତାଙ୍କର ପୂର୍ଣ୍ଣ ସମର୍ଥନ ଥିଲା । ଦେଶର ବିଭିନ୍ନ ଅନୁଷ୍ଠାନର କଳାକାର ମାନଙ୍କ ପ୍ରତିନିଧି ଏହି ସଂଗଠନରେ ରହିବା ସ୍ଥିର ହେଲା । ଏଥିପାଇଁ ଏକ ସମ୍ମିଳନୀ ଡକାଗଲା । ଅନ୍ୟାନ୍ୟ ନାଟ୍ୟସଂସ୍ଥା ଯଥା ଓଡ଼ିଶା ଥିଏଟର୍ସ, କଟକ, ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ କଟକ, ଜଗନ୍ନାଥ ଥିଏଟର, ପୁରୀ; ଶାନ୍ତି ଥିଏଟର ବାଲୁଗାଁ, ବରଗଡ଼ ଥିଏଟର ସମେତ କଲିକତାର ବହୁ କଳାକାର ଏଥିରେ ଯୋଗଦେଲେ । ମାଷ୍ଟର ମାଣିଆଙ୍କ ସଭାପତିତ୍ୱରେ ଏହି ସମ୍ମିଳନୀ ଅନୁଷ୍ଠିତ ହେଲା । ଏଥିରେ ସ୍ଥିର ହେଲାଯେ ଆସନ୍ତା 'ମେ' ମାସରେ ଏକ ପୂର୍ଣ୍ଣ ଅଧିବେଶନ



ବସି ଅଭିନେତୃ ସଂଘକୁ ରେଜିଷ୍ଟ୍ରିଭୁକ୍ତ କରାଯିବ ଓ ଏହାର ସମ୍ବିଧାନ ଓ ନିୟମାବଳୀ ପ୍ରଣୀତ ହେବ ।

ଏଭଳି ସଂଗଠିତ ଉଦ୍ୟମକୁ ପ୍ରତିହତ କରିବା ପାଇଁ ମାଲିକମାନଙ୍କ ତରଫରୁ ଷଡ଼ଯନ୍ତ୍ର ହେଲା । ୧୯୪୬ ମସିହା ଡ଼ିସେମ୍ବର ମାସର ଏହି ଘଟଣା । ଯେଉଁ କଳାକର ମାନେ ସଂଘ ଗଠନ ପାଇଁ ନେତୃତ୍ୱ ନେଉଥିଲେ ସେମାନଙ୍କୁ ବିଭିନ୍ନ ଆଳ ଦେଖାଇ ଅନୁଷ୍ଠାନରୁ ବାହାର କରିଦିଆଗଲା । ଦଳରେ ଥିବା ପ୍ରଭାବଶାଳୀ ଓ ପୁରୁଖା ଅଭିନେତାମାନେ ପରିଚାଳକଙ୍କ ଠାରୁ ଅଧିକ ସୁବିଧା ହାସଲ କଲେ । ପ୍ରସ୍ତାବିତ ଅଧିବେଶନ କୁ ଜଣେ ବିଶିଷ୍ଟ ନେତାଙ୍କୁ ସଭାପତିତ୍ୱ କରିବାକୁ ଡ଼ାକିବା ପ୍ରସ୍ତାବକୁ ପୁରାତନ ଗୋଷ୍ଠୀ ବିରୋଧ କରି ଅଧିବେଶନ କରାଇ ଦେଲେ ନାହିଁ । ଫଳରେ କଳାକାର ମାନଙ୍କ ମଧ୍ୟରେ ପୁଣି ଗୋଷ୍ଠୀଗତ ବିବାଦ ମୁଣ୍ଡ ଟେକିଲା । ଏହି ସମୟରେ ଅନ୍ୟତମ ପ୍ରଖ୍ୟାତ କଳାକାର ଓ ନିର୍ଦ୍ଦେଶକ ନିରଞ୍ଜନ ଶତପଥୀ ଅନ୍ନପୂର୍ଣ୍ଣା ଦଳରେ ଯୋଗଦେଲେ । ତାଙ୍କର ପ୍ରବେଶକୁ ପୁରୁଖା ଦଳ ପସନ୍ଦ କଲେ ନାହିଁ । ଫଳରେ ଶତପଥୀ ପ୍ରଗତିକାମୀ ଗୋଷ୍ଠୀ ସହ ସାମିଲ ହେଲେ ।

# ସପ୍ତମ ଅଧ୍ୟାୟ

## କଳାକାର ଓ ନିର୍ଦ୍ଦେଶକଙ୍କ ମଧ୍ୟରେ ମତଭେଦ

୧୯୪୭ ମସିହାରେ ଦେଶ ସ୍ୱାଧୀନ ହେଲାବେଳକୁ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚର ଦୁଇଟି ଦଳ ମଧ୍ୟରେ ବିବାଦ ଲାଗି ରହିଥିଲା । ଦୁଇ ପରିଚାଳକଙ୍କ ମଧ୍ୟରେ କେତେବେଳେ ଶୀତଳ ଯୁଦ୍ଧ ତ ଆଉକେତେବେଳେ ବନ୍ଧୁତା, ଏହିପରି ଉଭୟ ଛକାପଞ୍ଝା ନୀତିରେ ରହିଲେ । ଏଭଳି ପରିସ୍ଥିତିରେ ନିର୍ଦ୍ଦେଶକ ଘୋଷ ମଧ୍ୟ ଦଳ ଛାଡ଼ିଲେ । ମାଷ୍ଟର ମାଣିଆ ନିରୁପାୟ ହୋଇ ରହିଗଲେ ।

ପ୍ରାୟ ଏକ ବର୍ଷ ପର୍ଯ୍ୟନ୍ତ ନୂଆ ନାଟକ ପ୍ରସ୍ତୁତ ହୋଇପାରିଲା ନାହିଁ । ନବାଗତ କଳାକାର ମାନଙ୍କୁ ପୁରାତନ କଳାକାରମାନେ ଉତ୍ସାହିତ କଲେ ନାହିଁ । ଅନ୍ୟାୟର ପ୍ରତିବାଦ ପାଇଁ ସ୍ୱର ଉତ୍ତୋଳନ କରୁଥିବା କଳାକାର ମାନେ ପୁରୁଣା ନାଟ୍ୟ ଶିକ୍ଷକମାନଙ୍କୁ ମାନିଲେ ନାହିଁ । ନୂତନ ନାଟକ ଶିକ୍ଷା ଦେବା ପାଇଁ ସେମାନଙ୍କ ଶିକ୍ଷକତାକୁ ମଧ୍ୟ ସ୍ୱୀକାର କଲେ ନାହିଁ । ଏହି ପରିପ୍ରେକ୍ଷିରେ ମାଷ୍ଟର ମାଣିଆ ମଧ୍ୟ ଏଥିରୁ ବାଦ ପଡ଼ିଲେ ନାହିଁ । ତାଙ୍କ ନିୟନ୍ତ୍ରଣ କୋହଳ ହୋଇଗଲା ।

## କାଶୀନାଥ ସାହୁଙ୍କ ପ୍ରତ୍ୟାଗମନ

ନାଟ୍ୟକାର ଭଞ୍ଜ କିଶୋର ପଟ୍ଟନାୟକଙ୍କ ଲିଖିତ 'ଗରିବ' ନାଟକର କାଶୀନାଥ ସାହୁ ନିର୍ଦ୍ଦେଶନା ଦେଲେ । ପରବର୍ତ୍ତୀ ନାଟକ ଅଶ୍ୱିନୀ କୁମାର ଘୋଷଙ୍କ ଲିଖିତ 'ଚଣ୍ଡାକୁଣୀ'କୁ ଲକ୍ଷ୍ମୀନାରାୟଣ ପାତ୍ର ନର୍ଦ୍ଦେଶନା ଦେଲେ । ଏହାପରେ ନାଟ୍ୟକାର ଲକ୍ଷ୍ମୀଧର ନାୟକଙ୍କ ଲିଖିତ 'ଲାଲ୍ ଚାବୁକ୍'କୁ କାଶୀନାଥ ସାହୁ ନିର୍ଦ୍ଦେଶନା ଦେଲେ । ଉପରୋକ୍ତ ତିନୋଟି ନାଟକରେ ମାଷ୍ଟର ମାଣିଆ କୌଣସି ଅଭିନୟ କଲେ ନାହିଁ । ପୁଅଘର ଚଳାଇବା ପାଇଁ ସମର୍ଥ ହେଲେ ବାପାଙ୍କର ପ୍ରୟୋଜନୀୟତା ଯେଭଳି ହ୍ରାସ ପାଏ, ମାଷ୍ଟର ମାଣିଆଙ୍କ ଅବସ୍ଥା ସେପରି ହେଲା । ତାଙ୍କ ଅଭିନୀତ ପୁରୁଣା ନାଟକ ଗୁଡ଼ିକ ଅଚଳ ହୋଇଗଲା । ତେଣୁ ସେ ଆଉ ଅଯଥା ଥିଏଟର୍‌ରେ ରହି ସମୟ କଟାଇବାକୁ ପସନ୍ଦ କଲେ ନାହିଁ । ଅନେକ ସମୟ ଛୁଟିରେ ରହିଲେ ।

## ଓଡ଼ିଆ ଚଳଚିତ୍ର ଶ୍ରୀ ଜଗନ୍ନାଥରେ ବିଶ୍ୱାବସୁର ଭୂମିକା

୧୯୪୮ ମସିହାରେ ଓଡ଼ିଶାର ୩ୟ ଯୌଥ ଚଳଚ୍ଚିତ୍ର ପ୍ରତିଷ୍ଠାନ 'ରୂପ ଭାରତୀ' ପ୍ରଯୋଜନାରେ 'ଶ୍ରୀ ଜଗନ୍ନାଥ' ଚଳଚ୍ଚିତ୍ର ପ୍ରସ୍ତୁତ ହେଲା । ମାଷ୍ଟର ମାଣିଆଙ୍କୁ ଶବର ରାଜା ବିଶ୍ୱାବସୁ ଚରିତ୍ର ପାଇଁ ମନୋନୀତ କରାଗଲା । ମଞ୍ଚଜଗତରେ ସେ ଯେମିତି

ଅଭିନୟରେ ଶୀର୍ଷସ୍ଥାନ ଅଧିକାର କରିଥିଲେ, ଚଳଚ୍ଚିତ୍ରରେ ମଧ ତାହା ଅକ୍ଷୁର୍ଣ୍ଣ ରହିଲା । 'ଶ୍ରୀଜଗନ୍ନାଥ' ଚଳଚ୍ଚିତ୍ର ୧୯୫୦ ମସିହାରେ ପ୍ରଦର୍ଶିତ ହେଲା । ଏହା ପୂର୍ବରୁ ୧୯୩୬ ମସିହାରେ 'ସୀତା ବିବାହ' ଓ ୧୯୪୯ 'ଲଳିତା' ଓଡ଼ିଶା ଚଳଚ୍ଚିତ୍ର ଆତ୍ମପ୍ରକାଶ କରିଥିଲେ । ସେତେବେଳେ ମଞ୍ଚ କଳାକାରମାନଙ୍କୁ ନେଇ ଚଳଚ୍ଚିତ୍ର ପ୍ରସ୍ତୁତ ହେଉଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ୧୯୬୨ ପର୍ଯ୍ୟନ୍ତ ଯେଉଁ କେତୋଟି ଚଳଚ୍ଚିତ୍ର ପ୍ରସ୍ତୁତ ହୋଇଥିଲା ସେଥିରେ ଅଭିନୟ କରିବା ପାଇଁ ମାଷ୍ଟର ମାଣିଆ ଆଗ୍ରହ ପ୍ରକାଶ କରିନଥିଲେ । ୧୯୬୨ ମସିହାରେ 'ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ' ପକ୍ଷରୁ ପ୍ରଭାତ ମୁକର୍ଜୀଙ୍କ ନିର୍ଦ୍ଦେଶନାରେ ପ୍ରଯୋଜିତ 'ଦସ୍ୟୁ ରତ୍ନାକର' ଚଳଚ୍ଚିତ୍ରରେ ଶରତ ପୂଝାରୀଙ୍କ ସହ ମାଷ୍ଟର ମାଣିଆ ଅଭିନୟ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ । ୧୯୬୮ ମସିହାରେ ଆତ୍ମପ୍ରକାଶ କରିଥିବା 'ମାଟିର ମଣିଷ' ଚଳଚ୍ଚିତ୍ର ଛାୟାବାଣୀ ପ୍ରତିଷ୍ଠାନ ଦ୍ୱାରା ପ୍ରସ୍ତୁତ କରାଯାଇଥିଲା । ଏହାର ନିର୍ଦ୍ଦେଶକ ଥିଲେ ମୃଣାଳସେନ୍ । ଶରତ ପୂଝାରୀ ଓ ପ୍ରଶାନ୍ତ ନନ୍ଦଙ୍କ ସହ ମାଷ୍ଟର ମାଣିଆ ଏଥିରେ ଅଭିନୟ ପାଇଁ ମନୋନୀତ ହୋଇଥିଲେ । ଶାମ ପ୍ରଧାନ ଭୂମିକାରେ ତାଙ୍କର ଅଭିନୟ ଦର୍ଶକମାନଙ୍କୁ ମୁଗ୍ଧ କରିଥିଲା । ଏହାପରେ ୧୯୭୫ ମସିହାରେ ଆତ୍ମପ୍ରକାଶ କରିଥିବା 'ମମତା' ଓ ଅରବିନ୍ଦ ପିକ୍‌ଚରସ୍ ପ୍ରାଇଭେଟ୍ ଲିମିଟେଡ୍ ଦ୍ୱାରା ପ୍ରଯୋଜିତ 'ଯାଯାବର' ଚଳଚ୍ଚିତ୍ର ଦୁଇଟିରେ ମାଷ୍ଟର ମାଣିଆଙ୍କ ଚମତ୍କାର ଅଭିନୟ କେବଳ ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରିନଥିଲା, କଳାକାରମାନଙ୍କ ମଧରେ ବିସ୍ମୟ ସୃଷ୍ଟି କରିଥିଲା । ପରବର୍ତ୍ତୀ କାଳରେ ଚଳଚ୍ଚିତ୍ରରେ ଅଭିନୟ କରିବା ପାଇଁ ମାଷ୍ଟର ମାଣିଆଙ୍କର ସମୟ ଆଉ ନଥିଲା । ଯେଉଁ ଅଳ୍ପ କେତୋଟି ଚଳଚ୍ଚିତ୍ରରେ ସେ ଅଭିନୟ କରିଛନ୍ତି, ସେଥିରେ ସେ ଅଭିନୟ କୌଶଳର ଚରମ ଉତ୍କର୍ଷତା ପ୍ରତିପାଦିତ କରିଛନ୍ତି ।

ଏହି ସମୟରେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପର ମ୍ୟାନେଜର ଏବଂ ପ୍ରତିଷ୍ଠାତାଙ୍କ ମଧରେ କ୍ଷମତା ପାଇଁ କୋର୍ଟ କଚେରୀରେ ଲଢ଼େଇ ଚାଲିଲା । ମାତ୍ର ଦୁଇ ବର୍ଷ ତଳେ ମାଲିକ, ଯେଉଁ ଭୁଲ୍ କରିଥିଲେ ତାରିଫଳ ନିଜେ ଭୋଗ କଲେ । କିଛି ବର୍ଷ ପୂର୍ବେ ଖୋରଧାରେ ବସି ଅର୍ଣ୍ଣପୂର୍ଣ୍ଣାର ଭବିଷ୍ୟତ ପାଇଁ ଯେଉଁ ବିରାଟ ପରକଳ୍ପନା କରାଯାଇଥିଲା, ସେ ସବୁ କଥା ଭୁଲି ଯାଇ ନିଜ ନିଜର ଅଧିକାର ସାବ୍ୟସ୍ତ ପାଇଁ କୋର୍ଟ କଚେରୀର ଅଶ୍ରୟ ନିଆଗଲା । ଏଥିରେ ଶ୍ରୀ ମାଣିଆ ମ୍ରିୟମାଣ ହେଲେ ସତ କିନ୍ତୁ ପରିସ୍ଥିତି ତାଡ଼ନାରେ 'ଏ' ଗ୍ରୁପ୍‌ର ଏହି କାର୍ଯ୍ୟରୁ ଦୂରେଇ ରହିପାରିଲେ ନାହିଁ, ତାଙ୍କୁ ବାଧହୋଇ ସମର୍ଥନ କଲେ ।

୧୯୪୯ ମସିହାରେ ନାଟ୍ୟକାର ଶ୍ରୀ ମନୋରଞ୍ଜନ ଦାସ୍‌ଙ୍କର ଐତିହାସିକ

ନାଟକ 'ବକ୍ସି ଜଗବନ୍ଧୁ' କଟକ ରଙ୍ଗମଞ୍ଚରେ 'ବିଦ୍ରୋହୀ ବକ୍ସି ଜଗବନ୍ଧୁ' ନାମରେ ଆତ୍ମପ୍ରକାଶ କଲା । ସେ ଏହି ନାଟକରେ ମନ୍ତ୍ରୀ 'ଜୟୀରାଜଗୁରୁ' ଚରିତ୍ରରେ ଅଭିନୟ କରିଥିଲେ ।

୧୯୫୦ ମସିହାରେ 'ଏ' ଗ୍ରୁପ୍ ଓ 'ବି' ଗ୍ରୁପ୍ ମଧ୍ୟରେ କୋର୍ଟରେ ଚାଲିବା ମାମଲା ଫଇସଲା ହେଲା । ଫଳରେ କଟକ ପେଣ୍ଡାଲର ମାଲିକାନା ସ୍ୱତ୍ୱ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ର ପୂର୍ବତନ ମ୍ୟାନେଜର ଲିଙ୍ଗରାଜ ନନ୍ଦଙ୍କୁ ପ୍ରତିଷ୍ଠାତା ସୋମନାଥ ଦାଶ୍ ହସ୍ତାନ୍ତର କରିଦେଲେ । କଟକ ରଙ୍ଗମଞ୍ଚରେ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ପ୍ରତିବର୍ଷ କେତେମାସ ନାଟକ ଅଭିନୟ କରିବା ପାଇଁ ଯେଉଁ ସୁବିଧା ପାଉଥିଲେ ସେମାନେ ସେଥିରୁ ବଞ୍ଚିତ ହେଲେ ।

## ଏ ବିଭାଜନରେ କଳାକାର ମାନଙ୍କ ପ୍ରତିକ୍ରିୟା

ବର୍ଷ ବର୍ଷ ଧରି ରାଜ୍ୟରେ ଓ ରାଜ୍ୟବାହାରର ଉପାନ୍ତ ଅଞ୍ଚଳରେ ଅଭିନୟ କରି ପ୍ରତିଷ୍ଠା ଅର୍ଜନ କରିଥିବା କଳାକାରମାନଙ୍କର ଶ୍ରମ ଫଳରେ କଟକ ଓ ପୁରୀ ସହରରେ ଦୁଇଟି ସ୍ଥାୟୀ ରଙ୍ଗମଞ୍ଚ ସମ୍ଭବ ହୋଇ ପାରିଥିଲା । ପ୍ରତିବର୍ଷ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକ ସହରରେ ନିଜର କଳାକୃତିର ପରିଚୟ ଦେବାର ସୁଯୋଗ ସେମାନେ ପାଉଥିଲେ । ସାମାନ୍ୟ କ୍ଷମତା ନିଶାରେ ଏଭଳି ସୁଯୋଗ ଛଡ଼ାଇ ନିଆଗଲା । ସେଥିପାଇଁ ସେମାନେ ମିଳିତ ଭାବେ ପରିଚାଳକଙ୍କ ବିରୁଦ୍ଧରେ ସ୍ୱରଉତ୍ତୋଳନ କଲେ । କେତେକ ଏଥିରୁ ଓହରି ଗଲେ । କିନ୍ତୁ ପ୍ରତିବାଦ କରି ଏ ଲେଖକଙ୍କ ସମେତ ୧୫/୧୬ ଜଣ ଅଭିନେତା-ଅଭିନେତ୍ରୀ ଅନୁଷ୍ଠାନ ପରିତ୍ୟାଗ କରିବା ପାଇଁ ସ୍ଥିର କଲେ ।

କଳାକାରଙ୍କର ଏ ପ୍ରକାର ପ୍ରତିକ୍ରିୟା ଦେଖି ଶ୍ରୀ ମାଣିଆ ବିଚଳିତ ହେଲେ । ସେ କହିଲେ "ଘରଟିଏ ଭାଙ୍ଗି ଦେବା ବହୁତ ସହଜ କିନ୍ତୁ ଗଢ଼ିବା ଯେ କେତେ କଷ୍ଟ, ତାହା ଯିଏ ତିଆରି କରେ ସିଏ ହିଁ ଅନୁଭବ କରିଥାଏ । ଯେଉଁମାନେ କାଲି ଆସି ଆଜି ଚାଲିଯାଉଛନ୍ତି ; ସେମାନଙ୍କୁ ମୋର ବିଶେଷ କିଛି କହିବାର ନାହିଁ" ଅନ୍ନପୂର୍ଣ୍ଣା ଲେଖକଙ୍କ ଗାଁରୁ ପ୍ରଥମେ ଆରମ୍ଭ ହୋଇଥିଲା । ଏଣୁ ମାଷ୍ଟର ମାଣିଆ କହିଲେ "ତୁ ମୂଳରୁ ଥିଲୁ, ତେଣୁ ତୁ ଛାଡ଼ି ଚାଲିଯା'ନା" ।

ଅନ୍ୟାୟର ପ୍ରତିବାଦ କରିବା ଶ୍ରୀ ମାଣିଆଙ୍କ ପକ୍ଷେ ସମ୍ଭବ ହୋଇପାରୁ ନଥିଲା । ତେଣୁ ତା'ଙ୍କ କଥାକୁ ଗ୍ରହଣ କରିବା ଏ ଲେଖକ ପକ୍ଷେ ସମ୍ଭବ ହେଲାନି । ୧୯୫୦ ମସିହା ସେପ୍ଟେମ୍ବର ମାସରେ ଅନ୍ୟ କଳାକାରଙ୍କ ସହିତ ଲେଖକ ଅନ୍ନପୂର୍ଣ୍ଣା ତ୍ୟାଗ କଲେ ।



# ଅଷ୍ଟମ ଅଧ୍ୟାୟ

## ଅନୁଷ୍ଠାନ ପରିତ୍ୟାଗ ଉପରେ ମାଣିଆଙ୍କ ପ୍ରତିକ୍ରିୟା

ମନୁଷ୍ୟ ସମାଜରେ, ସାମ୍ୟ ମୈତ୍ରୀର ଭାବର ପ୍ରକାଶ ପାଇଁ ସୃଷ୍ଟିକର୍ତ୍ତା ପଞ୍ଚମ ବେଦ ସୃଷ୍ଟି କଲେ । ନୃତ୍ୟ, ସଙ୍ଗୀତ, ନାଟ୍ୟ ହେଉଛି ଯୌଗିକ କଳା । ଯେଉଁଠାରେ ଏସବୁର ଆଲୋଚନା ହୁଏ, ସେହି ପବିତ୍ର ସ୍ଥାନରେ ଦଳଗତ ଓ ଗୋଷ୍ଠୀଗତ ଭେଦଭାବକୁ ଶ୍ରୀ ମାଣିଆ ପସନ୍ଦ କରୁନଥିଲେ । ଯେଉଁମାନେ ଅନୁଷ୍ଠାନ ପରିତ୍ୟାଗ କରି ଚାଲିଗଲେ, ସେମାନେ ପ୍ରଖ୍ୟାତ କଳାକାର ହେଲେ ହେଁ ସେମାନଙ୍କର ଉଗ୍ର ଚିନ୍ତାଧାରାକୁ ସେ ପ୍ରଶୟ ଦେବାକୁ ପସନ୍ଦ କରୁନଥିଲେ । ସେମାନଙ୍କର ଅନୁପସ୍ଥିତିରେ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ର ନାଟକ ପ୍ରଦର୍ଶନର ଗୁଣାତ୍ମକ ମାନ ହ୍ରାସ ହେଲାସତ, କିନ୍ତୁ ଗୋଷ୍ଠୀକନ୍ଦଳ ରହିଲାନାହିଁ । ଭ୍ରମଣ ସମୟରେ କେତେଜଣ ନୂଆ କଳାକାର ସର୍ବଶ୍ରୀ ଗୌର କାନୁନ୍‌ଗୋ, ଗୌର ସୁନ୍ଦର ଦେବ ଗୋସ୍ୱାମୀ, ରଘୁନାଥ ମିଶ୍ର(ଖ),ବିଷ୍ଣୁ ଦାସ୍, ପଦ୍ମନାଭ ସାହୁ ଓ କେତେକ ନାରୀଶିଳ୍ପୀ ଦଳରେ ଯୋଗ ଦେଲେ । ଏମାନେ ପୂର୍ବରୁ ବନ୍ଦ ହୋଇଯାଇଥିବା ଓଡ଼ିଶା ଥିଏଟର୍ସ, ବରଗଡ଼ ଥିଏଟର୍, ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ରାସଦଳର କଳାକାର ଥିଲେ ।

୧୯୫୧ ମସିହାରେ ପୁରୀ ପେଣ୍ଡାଲ୍‌ରେ ଅଶ୍ୱିନୀ ବାବୁଙ୍କ ଲିଖିତ ପୌରାଣିକ ନାଟକ 'ଜାନକୀ' ମାଷ୍ଟର ମାଣିଆଙ୍କ ନିର୍ଦ୍ଦେଶନାରେ, ଭଞ୍ଜ କିଶୋରଙ୍କ 'ଜୟମାଲ୍ୟ' ଦୁଃଖିରାମ ସ୍ୱାଇଁଙ୍କ ନିର୍ଦ୍ଦେଶନାରେ ପ୍ରସ୍ତୁତ କରାଗଲା । ମାଷ୍ଟର ମାଣିଆ ସବୁ ନାଟକରେ ଅଭିନୟ କରିଥିଲେ । ଏ ଲେଖକ ବର୍ଷରେ ଥରେ ଅନ୍ନପୂର୍ଣ୍ଣା ଥିଏଟର୍ ବର୍ଷାଋତୁରେ ଶ୍ରୀକ୍ଷେତ୍ର ଧାମରେ ରହିଥିବା ବେଳେ ପୁରୀକୁ ଯାଏ । ସେତେବେଳେ ଜଗନ୍ନାଥଙ୍କ ଦର୍ଶନ କରିବା ସଙ୍ଗେ ସଙ୍ଗେ ଜନ୍ମପୀଠ, ଅନ୍ତୁଡ଼ିଶାଳରୁ ଉଦ୍ଭବ ଅନ୍ନପୂର୍ଣ୍ଣା ଥିଏଟର୍ ଓ ମୋର ନାଟ୍ୟଗୁରୁ ମାନଙ୍କୁ ସାକ୍ଷାତ କରିବାର ସୁବିଧା ମିଳେ । ସେଇ ସାକ୍ଷାତ୍ ସମୟରେ ମାଷ୍ଟର ମାଣିଆଙ୍କ ସେହି ହସ ହସ କଥା, 'ବାପା, ଭଲ ଅଛ' ସେତେବେଳେ ମୁଁ ପୂର୍ବାପେକ୍ଷା ଅଧିକ ଆଦର ପାଇପାରିଥିଲି ସତ, କିନ୍ତୁ ମାଣିଆଙ୍କ ମନର ଅବସ୍ଥା ଭଲ ନଥିବା ଲକ୍ଷ୍ୟକଲି । ପରସ୍ପର ପ୍ରତି ସ୍ନେହ ତଥା ସହାନୁଭୂତି ଆଉ ସେଠାରେ ନଥିଲା । ମନେହେଲା ଯନ୍ତ୍ରଚାଳିତ ମାନବ ଭଳି ସମସ୍ତ କାମ କରାଯାଉଛି । ଏ ବିଷୟରେ ପଚାରିଲେ ମାଣିଆ କହନ୍ତି ଯେ, 'ଏ ସେହି କ୍ଷେତ୍ର ନୁହେଁ ବାପା, ଯେଉଁ କ୍ଷେତ୍ର ତୁମେ ତିଆରି କରିଥିଲ । ତୁମର ଶ୍ରମ ସଫଳ ହେଉ' । ତାଙ୍କର ସହଯୋଗୀ ବନ୍ଧୁ

ବଲାଇଚାନ୍ଦ ବାନାର୍ଜୀ ଜଣେ ଖ୍ୟାତନାମା ନାଟ୍ୟ ନିର୍ଦ୍ଦେଶକ ଓ ପ୍ରତିଷ୍ଠିତ କଳାକାର ହେଲେ ମଧ୍ୟ ତାଙ୍କୁ କୌଣସି ନାଟ୍ୟାନୁଷ୍ଠାନ ସ୍ଥାନ ଦେଲେ ନାହିଁ । ଉତ୍କଟ ଆର୍ଥିକ ଦୁର୍ଗତିର ସମ୍ମୁଖୀନ ହେବାରୁ ସେ ଓଡ଼ିଶା ଛାଡ଼ି କଲିକତାରେ ଅତି ଦୟନୀୟ ଭାବେ କାଳାତିପାତ କରୁଥିବା ବେଳେ ଆମେମାନେ ଜନତା ରଙ୍ଗମଞ୍ଚରେ ଆମମାନଙ୍କର ପରାମର୍ଶଦାତା ଭାବେ ସ୍ଥାନ ଦେଇଥିବା ଶୁଣି ଶ୍ରୀ ମାଣିଆ ଆମମାନଙ୍କୁ ଆଶୀର୍ବାଦ ଦେଇଥିଲେ ।

## ମଞ୍ଚ ଗୁରୁ ବଲାଇ ଚାନ୍ଦଙ୍କ ମହାପ୍ରୟାଣ

ନବ ପ୍ରତିଷ୍ଠିତ ଜନତା ରଙ୍ଗମଞ୍ଚ ତିନି ବର୍ଷ ମଧ୍ୟରେ ନାଟ୍ୟ କ୍ଷେତ୍ରରେ ସଫଳତା ଲାଭ କରି ୧୯୫୬ ମସିହା ସେପ୍ଟେମ୍ବର/ଅକ୍ଟୋବର ବେଳକୁ ଆର୍ଥିକ ଦୂରବସ୍ଥା ଯୋଗୁଁ ସାମୟିକ ଭାବେ ବନ୍ଦ ହୋଇଯାଇଥାଏ । ସେହି ଘଡ଼ିସନ୍ଧି ମୁହୂର୍ତ୍ତରେ କୁମାର ପୂର୍ଣ୍ଣିମା ତିଥିରେ ଦେଶର ଜଣେ ଉତ୍ସର୍ଗୀକୃତ ମହାନ କଳାକାର ବଲାଇ ଚାନ୍ଦ ବାନାର୍ଜୀଙ୍କର ସେହି ଜନତା ରଙ୍ଗମଞ୍ଚ ପରିସର ମଧ୍ୟରେ ଦେହାନ୍ତ ହୋଇଗଲା । ତାଙ୍କର ଏକାଦଶାହ ପାଳନ ପାଇଁ ଆମେ, ବିଭିନ୍ନ ସ୍ଥାନରୁ ଚାନ୍ଦା ସଂଗ୍ରହ କରିବା ଅବସରରେ ଏ ଲେଖକ ପୁରୀ, ଅନ୍ନପୂର୍ଣ୍ଣା 'ଏ'ଗ୍ରୁପ୍‌କୁ ଯାଇଥିଲା । ସେତେବେଳକୁ ବହୁ ବର୍ଷର ବ୍ୟବଧାନ ପରେ କାର୍ତ୍ତିକ ଚନ୍ଦ୍ର ଘୋଷଙ୍କ ରଚିତ ନାଟକ 'ଲକ୍ଷହୀରା' ମଞ୍ଚସ୍ଥ କରି ପାର୍ଟି ଆର୍ଥିକ ଦୃଷ୍ଟିରୁ ବିଶେଷ ସଫଳତା ହାସଲ କରିଥିଲେ ହେଁ ସେହି ସ୍ୱର୍ଗତ ମହାନ୍ ଆତ୍ମା ପାଇଁ କାହାରି ଭିତରେ ଦରଦ ପ୍ରକାଶ ପାଇନଥିଲା । କେବଳ ଶ୍ରୀ ମାଣିଆ ଦୁଃଖରେ ମ୍ରିୟମାଣ ହୋଇ କହିଲେ, 'ଓଡ଼ିଆ ନାଟକର ସ୍ଥିତି ଓ ପ୍ରତିଷ୍ଠା ପାଇଁ ସରକାରୀ ଚାକିରୀ, ଆଇନ ବ୍ୟବସାୟ ଓ ଘରଦ୍ୱାର ଛାଡ଼ିଥିବା ଜଣେ ମହାନ୍ ଶିଳ୍ପୀ ଜୀବଦ୍ଦଶାରେ ଦାରିଦ୍ର୍ୟ ସହିତ ସଂଗ୍ରାମ କରି କିଛି ନପାଇଲେ ମଧ୍ୟ କଳାକାରମାନଙ୍କ କାନ୍ଧରେ ଶେଷରେ ଶ୍ମଶାନକୁ ଯିବାର ଗୌରବ ପାଇଲେ' ।

## ମଞ୍ଚରୁ ଅବ୍ୟାହତ ନେବାର ଇଚ୍ଛା ପ୍ରକାଶ

୧୯୫୯ ମସିହାରେ ଦୀର୍ଘ ଦଶ ବର୍ଷର ବ୍ୟବଧାନ ପରେ କଟକ ଶହୀଦ ଭବନରେ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ମଞ୍ଚରେ ମାଷ୍ଟର ମାଣିଆ କେତେଗୋଟି ନାଟକରେ ଅଭିନୟ କରିଥିଲେ । ତା'ପରେ ମଞ୍ଚ ଜଗତରୁ ବିଦାୟ ନେବାପାଇଁ ଇଚ୍ଛା ପ୍ରକାଶ କଲେ ।

ପ୍ରତିଷ୍ଠାତା ସୋମନାଥ ଦାଶ ଓ ମ୍ୟାନେଜର ବାଉରିବନ୍ଧୁ ମହାନ୍ତି ତାଙ୍କର ସମବୟସ୍କ । ସେମାନେ ମାଷ୍ଟର ମାଣିଆଙ୍କୁ ବିଦାୟ ଦେବାକୁ ଚାହୁଁନଥିଲେ । ସେମାନଙ୍କର ଇଚ୍ଛା ଥିଲା ଏ ଦୁନିଆରୁ ଯେତେବେଳେ ବିଦାୟ ନେବା, ସେତେବେଳେ

କେହି କାହାକୁ ବାଧା ଦେବ ନାହିଁ । ବଞ୍ଚିଥିବା ପର୍ଯ୍ୟନ୍ତ କେହି ଅନ୍ନପୂର୍ଣ୍ଣାକୁ ପରିତ୍ୟାଗ କରିପାରିବା ନାହିଁ ।

## ଉତ୍ତରାୟଣୀ ପୀଠରେ ଅବଶିଷ୍ଟ ଦିନ

ତା'ପରଠାରୁ ଶ୍ରୀ ମାଣିଆ ଥିଏଟର୍‌ର ବେତନଭୋଗୀ କର୍ମଚାରୀ ଭାବେ ରହିଲେ ନାହିଁ । ଝଟଣୀ ନୂଆଗାଁର ଉତ୍ତରାୟଣୀ ପୀଠରେ ଯେଉଁ ରଙ୍ଗମଞ୍ଚ ଆରମ୍ଭ ହୋଇଥିଲା ତାହା କେତେକ ଉଦ୍ୟୋକ୍ତାଙ୍କ ପ୍ରଚେଷ୍ଟା ଫଳରେ ପୂର୍ଣ୍ଣାଙ୍ଗ ହୋଇ ପାରିଥିଲା । ସେହି ପୀଠରେ ସେ ଅଧିକାଂଶ ଦିନ କଟାଇଥିଲେ । ସମୟେ ସମୟେ ପୁରୀ ଯାଇ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ସହିତ ସମ୍ପର୍କ ରଖୁଥିଲେ ।

## ଜନତା ରଙ୍ଗମଞ୍ଚ ତରଫରୁ ମଞ୍ଚଶ୍ରୀ ଉପାଧି ପ୍ରଦାନ

୧୯୬୨ ମସିହା ଏପ୍ରିଲ ମାସରେ ଜନତା ରଙ୍ଗମଞ୍ଚ ଆନୁକୂଲ୍ୟରେ ମାଷ୍ଟର ମାଣିଆଙ୍କୁ ମଞ୍ଚଶ୍ରୀ ଉପାଧୀ ଦେବା ପାଇଁ ସ୍ଥିର କରାଗଲା । ଏଥିପାଇଁ ଯେଉଁ କମିଟି ଗଢ଼ାଯାଇଥିଲା ତା'ର ସଭାପତି ଭାବେ ମାନ୍ୟବର ରାଜସ୍ୱ ମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ, ସମ୍ପାଦକ ଭାବେ ରହିଲେ ଜନତା ରଙ୍ଗମଞ୍ଚର ସଭାପତି ଶ୍ରୀ ସୁରେନ୍ଦ୍ର କୁମାର ଦାସ, ଜନତା ରଙ୍ଗମଞ୍ଚର ସମ୍ପାଦକ ଓ ପରିଚାଳନା କମିଟିର ସଭ୍ୟ ଶ୍ରୀ ଯୁଗୋଳ କିଶୋର ପାଣିଗ୍ରାହୀ, ନରସିଂହ ମହାପାତ୍ର ପ୍ରମୁଖ ସଦସ୍ୟ ରହିଥିଲେ । ଏଥିରେ ସର୍ବସମ୍ମତ କ୍ରମେ ସ୍ଥିର କରାଗଲା ଯେ ବୟୋବୃଦ୍ଧ ନାଟ୍ୟଗୁରୁ ମାଷ୍ଟର ରାମଚନ୍ଦ୍ର ମାଣିଆଙ୍କ ସମେତ ଓଡ଼ିଶାର ପେଶାଦାର ରଙ୍ଗମଞ୍ଚର କୃତି ପ୍ରତିଭା ଯଥା - ନାଟ୍ୟକାର ଶ୍ରୀ ଅଶ୍ୱିନୀ କୁମାର ଘୋଷ, ମଞ୍ଚଶିଳ୍ପୀ ଲକ୍ଷ୍ମୀନାରାୟଣ ଆଚାରୀ, ସଙ୍ଗୀତ ରଚୟିତା କିଶୋର କବି ଶ୍ୟାମ ସୁନ୍ଦର ଦାସ୍, ମଞ୍ଚ ପରିଚାଳକ ବାଉରିବନ୍ଧୁ ମହାନ୍ତି, ମଞ୍ଚ ଅଭିନେତ୍ରୀ ରାଧାରାଣୀ ଦେବୀ, ଦକ୍ଷିଣାଞ୍ଚଳର ନାଟ୍ୟକାର ଶ୍ରୀ ସତ୍ୟନାରାୟଣ ପଣ୍ଡାଙ୍କୁ ସମ୍ମାନ ସୂଚକ ମଞ୍ଚଶ୍ରୀ ଉପାଧୀରେ ଭୂଷିତ କରାଯିବ । ଏହାପରେ ତାମ୍ରଫଳକ ଓ ଉପଢ୍ୌକନ ସହ ଏକ ସ୍ୱତନ୍ତ୍ର ଉତ୍ସବରେ ଏହି ଉପାଧୀ ପ୍ରଦାନ କରାଯାଇଥିଲା ।

## ୧୯୬୭ ମସିହାରେ ପ୍ରତିଷ୍ଠାତା ସୋମନାଥ ଦାଶ୍‌ଙ୍କର ପରଲୋକ

ମାଷ୍ଟର ମାଣିଆ ଅନ୍ନପୂର୍ଣ୍ଣା ଥିଏଟରର ଦୂରଦୂରାନ୍ତ ଭ୍ରମଣରେ ଯୋଗ ଦେଇପାରୁ ନ ଥିଲେ । ପାର୍ଟି ଆଖପାଖ ଅଞ୍ଚଳକୁ ଆସିଲେ ମ୍ୟାନେଜର ବାଉରିବନ୍ଧୁ ମହାନ୍ତି ଚିଠି ଦେଇ ତାଙ୍କୁ ଡକାଇ ନିଅନ୍ତି । ସେ ବର୍ଷ ଚନ୍ଦନ ସମୟରେ ଖୋର୍ଦ୍ଧାରେ କଟାଇବା ଉଦ୍ଦେଶ୍ୟରେ ଅନ୍ନପୂର୍ଣ୍ଣା ଥିଏଟର କ୍ୟାମ୍ପ ପକାଇଲା । ଝଟଣୀକୁ

ଖୋର୍ଦ୍ଧା ବା କେତେବାଟ ? ମାଷ୍ଟର ମାଣିଆ ଖୋର୍ଦ୍ଧା ଯାଇ କ୍ୟାମ୍ପରେ ସମୟ ବିତାଇଲେ । ଏହି ସମୟରେ ପ୍ରତିଷ୍ଠାତା ଶ୍ରୀ ଦାଶ୍ ତାଙ୍କ ଜନ୍ମ ସ୍ଥାନରେ ଭୀଷଣ ଅସୁସ୍ଥ ହୋଇପଡ଼ିଲେ । ଖୋର୍ଦ୍ଧା କ୍ୟାମ୍ପକୁ ତାଙ୍କୁ ଅଣାଗଲା । ଡାକ୍ତରୀ ଚିକିତ୍ସା କରାଗଲା, ଅବସ୍ଥାର ପରିବର୍ତ୍ତନ ହେଲା ନାହିଁ । କଟକ ମେଡ଼ିକାଲ୍ ଯିବାପାଇଁ ଶ୍ରୀ ଦାଶ୍ ବାରଣ କରି ତାଙ୍କୁ ପୁରୀ ନେଇଯିବା ପାଇଁ କହିଲେ । ପୁରୀ ଯାତ୍ରାବେଳେ ପରିଚାଳକ ବାଉରୀବନ୍ଧୁ, ମାଷ୍ଟର ମାଣିଆ ଓ ସମସ୍ତ ମୁଖ୍ୟ କଳାକାରଙ୍କୁ କହିଲେ 'ମୁଁ ଚାଲିଲି, ମାଷ୍ଟ୍ରେ (ମାଣିଆ) ଥିଏଟର୍ ତୁମ ମାନଙ୍କୁ ଲାଗିଲା । ମୃତ୍ୟୁର ପଦଧ୍ୱନୀ ବୋଧହୁଏ ସେ ଶୁଣି ପାରୁଥିଲେ । ପୁରୀ ଯାତ୍ରାର କିଛି ଦିନ ପରେ ପବିତ୍ର ପୁରୀ ଧାମରେ ତାଙ୍କର ଶେଷ ନିଃଶ୍ୱାସ ଉଡ଼ିଗଲା । ପ୍ରତିଷ୍ଠାତାଙ୍କ ବିୟୋଗରେ ମାଷ୍ଟର ମାଣିଆ ଭାଙ୍ଗିପଡିଲେ । ସେତେବେଳକୁ ତାଙ୍କୁ ୭୫ ବର୍ଷ ହୋଇଥିଏ ।

## ଖୋର୍ଦ୍ଧା କ୍ୟାମ୍ପରେ ଶ୍ରାଦ୍ଧ ଦିବସ ପାଳନ

ଖୋର୍ଦ୍ଧା ସହର ସହିତ ଅନ୍ନପୂର୍ଣ୍ଣା ଥିଏଟର୍‌ର ସମ୍ପର୍କ ବହୁ ଦିନର । ଏଠାରେ ୧୯୩୪ ମସିହାରେ ବାଉରିବନ୍ଧୁଙ୍କ ସହିତ ପ୍ରତିଷ୍ଠାତା ଦାଶ୍‌ଙ୍କର ପ୍ରଥମ ସାକ୍ଷାତ ହୋଇଥିଲା । ଥିଏଟର୍ ଗଢ଼ିବା ସମ୍ପର୍କରେ ଆଲୋଚନା, ପୁରୁଷମାନଙ୍କୁ ବାଦ ଦେଇ ନାରୀ ଭୂମିକାରେ କେବଳ ନାରୀ ଶିଳ୍ପୀ ଗ୍ରହଣର ପରିକଳ୍ପନା ଏବଂ ଅନ୍ନପୂର୍ଣ୍ଣାର ଏକାଧିକ ଗ୍ରୁପ୍ ଗଠନ ପରିକଳ୍ପନା ଏହିଠାରେ କରାଯାଇଥିଲା । ସେ ସମୟରେ ଯେଉଁମାନେ ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ସେମାନେ ଆଉ ଅର୍ଣ୍ଣପୂର୍ଣ୍ଣା ସହ ସମ୍ପର୍କ ରଖି ନାହାନ୍ତି । ଏହାର ମୁଖ୍ୟ ପୁରୋଧା ସବୁଦିନ ପାଇଁ ଚାଲିଗଲେ । ଏଣୁ ସେହି ମହାନ୍ ଆତ୍ମାର ସଦ୍‌ଗତି କାମନା ପାଇଁ ଅନୁଷ୍ଠାନ ତରଫରୁ ସମସ୍ତଙ୍କୁ ଡକାଗଲା । ପ୍ରାୟ ଅଧିକାଂଶ କଳାକାର ଏହି ଶ୍ରାଦ୍ଧ ଦିବସରେ ଯୋଗଦେଲେ ।

ଏ ଲେଖକଙ୍କୁ ଏହି ଶ୍ରାଦ୍ଧ ସଭାରେ ଯୋଗଦେବାର ସୁଯୋଗ ମିଳିଥିଲା । ଖୋର୍ଦ୍ଧାର ବହୁ କଳାପ୍ରେମୀ ଓ କଳାକାର ଏଥିରେ ଯୋଗ ଦେଇଥିଲେ । ସେଦିନ ଶୋକସଭାରେ ପରିଚାଳକ ବାଉରିବନ୍ଧୁ ଓ ମାଷ୍ଟର ମାଣିଆ ଅତ୍ୟନ୍ତ ବିମର୍ଷ ହୋଇ ପଡ଼ିଥିଲେ, ସତେ ଯେପରି ସେମାନଙ୍କର ଅତି ପ୍ରିୟଜନଙ୍କୁ ସେମାନେ ହରାଇଛନ୍ତି । ପରସ୍ପରଙ୍କ ମଧ୍ୟରେ ସେମାନଙ୍କର ନିବିଡ଼ ବନ୍ଧନ ଥିଲା । ସ୍ୱର୍ଗତଃ ଦାଶ୍‌ଙ୍କ ଶେଷ କଥା (ଥିଏଟର୍ ତୁମ ମାନଙ୍କୁ ଲାଗିଲା) ମନେରଖି ଶ୍ରୀ ମାଣିଆ ଭୁଜିଭାଇ ଥିଏଟର୍ ସହିତ ସକ୍ରିୟ ଭାବେ ଜଡ଼ିତ ହୋଇ ରହିଲେ ।

୧୯୭୨ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ରାଜ୍ୟର କୃତି କଳାକାର ଭାବେ ମାଷ୍ଟର ମାଣିଆଙ୍କୁ ସମ୍ମାନିତ କରିଥିଲା । ଅସୁସ୍ଥତା ସତ୍ତ୍ୱେ ସେ ଭୁବନେଶ୍ୱର ଆସି ମାନପତ୍ର ଓ ଉପଢ଼ୌକନ ଗ୍ରହଣ କରିଥିଲେ । ଓଡ଼ିଆ ନାଟ୍ୟକଳାର ଅଭିବୃଦ୍ଧି ପାଇଁ ଦୀର୍ଘ ୬୯ ବର୍ଷ ଧରି ନିରବଚ୍ଛିନ୍ନ ସାଧକ ଭାବେ ରାଜ୍ୟସ୍ତରୀୟ ସମ୍ମାନ ପାଇବା ତାଙ୍କ ଜୀବନର ପ୍ରଥମ ଗୌରବ । ୧୯୬୯ ମସିହା ଗ୍ରୀଷ୍ମ ସମୟରେ 'ମାଣିକ ଯୋଡ଼ି' ନାଟକରେ 'ବରଦା ପଟ୍ଟନାୟକ' ଭୂମିକାରେ ଅଭିନୟ କରିବା ସମୟରେ ସେ ସଜ୍ଞାହୀନ ହୋଇପଡ଼ିଲେ । ଅତ୍ୟଧିକ ବୟସ ଏବଂ ଶରୀର ଅସୁସ୍ଥତା ଯୋଗୁଁ ସେ ବାଧ ହୋଇ ଅନ୍ନପୂର୍ଣ୍ଣାରୁ ଅବ୍ୟାହତି ନେଲେ ।

## ୧୯୭୧ ମସିହାରେ ଜଟଣୀ ଉତ୍ତରାୟଣୀ ପୀଠରେ ତାଙ୍କ ସହ ସାକ୍ଷାତ୍

ସ୍ୱର୍ଗତ ଦାଶଙ୍କ ମୃତ୍ୟୁପରେ ଅନ୍ନପୂର୍ଣ୍ଣାର ପରିଚାଳନାରେ ହଠାତ୍ ପରବର୍ତ୍ତନ ଦେଖାଦେଲା । ଅଦରକାରୀ ବୁଢ଼ାବୁଢ଼ୀ ମାନଙ୍କର ସ୍ଥାନ ଆଉ ସେଠାରେ ରହିଲା ନାହିଁ । ୧୯୭୦ ମସିହାରୁ ମାଷ୍ଟର ମାଣିଆ ସବୁଦିନ ପାଇଁ ଅନ୍ନପୂର୍ଣ୍ଣାରୁ ବିଦାୟ ନେଇ ମା ଉତ୍ତରାୟଣୀ ପୀଠରେ ସମୟ କଟାଇଲେ । ସ୍ଥାନୀୟ ନୂଆ ଗାଁ ର କଳାନୁରାଗୀ ଶତପଥୀ ପରିବାର ଏହି ପୀଠର ଉଦ୍ୟୋକ୍ତା ଥିଲେ । ମାଷ୍ଟର ମାଣିଆ ସମ୍ମାନର ସହ ରହିବା ପାଇଁ ସେମାନେ ବ୍ୟବସ୍ଥା କରିଥିଲେ । ଫଳରେ ସେ ଏକ ପ୍ରକାର ଆଶ୍ରମ ଜୀବନଯାପନ କଲେ । ସେତେବେଳେ ଏ ଲେଖକ 'କଳାଶ୍ରୀ ଥିଏଟର୍'ରେ ଥାଏ । ଅକ୍ଟୋବର ମାସର ତୃତୀୟ ସପ୍ତାହରେ ସାତଦିନ ପାଇଁ ଉତ୍ତରାୟଣୀ ପେଣ୍ଡାଲରେ କଳାଶ୍ରୀ ଥିଏଟର୍ ନାଟକ ପ୍ରଦର୍ଶନ କରିବାର ସୁଯୋଗ ପାଇଥିଲା । ଏହି ଅବସରରେ ତାଙ୍କ ସହ ଲେଖକଙ୍କର ସାକ୍ଷାତ ହେଲା । ସେଠାରେ ତାଙ୍କ ପାଇଁ ଏକ ସ୍ୱତନ୍ତ୍ର କୋଠରୀର ବ୍ୟବସ୍ଥା କରାଯାଇଥିଲା । ଦୁଇବେଳା ମା'ଙ୍କ ପ୍ରସାଦ ବରାଦ ହେଉଥିଲା । କାର୍ଯ୍ୟଭିତରେ ଠାକୁରାଣୀଙ୍କ ସେବା ଓ ଶାସ୍ତ୍ର ପୁରାଣ ଚର୍ଚ୍ଚାରେ ପୂରା ସମୟ କଟୁଥିଲା । ସେହି ସମୟରେ ତାଙ୍କ ଜୀବନୀ ଓ କାର୍ଯ୍ୟକଳାପ ସମ୍ପର୍କରେ ମୋର ଦୀର୍ଘ ଆଲୋଚନା ହୋଇଥିଲା । ତାଙ୍କର ଅନୁଶୋଚନା ଥିଲା ଯେ ଜୀବନସାରା କଳାସାଧନା କରି ମଧ୍ୟ କଳାକାରଙ୍କ ଅବସ୍ଥା ସୁଧାରି ପାରିଲେ ନାହିଁ । ଆମେ ମଧ ପ୍ରତିବାଦର ସ୍ୱରଉତ୍ତୋଳନ କରି କୌଣସି ସମସ୍ୟାର ସମାଧାନ କରିପାରିନଥିଲୁ ବୋଲି ମୁଁ ସ୍ୱୀକାର କରିଥିଲି । ସେ ଦିନେ ସ୍ୱଇଚ୍ଛାରେ ଅବସର ଚାହୁଁଥିଲେ । ମାତ୍ର ଏବେ ତାଙ୍କୁ ବାଧ୍ୟତାମୂଳକ ଅବସର ଦିଆଗଲା । ଯେକୌଣସି ସରକାରୀ ସଂସ୍ଥା ବା ସ୍ୱେଚ୍ଛାସେବୀ ସଂସ୍ଥାରେ ଅବସର କାଳୀନ ଭତ୍ତା

ବା ପେନ୍‌ସନ୍ ମିଳେ ଶେଷ ଜୀବନ ପର୍ଯ୍ୟନ୍ତ । ସେ କିନ୍ତୁ ୭ ବର୍ଷ ବୟସରୁ ୭୨ ବର୍ଷ ପର୍ଯ୍ୟନ୍ତ ଆମର ନାଟ୍ୟକଳା ପାଇଁ ନିରବଚ୍ଛିନ୍ନ ଭାବେ କାମ କରି ଶୂନ୍ୟହସ୍ତରେ ଘରକୁ ଫେରିଥିଲେ । ଜୀବନର ଶେଷ ପର୍ଯ୍ୟନ୍ତ ଅନ୍ୟର ହାତ ଟେକା ଦାନକୁ ଅପେକ୍ଷା କରିବା ଯେକେତେ ଦୁଃଖଦାୟକ ତାହା ବର୍ଣ୍ଣନାତୀତ ।

୧୯୭୨ ମସିହାରେ ମ୍ୟାନେଜର ବାଉରିବନ୍ଧୁ ମହାନ୍ତିଙ୍କ ତିରୋଧାନ ବେଳକୁ ସେ ଅସୁସ୍ଥ ଅବସ୍ଥାରେ ନିଜ ଗାଁରେ ଥିଲେ ।

୧୯୭୪ ମସିହାର ଜନ୍ମାଷ୍ଟମୀର ଶୁଭ ଅବସରରେ ରାଜ୍ୟର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ମାଷ୍ଟର ମାଣିଆଙ୍କ ସମେତ ଆଉ କେତେ ଜଣ ବୃଦ୍ଧ କୃତି ଅଭିନେତା, ଅଭିନେତ୍ରୀ ଓ ସଙ୍ଗୀତଜ୍ଞଙ୍କୁ ଆଜୀବନ ଭତ୍ତା (ପେନ୍‌ସନ୍) ମାସିକ ଟ ୧୦୦/- ହିସାବରେ ପ୍ରଦାନ କରିବାକୁ ବ୍ୟବସ୍ଥା କରିଥିଲେ । ଏହା ପାରିବାରିକ ପେନସନ୍ ନଥିଲା । କେବଳ ବଞ୍ଚିଥିବା ପର୍ଯ୍ୟନ୍ତ ପାଇବେ । ତାଙ୍କ ଜୀବିତାବସ୍ଥାରେ କଳାକାର ଯଦି କିଛି ସଞ୍ଚୟ କରିଥିବେ ତେବେ ତାଙ୍କ ବିଧବା ସ୍ତ୍ରୀ ଅନ୍ତତଃ କାହାରିକୁ ହାତ ପତାଇବେ ନାହିଁ ।

## ମାଷ୍ଟର ମାଣିଆଙ୍କର ଦେହାବସାନ

୧୯୭୫ ମସିହାରେ ଅନ୍ନପୂର୍ଣ୍ଣା 'ଏ' ଓ 'ବି' ପେଣ୍ଡାଲ୍‌ରେ କେତେମାସ ପାଇଁ ନାଟକ ପ୍ରଦର୍ଶନ କରିବା ଅବସ୍ଥାରେ ମାତ୍ର ଅଳ୍ପ କେତେଦିନ ପାଇଁ ସେ କଟକ ଆସିଥିଲେ । 'ଯାଯାବର' ଓଡ଼ିଆ ଛବିର କର୍ମକର୍ତ୍ତାମାନେ ତାଙ୍କୁ ଡକାଇଥିଲେ । ସେହି ସମୟରେ ତାଙ୍କ ସହ ଏ ଲେଖକର ସାକ୍ଷାତ ହେଲା । ୧୯୭୧ ମସିହାରେ ସାକ୍ଷାତ ସମୟରେ ତାଙ୍କର ଆତ୍ମଜୀବନୀଟି ଲେଖି ନେଇଥିଲି । ଚଳଚ୍ଚିତ୍ର ଗୋଟିଏ ବୃଦ୍ଧ ଚରିତ୍ରରେ ସେ ଅଭିନୟ କରିବା ପାଇଁ ଡକାହୋଇ ଆସିଥିଲେ । ପରେ 'ମମତା' ଚଳଚ୍ଚିତ୍ରରେ ବୁଢ଼ାଶଙ୍ଖାରୀ ଚରିତ୍ରରେ ହୃଦୟ ବିଦାରକ ଅଭିନୟ ଥିଲା ତାଙ୍କର ଶେଷ ଅଭିନୟ । ଓଡ଼ିଆ ନାଟକର ଶତବାର୍ଷିକ ଉତ୍ସବ ପାଳନ ଅବସରରେ କଳାବିକାଶ କେନ୍ଦ୍ର ତରଫରୁ ଉପଢୌକନ ନେବା ପାଇଁ ସେ ଆସିପାରିନଥିଲେ । ତାଙ୍କର ପୋଷ୍ୟପୁତ୍ର ନଟ ମାଣିଆ ଆସି ତାହା ଗ୍ରହଣ କରିଥିଲେ । ତାଙ୍କ ନିଜ ଗାଁ ଗଡ଼ରେଙ୍ଗଲ ଗ୍ରାମରେ ବାପା ମାଙ୍କ କୋଳରେ ଶୈଶବ ଅବସ୍ଥାରେ ସେ ମାତ୍ର ୭ଟି ବର୍ଷ କଟାଇଥିଲେ । ଏବଂ ଅବଶିଷ୍ଟ ୮୦ ବର୍ଷ ନିରବଚ୍ଛିନ୍ନ ଭାବରେ ଉତ୍କଳୀୟ ନାଟ୍ୟକଳାର ଉତ୍କର୍ଷତା ପାଇଁ ସେବା ଓ ସାଧନାରେ ନିୟୋଜିତ ଥିଲେ । ଜୀବନର ଶେଷ ବର୍ଷଟି ସେ ସମ୍ପୂର୍ଣ୍ଣ ଅସୁସ୍ଥ

ହୋଇପଡ଼ିଲେ । ଏ ସମୟରେ ତାଙ୍କର ସେବା ଶୁଶ୍ରୂଷାରେ କେବଳ ପରିବାରବର୍ଗ ଓ ପ୍ରତିବେଶୀ ମାନେ ବ୍ୟସ୍ତ ରହିଲେ । ଜନ୍ମ ମାଟିର ଆକର୍ଷଣ ତାଙ୍କୁ ନିଜ ଗ୍ରାମକୁ ଟାଣିଆଣିଥିଲା । ଯେଉଁ ମାଟିରେ ୮୭ ବର୍ଷ ତଳେ 'କୁଆଁ କୁଆଁ' ରାବ କରି ଜନ୍ମ ଗ୍ରହଣ କରିଥିଲେ, ସେଇ ମାଟିରେ ୧୯୭୮ ଫେବୃୟାରୀ ୫ ତାରିଖରେ ସବୁଦିନ ପାଇଁ ଆଖିବୁଜିଲେ । ଏ ପୃଥିବୀପୃଷ୍ଠକୁ ତାଙ୍କର ଆଗମନ ଯେପରି ନିରାଡ଼ମ୍ବର ଥିଲା, ପ୍ରସ୍ଥାନ ମଧ୍ୟ ସେହିପରି ନିରାଡ଼ମ୍ବରରେ ହେଲା । ଦୟାନଦୀ ତଟବର୍ତ୍ତୀ ଗ୍ରାମ୍ୟ ଶ୍ମଶାନରେ ଏହି ମହାନ୍ କଳାକାରଙ୍କ ପାର୍ଥୀବ ଶରୀର ମୁଠାଏ ପାଉଁଶରେ ପରିଣତ ହୋଇଥିଲା । ଆଉ ରହିଗଲା ଓଡ଼ିଶାବାସୀଙ୍କ ମାନସପଟରେ ଓଡ଼ିଆ ରଙ୍ଗମଞ୍ଚର ଏକ ଶତାବ୍ଦୀର ଇତିହାସରେ, ତାଙ୍କ ଅବିସ୍ମରଣୀୟ ଅବଦାନର ଅଲିଭା ଆଲେଖ୍ୟ ।





# ନବମ ଅଧ୍ୟାୟ

## ସମସାମୟିକ କଳାକାର

**ବନମାଳୀ ପତି :**

ଉନବିଂଶ ଶତାବ୍ଦୀର ସପ୍ତମ ଦଶକରୁ ଓଡ଼ିଶାର ରାଜା, ଜମିଦାରମାନେ ନିଜ ନିଜର ଉଆସ ମାନଙ୍କରେ ଏକମୁଖି ମଞ୍ଚମାନ ଗଢ଼ି ପ୍ରଥମେ ବଙ୍ଗଳା ଅନୁବାଦ ନାଟକ ନିଜ କର୍ମଚାରୀମାନଙ୍କ ଦ୍ୱାରା ଅଭିନୀତ କରାଉଥିଲେ । ଏଗୁଡ଼ିକ ସମ୍ଭ୍ରାନ୍ତ ରଙ୍ଗମଞ୍ଚ ଭାବେ ପରିଚିତ ଥିଲା । ତା ପୁଣି ବର୍ଷରେ ଥରେ ଦୁଇଥର । ସାଧାରଣ ଜନତାର ସେଠାରେ ପ୍ରବେଶ ଅଧିକାର ନଥିଲା । ପରେ ପରେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଅନୁଗୁଳ, ଖୋର୍ଦ୍ଧା, ଯାଜପୁର ପ୍ରଭୃତିରେ ସରକାରୀ ଅମଲାମାନଙ୍କ ଚିତ୍ତବିନୋଦନ ନିମନ୍ତେ ତତ୍କାଳୀନ ବିଦେଶୀ ସରକାରଙ୍କ ଆୟୋଜନରେ ଗୋଟିଏ ଗୋଟିଏ ଏକମୁଖୀ ମଞ୍ଚ ଗଢ଼ାଯାଇଥିଲା । ଏଥିପାଇଁ ସରକାରୀ ସାହାଯ୍ୟ ଓ ସର୍ବସାଧାରଣରୁ ଚାନ୍ଦା ଉଠାଯାଉଥିଲା । ଏଗୁଡ଼ିକରେ ସେହି ବଙ୍ଗଳା ଅନୁବାଦ ନାଟକ ଅଭିନୟ କରାଯାଉଥିଲା । ସରକାରୀ କର୍ମଚାରୀ ଓ ସେମାନଙ୍କ ପରିବାରବର୍ଗ ଉପଭୋଗ କରୁଥିଲେ ।

ଓଡ଼ିଆ ଭାଷାରେ ମୌଳିକ ନାଟକ ପ୍ରଥମେ ୧୮୭୭ ମସିହାରେ ଆଦି ନାଟ୍ୟକାର ଶ୍ରୀ ଜଗନ୍ମୋହନ ଲାଲାଙ୍କ ଦ୍ୱାରା ରଚିତ ହୋଇଥିଲା । ପରେ ରାମଶଙ୍କର ରାୟ, ଭିକାରୀ ଚରଣ ପଟ୍ଟନାୟକ ଓ କାମପାଳ ମିଶ୍ର ପ୍ରମୁଖ ସ୍ୱରଚିତ ନାଟକମାନ ନିଜ ନିଜ ପରିସରରେ ଅସ୍ଥାୟୀ ରଙ୍ଗମଞ୍ଚମାନ ଗଢି ପରିବେଷଣ କରିଥିଲେ । ଏଥିଯୋଗୁଁ ସାଧାରଣ ଜନତା ନାଟକ ଦେଖିବାର ସୁଯୋଗ ପାଇଲେ । ଏମାନଙ୍କ ମଧ୍ୟରୁ କେହି ସେତେବେଳର ସରକାରୀ କର୍ମଚାରୀ ଅଥବା ଆଇନଜୀବୀ ଥିଲେ ।

ବହୁ ପୁରାତନ କାଳରୁ ଓଡ଼ିଆ ଭାଷୀ ଜନସାଧାରଣ ଲୀଳା, ସୁଆଙ୍ଗ, ତାମସା, ଆଖଡା ଓ ଯାତ୍ରା ଦଳ ପ୍ରଭୃତି କଳାକୃତୀ ସହିତ ପରିଚିତ ଥିଲେ । ତାହା ଓଡ଼ିଶାର ମୌଳିକ ନାଟ୍ୟ କଳା ଭାବରେ ସୁଖ୍ୟାତି ଲାଭ କରିଥାଏ । ସେଥିପାଇଁ ପଡୋଶୀ ପ୍ରଦେଶର ନାଟ୍ୟ ସମାଲୋଚକମାନେ ମତ ଦିଅନ୍ତି ଯେ, ଓଡ଼ିଆର ନାଟ୍ୟ କଳାମାନ ଯାତ୍ରା ଆଉ ତାମସା ଛଡ଼ା ଆଉକିଛି ନୁହେଁ । ଏଭଳି ମନ୍ତବ୍ୟ ସେତେବେଳର ଶିକ୍ଷିତ ଓଡ଼ିଆଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କଲା । ନୟାଗଡ଼ ରାଜସିଂହାସନର ଉତ୍ତରାଧିକାରୀ ଗୋବିନ୍ଦ ଚନ୍ଦ୍ର ସୁରଦେଓ ରାଜସିଂହାସନର ଲୋଭକୁ ଦୂରେଇ ଦେଇ ସ୍ୱରଚିତ 'ରାସଲୀଳା'କୁ ନିଜସ୍ୱ ଏକମୁଖୀ ମଞ୍ଚରେ ଅଭିନୀତ କରିଥିଲେ ଓ ଏହିପରି ଭାବରେ ଓଡ଼ିଶାର ଗାଁ ଗହଳରେ ଏକମୁଖୀ

ମଞ୍ଚରେ ଆମ ଭାଷା ଓ ସଂସ୍କୃତି ପ୍ରଚାରିତ ହେଲା । ତାଙ୍କ ପରେ ପୁରୀର ପ୍ରଭୁପାଦ ମୋହନ ସୁନ୍ଦର ଦେବ ଗୋସ୍ୱାମୀ, ବାବାଜୀ ବୈଷ୍ଣବ ଚରଣ ଦାସ, କାଳୀଚରଣ ପଟ୍ଟନାୟକ ପ୍ରମୁଖ ଗୋଟିଏ ଗୋଟିଏ ରାସଦଳ ଗଢ଼ି ଗାଁ ଗହଳରୁ ଅଭାବଗ୍ରସ୍ତ ପରିବାରର ବାଳକମାନଙ୍କୁ ସଂଗ୍ରହ କରି ନିଜ ନିଜ ରଚିତ ରାସଲୀଳା ଶିକ୍ଷା ଦେଇ ସାରା ଓଡ଼ିଶାରେ, କେହି କେହି କଲିକତା ଓ ନଦୀଆ ନବଦ୍ୱୀପରେ ମଧ୍ୟ ଓଡ଼ିଆ ଯାତ୍ରାର ପରିପ୍ରଚାର କରିଥିଲେ ।

ପୁରୀ ଜିଲ୍ଲା ବଳଙ୍ଗାର ଶ୍ରୀ ବନମାଳୀ ପତି ଜଣେ ନାଟ ତାମସା ପ୍ରିୟ ବ୍ୟକ୍ତି । ନିଜ ପୃଷ୍ଠପୋଷକତାରେ ସେ ଗୋଟିଏ ସଙ୍ଗୀତ ଦଳ (ଗୋଟି ପୁଅ) ଗଢ଼ିଥିଲେ । ପରେ ତାକୁ ଯାତ୍ରାଦଳରେ ପରିଣତ କରିଥିଲେ । ବଙ୍ଗୀୟ ଜମିଦାରଙ୍କର ନାଏବ ନାଜର ଭାବରେ ସେଥିଲେ ଅତ୍ୟନ୍ତ ପ୍ରତିପତିଶାଳୀ ଓ ଜାତୀୟ ଭାବାପନ୍ନ ବ୍ୟକ୍ତି । ସେ ଜମିଦାରୀ କାର୍ଯ୍ୟରେ କଲିକତା ଯାତ୍ରା କଲାବେଳେ ସେଠାରେ ବଙ୍ଗଳା ରଙ୍ଗମଞ୍ଚରେ ନାଟକ ଅଭିନୟ ଦେଖିଲେ । ସେଠାରୁ ଫେରି ନିଜ ଯାତ୍ରାଦଳକୁ ବନ୍ଦ କରି ଗୋଟିଏ ଥିଏଟର୍ ଗଢ଼ିଲେ । ତାଙ୍କ ଇଷ୍ଟଦେବତା ରାଧାକୃଷ୍ଣଙ୍କ ନାମାନୁସାରେ 'ରାଧାକୃଷ୍ଣ ଥିଏଟର୍' ନାମକରଣ କଲେ ।

## ପ୍ରମାଦ ପୂର୍ଣ୍ଣ ତଥ୍ୟ

କେତେକ କହନ୍ତି ଯେ, ବନମାଳୀ ପତି କୌଣସି ଏକ ଥିଏଟର୍ ଦେଖିବା ପାଇଁ ପ୍ରେକ୍ଷାଳୟକୁ ଯିବାବେଳେ ଉପଯୁକ୍ତ ଆସନ ପାଇନଥିଲେ । ଏଣୁ ସେ କ୍ରୋଧରେ ଫେରି ଆସି ରାଧାକୃଷ୍ଣ ଥିଏଟର୍ ଦଳ ଗଠନ କରିଥିଲେ । ମାତ୍ର ଏହା ସମ୍ପୂର୍ଣ୍ଣ ଭୁଲ୍ ।

କେହି କେହି ମତ ଦିଅନ୍ତି ଏକମୁଖୀ ମଞ୍ଚ ଆମର ନିଜସ୍ୱ ନାଟ୍ୟକଳା ନୁହେଁ, ବଙ୍ଗଳା ବାଟ ଦେଇ ଓଡ଼ିଶାକୁ ଆସିଛି । ଏହା ହେଉଛି 'ଅମଲା ଥିଏଟର' । ମାତ୍ର ଆମ ପ୍ରାଚୀନ ଯୁଗରେ ସମ୍ରାଟ ଖାରବେଳ ରଙ୍ଗମଞ୍ଚ ନିର୍ମାଣ କରାଇଥିବାର ପ୍ରମାଣ ରହିଅଛି । କେଶରୀ ବଂଶ ଓ ଗଙ୍ଗବଂଶର ଗଜପତିମାନେ ମଧ୍ୟ ସୌଖୀନ ରଙ୍ଗମଞ୍ଚ ନିର୍ମାଣ କରିଥିବାର ପ୍ରମାଣ ଏବେ ବି ଖଣ୍ଡଗିରି ଉଦୟଗିରିର ପ୍ରସ୍ତର ଗାତ୍ରରେ ଖୋଦିତ ହୋଇ ରହିଛି । ମାତ୍ର କାଳକ୍ରମେ ବିଦେଶୀମାନଙ୍କ କୋପ ଦୃଷ୍ଟି ପଡି ଆମ କଳାସଂସ୍କୃତି ଲୋପ ପାଇଗଲା । ଜନମାନସର ଅନ୍ତରାଳରେ ଲୁଚି ରହିଗଲା ନାଟ୍ୟ ଶାସ୍ତ୍ର ପ୍ରଣେତା ମହାମୁନି ଭରତଙ୍କର ରଙ୍ଗମଞ୍ଚ ଗଠନର ସୂଚନା ।

ବଳଙ୍ଗାର ରାଧାକୃଷ୍ଣ ଥିଏଟର୍ କେତେଗୁଡ଼ିଏ ନାଟକ ପ୍ରସ୍ତୁତ କରି କଟକ ମେହେନ୍ଦିପୁରସ୍ଥ ବାସନ୍ତି ରଙ୍ଗମଞ୍ଚରେ ଧାରାବାହିକ ଭାବରେ ଅଭିନୟ କରିଥିଲେ । ତାହାପରେ ଏକ ଭ୍ରାମ୍ୟମାଣ ଦଳଭାବେ ସାରା ଓଡ଼ିଶା ମଧ୍ୟରେ ଓଡ଼ିଆ ନାଟକ ପରିବେଷଣ କରିଥିଲେ ।

ଥିଏଟର୍ କାର୍ଯ୍ୟରେ ସେ ଅଧିକ ସମୟ ଦେବାଦ୍ୱାରା ବନମାଳୀ ପତିଙ୍କର ଜମିଦାରୀ କାର୍ଯ୍ୟରେ ବାଧା ପଡିଲା । ଏଣୁ ତାଙ୍କର ପ୍ରଜାପାଟକ ଖାତକ ଓ ଭାଇମାନଙ୍କ ପାଖରେ ବିରାଗର ପାତ୍ର ହେଲେ । ଜମିଜମା ସଂକ୍ରାନ୍ତ ମାଲି ମକଦମା ବର୍ଷ ବର୍ଷ ଧରି ଫଇସଲା ହୋଇ ପାରିଲା ନାହିଁ । ଏହି କାରଣରୁ ତାଙ୍କର ଶତ୍ରୁ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା । କଟକ ଓ ପୁରୀ ସହରରେ ଦୁଇଜଣ ବିଶିଷ୍ଟ ଓକିଲ ତାଙ୍କର ଦୁଇ ଜାମାତା ଥିଲେ ଓ ସେମାନେ ମାଲିମକଦ୍ଦମା କଥା ବୁଝୁଥିଲେ । ରାଧାକୃଷ୍ଣ ଥିଏଟର୍‌ର ପ୍ରତିଷ୍ଠାତା ହିସାବରେ ସେତେବେଳେ ସରକାରୀ ଦପ୍ତର କର୍ମଚାରୀ ଓ କର୍ମକର୍ତ୍ତା ମହଲରେ ପତି ମହାଶୟଙ୍କର ବିଶେଷ ଖ୍ୟାତି ବଢ଼ିଯାଇଥିଲା । ଓଡ଼ିଶା ଗଡ଼ଜାତର ରାଜା ମହାରାଜାମାନଙ୍କର ବିଭିନ୍ନ ଉତ୍ସବକୁ ରାଧାକୃଷ୍ଣ ଥିଏଟର୍ ନିମନ୍ତ୍ରଣ ପାଇ ନାଟକ ପ୍ରଦର୍ଶନ କରନ୍ତି । କିନ୍ତୁ ମୟୂରଭଞ୍ଜ ରାଜାଙ୍କ ତରଫରୁ ଯେତେ ଉତ୍ସବ ହୁଏ, ବଙ୍ଗଳା ଥିଏଟର୍ ନିମନ୍ତ୍ରଣ ପାଏ । ମୟୂରଭଞ୍ଜ ଷ୍ଟେଟରେ ସେତେବେଳେ ଅଧିକାଂଶ ପରିମାଣରେ ବଙ୍ଗଭାଷୀମାନେ ଉଚ୍ଚ ପଦବୀରେ ଚାକିରୀ କରିଥାନ୍ତି । ତୁଳନାତ୍ମକ ଭାବରେ ଓଡ଼ିଆମାନଙ୍କର ସଂଖ୍ୟା କମ୍ ଥାଏ । ସେହିମାନଙ୍କ ସହାୟତା ପାଇ ବନମାଳୀ ପତି ମୟୂରଭଞ୍ଜ ମାହାରାଜାଙ୍କୁ ସାକ୍ଷାତ କରି ଜଣାଇଲେ ଯେ ଓଡ଼ିଶାର ରାଜନ୍ୟ ମଣ୍ଡଳୀଙ୍କର ନିମନ୍ତ୍ରଣ ପାଇ ତାଙ୍କ ଦଳର ଓଡ଼ିଆ କଳାକାରମାନେ ଓଡ଼ିଆ ନାଟକ ଅଭିନୟ କରି ପ୍ରଶଂସିତ ହୋଇଛି । କିନ୍ତୁ ଏପର୍ଯ୍ୟନ୍ତ ମୟୂରଭଞ୍ଜ ରାଜଦରବାରର ଶୁଭ ଦୃଷ୍ଟି ପଡିଲା ନାହିଁ । ମୟୂରଭଞ୍ଜ ମହାରାଜାଙ୍କ ଡାକରା ପାଇ କଲିକତାରୁ ମିନର୍ଭା ଥିଏଟର୍ ବଙ୍ଗଳା ଭାଷାରେ 'କର୍ଣ୍ଣାର୍ଜୁନ' ନାଟକ ଅଭିନୟ କରିବେ ବୋଲି ସ୍ଥିର ହୋଇଥାଏ । ଶ୍ରୀ ପତି ମହାରାଜାଙ୍କୁ ଜଣାଇଥିଲେ ଯେ ସେହି କର୍ଣ୍ଣାର୍ଜୁନ ନାଟକକୁ ଓଡ଼ିଆରେ ଅନୁବାଦ କରି ତାଙ୍କ ଅନୁଷ୍ଠାନର କଳାକାରମାନେ ବିଭିନ୍ନ ସ୍ଥାନରେ ଅଭିନୟ କରିଛନ୍ତି ଓ ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ସେହି କର୍ଣ୍ଣାର୍ଜୁନ ନାଟକ ଗୋଟିଏ ରାତି ଅଭିନୟ କରିବାକୁ ସେ ଅନୁମତି ମାଗିଲେ । ନିଜ ଖର୍ଚ୍ଚରେ ଆସି ତିନିଦିନ ପାଇଁ ନାଟକ ପରିବେଷଣ କରିବାକୁ ଶ୍ରୀ ପତି ପ୍ରସ୍ତାବ ଦେଲେ । ଓଡ଼ିଆ ଭାଷା ଓ ସଂସ୍କୃତିର ବିକାଶ ପାଇଁ ଶ୍ରୀ ପତିଙ୍କର ଉତ୍କଣ୍ଠା ଏଥିରୁ ପ୍ରମାଣିତ ହୁଏ ।

ମହାରାଜ ପୂର୍ଣ୍ଣଚନ୍ଦ୍ର ଭଞ୍ଜ ସମସ୍ତ ଯାତାୟତ ଓ ଆନୁଷଙ୍ଗିକ ଖର୍ଚ୍ଚ ମୟୂରଭଞ୍ଜ ରାଜକୋଷରୁ ଯୋଗାଇଦେବା ପାଇଁ ସ୍ୱୀକୃତି ଦେଲେ ।

ଶ୍ରୀ ପତି କଟକ ଫେରିଆସି ବାସନ୍ତି ରଙ୍ଗମଞ୍ଚରେ 'କର୍ଣ୍ଣାର୍ଜୁନ' ନାଟକ ପୂର୍ବାଭିନୟ (Rehearsal) କରାଇଲେ । କଟକ, ପୁରୀ, ଖୋର୍ଦ୍ଧା ଓ ଯାଜପୁରରୁ ଏହି ନାଟକ ପାଇଁ ଖ୍ୟାତି ସଂପନ୍ନ ଶିକ୍ଷିତ ଅଭିନେତା ସଂଗ୍ରହକରି ପନ୍ଦର ଦିନ କାଳ ପୂର୍ବାଭିନୟ କରାଇଲେ । ନାଟ୍ୟନିର୍ଦ୍ଦେଶକ ଭାବରେ ବଲାଇ ଚାନ୍ଦ ବାନାର୍ଜ୍ଜୀଙ୍କୁ ଦାୟିତ୍ୱ ଦିଆଗଲା ଏବଂ ନିଜେ ଶକୁନି ଚରିତ୍ରରେ ଅଭିନୟ କଲେ । ନିର୍ଦ୍ଧାରିତ ସମୟରେ ମୟୂରଭଞ୍ଜ ରାଜ୍ୟରୁ ଗାଡି ଆସି ପହଞ୍ଚିଗଲା । କର୍ଣ୍ଣାର୍ଜୁନ ନାଟକ ପାଇଁ ସିନ୍, ସେଟିଙ୍ଗ୍ ଓଡ଼ିଆ ଚିତ୍ରଶିଳ୍ପୀଙ୍କ ଦ୍ୱାରା ପ୍ରସ୍ତୁତ ହୋଇ ବାରିପଦା ପଠାଗଲା । ଆଗରୁ ନିର୍ଦ୍ଧାରିତ ହୋଇଥିଲା ବଙ୍ଗଳା ନାଟକ କର୍ଣାର୍ଜୁନ ଅଭିନୀତ ହେବ । ପରେ ସ୍ଥିର କରାଗଲା ଓଡ଼ିଆ ଭାଷାରେ ଓଡ଼ିଆ କଳାକାରମାନଙ୍କ ଦ୍ୱାରା କର୍ଣ୍ଣାର୍ଜୁନ ନାଟକ ଦ୍ୱିତୀୟ ଦିନ ଅଭିନୀତ ହେବ ।

ପୂର୍ବ ନିର୍ଦ୍ଧାରିତ ଅନୁଯାୟୀ ପ୍ରଥମ ରଜନୀରେ ମିନର୍ଭା ଥିଏଟର୍‌ର କଳାକାରମାନେ ବଙ୍ଗଳା ଭାଷାରେ ଅଭିନୟ କଲେ । ବଙ୍ଗଳା ରଙ୍ଗମଞ୍ଚର ଶ୍ରୀ ନରେଶ ଚନ୍ଦ୍ର ମିତ୍ର ସେତେବେଳେ କର୍ଣ୍ଣାର୍ଜୁନ ନାଟକରେ ଶକୁନି ଚରିତ୍ରରେ ଅପ୍ରତିଦ୍ୱନ୍ଦୀ ଅଭିନେତା ଭାବେ ସ୍ୱୀକୃତି ଲାଭ କରିଥାନ୍ତି । ସେଦିନର ବିଭିନ୍ନ ରାଜ୍ୟର ରାଜନ୍ୟମଣ୍ଡଳୀ ଓ ତତ୍କାଳୀନ ବ୍ରିଟିଶ୍ ସରକାରଙ୍କ ଉଚ୍ଚ ପଦସ୍ଥ ଗୋରା ଅଫିସର୍‌ମାନେ ଦର୍ଶକଭାବେ ଉପସ୍ଥିତ ଥିଲେ ।

ଦ୍ୱିତୀୟ ଦିନରେ ଓଡ଼ିଶାର କଳାକାର ମାନଙ୍କ ଦ୍ୱାରା ଓଡ଼ିଆ ଭାଷାରେ କର୍ଣ୍ଣାର୍ଜୁନ ନାଟକ ଅଭିନୀତ ହେଲା । ସେଦିନ ସ୍ୱତନ୍ତ୍ର ଭାବରେ ବଙ୍ଗ ରଙ୍ଗମଞ୍ଚର କଳାକାରମାନଙ୍କୁ ଓଡ଼ିଆ ନାଟକ ଦେଖିବା ନିମନ୍ତେ ନିମନ୍ତ୍ରଣ କରାଯାଇଥିଲା । ଯାହାକୁ ଯେଉଁ ଚରିତ୍ରରେ ଅଭିନୟ କରିବା ପାଇଁ ଦିଆଯାଇଥିଲା ସମସ୍ତେ ଥିଲେ ଏକୁ ଆରେକ ବଳିୟାନ୍ । ନିଜ ଜାତିର ସ୍ୱାଭିମାନ ରକ୍ଷା କରିବା ପାଇଁ ସମସ୍ତେ ସଚେଷ୍ଟ ଥିଲେ । ସେଦିନର ଅଭିନୟ ସମବେତ ଦର୍ଶକ ମଣ୍ଡଳୀକୁ ଅଭିଭୂତ କରିଦେଇଥିଲା ।

ନାଟକ ଶେଷରେ ବଙ୍ଗ ରଙ୍ଗମଞ୍ଚର ଶକୁନି ଚରିତ୍ରର ଅପ୍ରତିଦ୍ୱନ୍ଦୀ ଅଭିନେତା ଶ୍ରୀ ନରେଶ ଚନ୍ଦ୍ର ମିତ୍ର ଓଡ଼ିଆ କର୍ଣ୍ଣାର୍ଜୁନ ନାଟକର ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଶକୁନି ଚରିତ୍ରରେ ଅଭିନୟ କରିଥିବା ବଲାଇ ଚନ୍ଦ୍ର ବାନାର୍ଜ୍ଜୀଙ୍କୁ କହିଥିଲେ ଯେ ତାଙ୍କର ରଙ୍ଗମଞ୍ଚର ଶକୁନୀ ଚରିତ୍ରରେ ଅପ୍ରତିଦ୍ୱନ୍ଦୀ ଅଭିନେତା ଭାବରେ ଯେଉଁ ଅଂହକାର ଥିଲା ସେ ଅହଂକାରକୁ ବଲାଇ ଚନ୍ଦ୍ର ବାନାର୍ଜ୍ଜୀ ଭାଙ୍ଗି ଦେଲେ ।

ଓଡ଼ିଆ ନାଟକର ବିକାଶ ତଥା ନୂଆ ନୂଆ କଳାକାର ଓ ନାଟକ ସୃଷ୍ଟି କରିବା ପାଇଁ ଓଡ଼ିଶାର ପ୍ରାଣକେନ୍ଦ୍ର କଟକ ସହରରେ ଏକ ସ୍ଥାୟୀ ରଙ୍ଗମଞ୍ଚ ପ୍ରୟୋଜନ

ମନେକରି ବାସନ୍ତି ରଙ୍ଗମଞ୍ଚର ମାଲିକ ଶ୍ରୀ କୁଞ୍ଜ ବିହାରୀ ବୋଷଙ୍କ ଠାରୁ ବନମାଳୀ ପତି ତାହାକୁ କିଣିନେଲେ ।

ତାଙ୍କର ଯୋଜନା ଥିଲା ବର୍ଷରେ ପାଞ୍ଚମାସ ସ୍ଥାୟୀ ରଙ୍ଗମଞ୍ଚରେ ରାଧାକୃଷ୍ଣ ଥିଏଟର୍ କଳାକାରମାନେ ରହି ନୂଆ ନୂଆ ନାଟକ ପ୍ରସ୍ତୁତି କରିବେ । ଅବଶିଷ୍ଟ ସାତ ମାସ କଟକ ବାହାରେ ବିଭିନ୍ନ ସ୍ଥାନରେ ଭ୍ରମଣ କରି ନାଟକ ପ୍ରଦର୍ଶନ କରିବେ । ଥିଏଟର୍ ପାଇଁ ଅଧିକ ସମୟ ଦେବା ଦ୍ୱାରା ସେ ନିଜ ଗାଁ ବଳଙ୍ଗାରେ ରହି ପାରିଲେ ନାହିଁ । ତାଙ୍କ ଅନୁପସ୍ଥିତିର ସୁଯୋଗ ନେଇ ଗାଁ ଗହଳରେ ତାଙ୍କର ଶତ୍ରୁ ସଂଖ୍ୟା ବଢିବାରେ ଲାଗିଲେ । ତାଙ୍କୁ ଜୀବନରେ ମାରିଦେବା ପାଇଁ ଷଡଯନ୍ତ୍ର ଚାଲିଲା ଓ ଏଥିପାଇଁ ଭଡାଟିଆ ଗୁଣ୍ଡାଙ୍କୁ ଲଗାଗଲା । ଏଣେ ପତିଙ୍କ ବିଶ୍ୱସ୍ତ କର୍ମଚାରୀ ଓ ଶୁଭଚିନ୍ତକମାନେ ଜମିଦାରିରୁ କିଛି ବ୍ୟକ୍ତିଙ୍କୁ ଯୋଗାଡ଼କରି ତାଙ୍କର ଦେହରକ୍ଷୀ ଭାବେ ନିଯୁକ୍ତି ଦେଲେ । ଜମିଦାରିର ମାଲିମକଦ୍ଦମା କାର୍ଯ୍ୟରେ ସେ କଟକ, ପୁରୀ, ଜଟଣୀ ପ୍ରଭୃତି ବିଭିନ୍ନ କ୍ୟାମ୍ପକୁ ଯାଉଥିଲେ । ବଳଙ୍ଗା ଫେରିବା ପାଇଁ ସାକ୍ଷିଗୋପାଳ, ଡେଲାଙ୍ଗ ଓ ଭୁବନେଶ୍ୱର ଷ୍ଟେସନ ମଧ୍ୟରୁ କେଉଁ ବାଟଦେଇ ଆସିବେ ତାହା କେବଳ ତାଙ୍କର ଆତ୍ମୀୟ ମାନେ ହିଁ ଜାଣୁଥିଲେ । ଏହି ଛକାପଞ୍ଝା ଭିତରେ ତାଙ୍କର ଶୁଭଚିନ୍ତକମାନେ ଥିଏଟର୍ ବନ୍ଦ କରିଦେବାକୁ ପରାମର୍ଶ ଦେଲେ ମାତ୍ର ସେ ଏହାକୁ ଶ୍ରବଣ କଲେ ନାହିଁ । ଦିନେ ନିରାପତ୍ତାରକ୍ଷୀମାନଙ୍କୁ ସାଙ୍ଗରେ ନନେଇ ଭାର୍ଗବୀ ନଦୀରେ ସ୍ନାନ ତର୍ପଣ ସାରି ବଳଙ୍ଗା ହାଟ ମଧ୍ୟ ଦେଇ ନିଜ ଘରକୁ ଯିବା ବାଟରେ ଗୁଣ୍ଡାମାନେ ତାଙ୍କୁ ହାତହତିଆର ସାହାଯ୍ୟରେ ଆକ୍ରମଣ କରି ହତ୍ୟାକଲେ । ତାଙ୍କ ବିୟୋଗ ପରେ ରାଧାକୃଷ୍ଣ ଥିଏଟର୍ ବନ୍ଦ ହୋଇଗଲା ।

## ଅଶ୍ୱିନୀ କୁମାର ଘୋଷ :

ପ୍ରବଳ ଝଡ଼ ତୋଫାନରେ ଗୋଟିଏ ବିରାଟ ପୁରୁଣା ଘର ଭାଙ୍ଗି ଗଲେ ଯେମିତି କେତୋଟି ଖୁଣ୍ଟ ଠିଆ ହୋଇଥାଏ, ସେହି ଘରର ସ୍ମୃତିର ସ୍ମାରକୀ ବହନ କରି, ଠିକ୍ ସେହିପରି ୧୯୨୮ ମସିହାରେ ରାଧାକୃଷ୍ଣ ଥିଏଟର୍‌ର ପତନପରେ ତା'ର ସ୍ମୃତିକୁ ଭୁଲିପାରିଲେ ନାହିଁ ତିନିଜଣ ସୁଯୋଗ୍ୟ କଳାକାର । ସେମାନେ ହେଲେ, ନାଟ୍ୟକାର ଅଶ୍ୱିନୀ କୁମାର ଘୋଷ, ନାଟ୍ୟଗୁରୁ ରାମଚନ୍ଦ୍ର ମାଣିଆ ଓ ନାଟ୍ୟ ନିର୍ଦ୍ଦେଶକ ତଥା ପରିଚାଳକ ଶ୍ରୀ ବଲାଇ ଚାନ୍ଦ ବାନାର୍ଜୀ । ୧୯୧୨ ରୁ ୧୯୨୮ ମସିହା ପର୍ଯ୍ୟନ୍ତ ଦୀର୍ଘ ୧୬ ବର୍ଷ କାଳ ନିରବଚ୍ଛିନ୍ନ ଭାବେ ଓଡ଼ିଆ ନାଟକ ଓ ଏକମୁଖୀ

ମଞ୍ଚରେ ଅଭିନୟ କରି ଏମାନେ ଆମର ଭାଷା ଓ ସଂସ୍କୃତିକୁ ସୁରକ୍ଷା କରିବା ସଙ୍ଗେ ଜନସାଧାରଣଙ୍କ ମଧ୍ୟରେ ନାଟ୍ୟ ଚେତନା ଜାଗ୍ରତ କରିବା ଦିଗରେ ଏକ ଗୌରବମୟ ଅଧ୍ୟାୟ ସୃଷ୍ଟି କରିଥିଲେ । ଏମାନଙ୍କ ମଧ୍ୟରୁ ପ୍ୟାରିମୋହନ ଏକାଡେମୀର ପ୍ରଧାନ ଶିକ୍ଷକ ନାଟ୍ୟକାର ଶ୍ରୀ ଅଶ୍ୱିନୀ କୁମାରଙ୍କ ପରିବାର ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ଥିଲେ । ତାଙ୍କର ପାଞ୍ଚ ଭାଇ ମଧ୍ୟରୁ ସେ ଥିଲେ ବଡ଼ଭାଇ ଓ ପିତାଙ୍କର ଅଚଳାଚଳ ସମ୍ପତ୍ତିର ଉତ୍ତରାଧିକାରୀ । ସେ ନୂଆ ନୂଆ ନାଟକ ରଚନା କରି ପରୀକ୍ଷା ପାଇଁ ଯେଉଁ ଯେଉଁ ସୁଯୋଗ ପାଉଥିଲେ ତାହା ବନ୍ଦ ହୋଇଗଲା । ଏଥିସଙ୍ଗେ ସଙ୍ଗେ ତାଙ୍କର ନୂଆ ନାଟକ ରଚନା ମଧ୍ୟ ବନ୍ଦ ହୋଇଗଲା । ଦ୍ୱିତୀୟ ବ୍ୟକ୍ତି ହେଲେ ନାଟ୍ୟଗୁରୁ ରାମଚନ୍ଦ୍ର ମାଣିଆ, ସେ ମାତ୍ର ୭/୮ ବର୍ଷ ବୟସରେ ଗୋଟି ପୁଅ ଦଳ ଓ ତା'ପରେ ଯାତ୍ରା ଦଳରେ ଯୋଗଦେଇ ୧୯୧୨ ମସିହାରୁ ବନମାଳୀ ପତିଙ୍କ ରାଧାକୃଷ୍ଣ ଥିଏଟର୍ ସହିତ ଓତପ୍ରୋତ ଭାବେ ଜଡ଼ିତ ରହିଥିଲେ । ଜଣେ ସାର୍ଥକ ଗାୟକ, ନର୍ତ୍ତକ, ଶିକ୍ଷକ ଭାବେ ସେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ତାଙ୍କର ସାଧନା ପୀଠର ପତନରେ ସେ ବିଶେଷ ବିବ୍ରତ ହୋଇପଡ଼ିଲେ । ତୃତୀୟ ବ୍ୟକ୍ତି ହେଲେ ବଲାଇଚାନ୍ଦ ବାନାର୍ଜୀ, ତାଙ୍କର ନିଜ ସମ୍ପତ୍ତିର ଅଭାବ ନଥିଲା । ଏକଦା ଓଡ଼ିଆମାନେ ଯାତ୍ରା ଛଡା କିଛି କରି ଜାଣନ୍ତିନି; ଏହି ଉକ୍ତିରେ କ୍ଷୁବ୍ଧହୋଇ ପରିବାରର ମମତା ଓ ଆଇନ ବ୍ୟବସାୟକୁ ଛାଡ଼ି, ନିଜର ବିବାହ ପ୍ରସ୍ତାବକୁ ପ୍ରତ୍ୟାଖାନ କରି ଓଡ଼ିଶାର ପ୍ରଥମ ବ୍ୟବସାୟୀକ ନାଟ୍ୟାନୁଷ୍ଠାନ 'ରାଧାକୃଷ୍ଣ ଥିଏଟର୍'ରେ ଯୋଗ ଦେଇଥିଲେ । ତାଙ୍କରି ସାଧନା ଫଳରେ ଓଡ଼ିଶାବାସୀ ଯାତ୍ରା, ତାମସା ଓ ସୁଆଙ୍ଗ କରିବା ସହ ଏକମୁଖୀ ରଙ୍ଗମଞ୍ଚରେ ମଧ୍ୟ ଉଚ୍ଚକୋଟିର ଅଭିନୟ କରିପାରନ୍ତି, ସେ ତାହା ପ୍ରମାଣ କରି ଦେଇଥିଲେ । ରାଧାକୃଷ୍ଣ ଥିଏଟର୍ ପତନରେ ସେ ମଧ୍ୟ ମ୍ରିୟମାଣ ହୋଇପଡ଼ିଲେ, ମାତ୍ର ଆତ୍ମବିଶ୍ୱାସ ହରାଇଲେ ନାହିଁ । ପୁନଃରାୟ ଥିଏଟର ଗଢ଼ିବା ପାଇଁ ନାଟ୍ୟକାର ଅଶ୍ୱିନୀ କୁମାରଙ୍କୁ ଏମାନେ ପ୍ରବର୍ତ୍ତାଇଲେ । ତେଣୁ ଅଶ୍ୱିନୀ କୁମାର ଘୋଷ ତାଙ୍କର ଅନ୍ୟ ଭାଇଙ୍କର ସମ୍ମତି କ୍ରମେ ନାଟ୍ୟାନୁଷ୍ଠାନକୁ ପୁନର୍ଜୀବିତ କରିବା ପାଇଁ ନିଷ୍ପତ୍ତି ନେଲେ । ନୂତନ ଅନୁଷ୍ଠାନର ମୁଖ୍ୟ ପରିଚାଳକ ଭାବେ ବଲାଇ ବାବୁ ନାଟ୍ୟ ଶିକ୍ଷକ ଭାବେ ମାଷ୍ଟର ମାଣିଆ ଓ ପୃଷ୍ଠପୋଷକ ହେଲେ ଅଶ୍ୱିନୀ ବାବୁ । ରାଧାକୃଷ୍ଣ ଥିଏଟର୍‌ର ସମ୍ପତ୍ତି, ସିନ୍, ସିନେରି, ବାଦ୍ୟଯନ୍ତ୍ର ଓ ଅନ୍ୟାନ୍ୟ ଉପକରଣ ପତି ମହାଶୟଙ୍କ ଜାମାତାଙ୍କଠାରୁ ଖରିଦ୍ କଲେ । କିଛି ନଗଦ ଟଙ୍କା ଦେଇ, ବାକି ଟଙ୍କା

ପରିଶୋଧ କରିବା ଲାଗି ଋଣପତ୍ର ଦେଇ ନୂତନ ଥିଏଟର୍‌ର ନାମ କରଣ କରାଗଲା 'ବନମାଳୀ ଆର୍ଟ ଥିଏଟର୍' ସ୍ୱର୍ଗତ ବନମାଳୀ ପତିଙ୍କର ସ୍ମୃତି ଉଦ୍ଦେଶ୍ୟରେ ।

ରାଧାକୃଷ୍ଣ ଥିଏଟର୍‌ର ପୂର୍ବତନ କଳାକାରମାନଙ୍କ ମଧ୍ୟରୁ କେତେକ ଏଥିରେ ଯୋଗଦେଲେ । ପରେ ବହୁ ନୂତନ କଳାକାର ଓ ସଙ୍ଗୀତଜ୍ଞ ମଧ୍ୟ ଯୋଗଦେଲେ । ବାସନ୍ତୀ ରଙ୍ଗମଞ୍ଚରେ ଅଭିନୟ କରିବା ପାଇଁ ବନମାଳୀ ଆର୍ଟ ଥିଏଟର୍ ଭଡା ସୂତ୍ରରେ ତାହାକୁ ବ୍ୟବହାର କଲେ । କେତେଗୁଡ଼ିଏ ନୂଆ ନାଟକ ମଧ୍ୟ ପ୍ରସ୍ତୁତ କରାଗଲା । ୧୯୨୮ ମସିହାରୁ ୧୯୩୪ ମସିହା ପର୍ଯ୍ୟନ୍ତ, ଏହି ସାତବର୍ଷ ମଧ୍ୟରେ 'ବନମାଳୀ ଆର୍ଟ ଥିଏଟର୍' ଦକ୍ଷିଣାଞ୍ଚଳ, ପଶ୍ଚିମାଞ୍ଚଳ ଓ ପୂର୍ବାଞ୍ଚଳ ଭ୍ରମଣ କରି ନାଟକ ପରିବେଷଣ କଲେ । ପୃଷ୍ଠପୋଷକ ଅଶ୍ୱିନୀ କୁମାର ଘୋଷଙ୍କର ଭାଇ କାର୍ତ୍ତିକ କୁମାର ଘୋଷଙ୍କର ଲିଖିତ ଦୁଇଟି ନାଟକ 'ମାତୃପୂଜା' ଓ 'ମୀରକାଶିମ୍' ମଧ୍ୟ ଅଭିନୀତ ହେଲା । ମାତ୍ର ବେଶିଦିନ ଅନୁଷ୍ଠାନ ବଞ୍ଚିରହିପାରିଲା ନାହିଁ । ପୃଷ୍ଠପୋଷକ ଓ ପରିଚାଳକ ମଧ୍ୟରେ ମତ ପାର୍ଥକ୍ୟ ତଥା ବିଭିନ୍ନ ଅସୁବିଧା ଯୋଗୁଁ ଧାରାବାହିକ ଭାବେ ନାଟକ ମଞ୍ଚସ୍ଥ ହୋଇପାରିଲା ନାହିଁ । ଆୟ ତୁଳନାରେ ବ୍ୟୟ ଅଧିକ ହେଲା । ସେତେବେଳେ ସୁନାମଧନ୍ୟ କଳାକାର ଭାବରେ ବଲାଇ ଚାନ୍ଦ ବାନାର୍ଜୀଙ୍କର ନାଟ୍ୟାମୋଦୀମାନଙ୍କ ମଧ୍ୟରେ ସ୍ୱତନ୍ତ୍ର ସ୍ଥାନ ରହିଥିଲା । ସେ ଏହି ଅନୁଷ୍ଠାନ ଛାଡ଼ିବା ପରେ ତାଙ୍କ ସ୍ଥାନ କେହି ପୂରଣ କରିପାରିଲେ ନାହିଁ । ବର୍ଷାଦିନ ରହଣି ପାଇଁ କଟକର ବାସନ୍ତୀ ରଙ୍ଗମଞ୍ଚ ଆଉ ମିଳିଲା ନାହିଁ । ଏଭଳି ଦୁର୍ଦ୍ଦିନ ସମୟରେ ଜୟପୁରର ମହାରାଜା ଶ୍ରୀ ବିକ୍ରମ ଦେବ ବର୍ମା ବନମାଳୀ ଆର୍ଟ ଥିଏଟର୍‌ର ଅଭିନୟରେ ମୁଗ୍ଧ ହୋଇ ଓଡ଼ିଶାର ସାଂସ୍କୃତିକ ପୀଠ କଟକ ସହରରେ ଏକ ସ୍ଥାୟୀ ରଙ୍ଗମଞ୍ଚ ପ୍ରତିଷ୍ଠା ପାଇଁ ଦଶହଜାର ଟଙ୍କା ଦେବାକୁ ପ୍ରତିଶ୍ରୁତି ଦେଲେ । କିଛି ଦିନପରେ ଉକ୍ତ ଦଶହଜାର ଟଙ୍କା ଜଣେ ନାଟ୍ୟପ୍ରେମୀ ବନ୍ଧୁଙ୍କ ହାତରେ ପଠାଇଥିଲେ । ମାତ୍ର ସେ ଟଙ୍କା ନୂତନ ରଙ୍ଗମଞ୍ଚ ଗଠନ କାର୍ଯ୍ୟରେ ଲାଗିଲା ନାହିଁ କିମ୍ବା ଅଶ୍ୱିନୀ ବାବୁ ମଧ୍ୟ ପାଇଲେ ନାହିଁ । ଏହି ଅସୁବିଧା ମଧ୍ୟରେ କ୍ରମଶଃ ୧୯୩୪ ମସିହା ଶେଷ ବେଳକୁ 'ବନମାଳୀ ଆର୍ଟ ଥିଏଟର୍' ବନ୍ଦ ହୋଇଗଲା ।

ଓଡ଼ିଶାର ଯଶସ୍ୱୀ ନାଟ୍ୟକାର ଅଶ୍ୱିନୀ କୁମାର ନିଜର ପୈତୃକ ସମ୍ପତ୍ତିକୁ ମହାଜନ କବଳରୁ ରକ୍ଷା କରିପାରିଲେ ନାହିଁ । ଶେଷକୁ ବାଧହୋଇ ସମସ୍ତ ତ୍ୟାଗ ସତ୍ତ୍ୱେ କଟକ ସହରର ଘରଦ୍ୱାର ଛାଡ଼ି କଲିକତା ଚାଲିଗଲେ ।



# ମଞ୍ଚଜଗତର ମୁକୁଟ ବିହୀନ ସମ୍ରାଟ

ପ୍ରଶାନ୍ତ ନନ୍ଦ

ମାଷ୍ଟର ମାଣିଆଙ୍କ ଭଳି ଜଣେ ପ୍ରତିଭାବାନ୍, କାଳଜୟୀ ଓ ସ୍ଥିତପ୍ରଜ୍ଞ କଳାକାର କେବଳ ଓଡ଼ିଶା ନୁହେଁ, ସାର ଭାରତବର୍ଷରେ ବିରଳ । ଓଡ଼ିଆ ରଙ୍ଗମଞ୍ଚର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ତାଙ୍କର ଆବିର୍ଭାବ । କଥାରେ ଅଛି, ଗୋଟିଏ ଜାତିର ପରିଚୟ ଏହାର ରଙ୍ଗମଞ୍ଚରୁ ମିଳିଥାଏ । ତାଙ୍କ ଭଳି କେତେକ ମୁଷ୍ଟିମେୟ କଳାକାରଙ୍କ ନିରନ୍ତର ସାଧନା ବଳରେ ଓଡ଼ିଶା ନାଟକର ମୌଳିକତା ପ୍ରତିପାଦିତ ହୋଇଥିଲା ।

ମାଷ୍ଟର ମାଣିଆ ୧୮୯୨ ମସିହାରେ ଜନ୍ମଗ୍ରହଣ କରିଥିଲେ ଓ ୧୯୭୮ରେ ତାଙ୍କର ବିୟୋଗ ହେଲା । ବାଲ୍ୟକାଳରୁ ଦୀର୍ଘ ୮୦ ବର୍ଷକାଳ କଠୋର ଅଧବସାୟ ଓ ସାଧନା ବଳରେ ବିଶିଷ୍ଟ କଳାକାର ଭାବରେ ସେ ଶୀର୍ଷସ୍ଥାନରେ ପହଞ୍ଚି ପାରିଥିଲେ । ରଙ୍ଗମଞ୍ଚର ଏଭଳି କୌଣସି ବିଭାଗ ନାହିଁ ଯେଉଁଥିରେକି ତାଙ୍କର ପାରଦର୍ଶିତା ନଥିଲା । ଏଭଳି ଜଣେ ସର୍ବଗୁଣସଂପନ୍ନ ସଂପୂର୍ଣ୍ଣ କଳାକାର ବାସ୍ତବିକ ବିରଳ ।

ମାଷ୍ଟର ମାଣିଆଙ୍କ କଳାକାର ଜୀବନ ମାତ୍ର ୭ ବର୍ଷ ବୟସରୁ ଆରମ୍ଭ । ତା'ପରେ ଗୋଟିପୁଅ, ଯାତ୍ରାଦଳ, ବଳଙ୍ଗାର ରାଧାକୃଷ୍ଣ ଥିଏଟର୍, ବନମାଳି ଆର୍ଟ ଥିଏଟର୍, ଅନ୍ନପୂର୍ଣ୍ଣା ନାଟ୍ୟ ମଣ୍ଡଳୀ, ଅବିଭାଜିତ ଅନ୍ନପୂର୍ଣ୍ଣା ଥିଏଟର୍ ଓ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ ସହିତ ସେ ଜଡ଼ିତ ଥିଲେ । ଏଗୁଡ଼ିକ ସୌଖୀନ ନାଟ୍ୟସଂସ୍ଥା ନଥିଲା । ବ୍ୟବସାୟିକ ଏକମୁଖୀ ରଙ୍ଗମଞ୍ଚ ଭାବରେ ରାଧାକୃଷ୍ଣ ଥିଏଟର୍ ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କରିଛି । ପରବର୍ତ୍ତୀ ସମୟର ପେଶାଦାର ନାଟ୍ୟ ସଂସ୍ଥାଗୁଡ଼ିକର ସେ ମୂଳଦୂଆ ପକାଇ ଥିଲେ । ପ୍ରତିବର୍ଷ ପ୍ରାୟ ଏକ ମାସରୁ ଅଧିକ ସମୟ ସେ ଜଟଣୀର ଉତ୍ତରାୟଣୀ କ୍ଲବ୍‌ରେ କଟାଉଥିଲେ । ସେଠାରେ ଏକ ରଙ୍ଗମଞ୍ଚ ପ୍ରତିଷ୍ଠା ସହ ନାଟକ ଅଭିନୟ କରିବା ପାଇଁ ମଧ ସେ ପ୍ରଥମ ଉଦ୍ୟୋକ୍ତା ଥିଲେ । ମଞ୍ଚ କଳାକାର ଭାବରେ ମୁଁ ସେଇ ସମୟରୁ ମାଷ୍ଟର ମାଣିଆଙ୍କୁ ଜାଣେ । ସେ ଅସୁମାରୀ ନାଟକରେ ବିଭିନ୍ନ ରଙ୍ଗମଞ୍ଚରେ ଦୀର୍ଘକାଳ ଧରି ଅଭିନୟ କରିଛନ୍ତି, ନୃତ୍ୟ କରିଛନ୍ତି, ନିର୍ଦ୍ଦେଶନା ଦେଇଛନ୍ତି ଓ ମଞ୍ଚସଜ୍ଜା ପରିଚାଳନା କରିଛନ୍ତି । ଗୀତ ଗାଇଛନ୍ତି, ଗୀତ ଶିଖାଇଛନ୍ତି ଓ ବିଭିନ୍ନ ବାଦ୍ୟଯନ୍ତ୍ର ବଜାଇ ବିସ୍ମୟ ସୃଷ୍ଟି କରିଛନ୍ତି । ଓଡ଼ିଆ ରଙ୍ଗମଞ୍ଚରେ ପ୍ରଥମେ ମହିଳାମାନେ ନାରୀ ଚରିତ୍ରରେ ଅଭିନୟ କରୁ ନଥିଲେ । ପୁରୁଷ କଳାକାରମାନେ ହିଁ ନାରୀ ଭୂମିକାରେ ଅଭିନୟ କରୁଥିଲେ ।

ମାଷ୍ଟର ମାଣିଆ ଅତି ଚମତ୍କାର ଭାବରେ ନାରୀ ଚରିତ୍ରରେ ଅଭିନୟ କରି ପାରୁଥିଲେ । ଐତିହାସିକ, ପୌରାଣିକ ଓ ସାମାଜିକ ନାଟକରେ ସେ ଅଭିନୟ କରିଥିଲେ ଓ ନିର୍ଦ୍ଦେଶନା ଦେଇଥିଲେ । ତାଙ୍କ ଅଭିନୟ କଳା ନୈପୁଣ୍ୟ ଦର୍ଶକମାନଙ୍କୁ ଏଭଳି ମନ୍ତ୍ରମୁଗ୍ଧ କରି ରଖୁଥିଲା ଯେ ସେ ଯେଉଁଦିନ ଅଭିନୟ କରିବାକୁ ମଞ୍ଚକୁ ଆସୁ ନଥିଲେ ସେଦିନ ସମସ୍ତେ ତାଙ୍କର ଅନୁପସ୍ଥିତି ଉପଲବ୍ଧି କରି ମାଷ୍ଟର ମାଣିଆ କାହାନ୍ତି ବୋଲି ପ୍ରଶ୍ନ କରୁଥିଲେ । ଅନ୍ୟପକ୍ଷରେ ଯେଉଁଦିନ ପ୍ରଚାର କରାଯାଉଥିଲା ଯେ ମାଷ୍ଟର ମାଣିଆ ନାଟକର କୌଣସି ଏକ ନିର୍ଦ୍ଦିଷ୍ଟ ଭୂମିକାରେ ଅଭିନୟ କରିବେ, ସେଦିନ ଦର୍ଶକମାନଙ୍କ ସଂଖ୍ୟା ଆଶାତୀତ ଭାବେ ବଢ଼ିଯାଉଥିଲା ଏବଂ ରଙ୍ଗମଞ୍ଚ ପକ୍ଷେ ଅଧିକ ଆୟ କରିବା ସମ୍ଭବ ହେଉଥିଲା ।

## ଚଳଚ୍ଚିତ୍ରରେ ମାଷ୍ଟର ମାଣିଆ

ମୋର ସୌଭାଗ୍ୟ ଯେ 'ଦସ୍ୟୁରତ୍ନାକର', 'ମାଟିର ମଣିଷ' ଓ 'ମମତା'ଚଳଚ୍ଚିତ୍ରରେ ମାଷ୍ଟର ମାଣିଆଙ୍କ ସହିତ ମୁଁ ଅଭିନୟ କରିଥିଲି । ଯେଉଁ କେତେକ ମୁଷ୍ଟିମେୟ ଅଭିନେତା ମଞ୍ଚ ଜଗତରୁ ଚଳଚ୍ଚିତ୍ର ଜଗତରେ ପ୍ରବେଶ କରି ପ୍ରତିଷ୍ଠା ଅର୍ଜନ କରିଥିଲେ, ସେମାନଙ୍କ ମଧ୍ୟରେ ମାଷ୍ଟର ମାଣିଆ ଅନ୍ୟତମ । ପରିଣତ ବୟସରେ ମଧ୍ୟ ସେ ୫ ଗୋଟି ଓଡ଼ିଆ ଚଳଚ୍ଚିତ୍ରରେ ଅଭିନୟ କରିଥିଲେ । ମଞ୍ଚ ଜଗତରେ ଯେଭଳି ଉଚ୍ଚକୋଟିର କଳାକର ଭାବରେ ସେ ପ୍ରତିଷ୍ଠା ଅର୍ଜନ କରିଥିଲେ, ଚଳଚ୍ଚିତ୍ର ଜଗତରେ ସେ କେବଳ ତାହାକୁ ଅକ୍ଷୁର୍ଣ୍ଣ ରଖି ନଥିଲେ, ବରଂ ତାଙ୍କର ଅଭିନୟ ଅଧିକ ପ୍ରାଣବନ୍ତ ହୋଇଥିଲା । କେତୋଟି ଚରିତ୍ରର ଚିତ୍ରଣ ଏତେ ଜୀବନ୍ତ, ଅକୃତିମ, ବାସ୍ତବ ଓ ହୃଦୟସ୍ପର୍ଶୀ ହୋଇଥିଲା, ଯାହାକି ଚଳଚ୍ଚିତ୍ର ଜଗତରେ ତାଙ୍କୁ ଅମର କରି ରଖିଛି । ଧନ୍ୟ ସେହି କଳାକାର ଯାହାର ପ୍ରତିଟି ଶବ୍ଦ, ପ୍ରତିଟି ଦୃଶ୍ୟ, ଦର୍ଶକ ହୃଦୟରେ ତାଙ୍କୁ ଚିରସ୍ଥାୟୀ କରି ରଖି ପାରଛି । ବାସ୍ତବିକ ମଞ୍ଚ ଜଗତର ସେ ଥିଲେ ମୁକୁଟ ବିହିନ ସମ୍ରାଟ ଓ ଚଳଚ୍ଚିତ୍ର ଜଗତର କାଳଜୟୀ ବିସ୍ମୟ ସୃଷ୍ଟିକାରୀ ଅଭିନେତା ।

ମାଷ୍ଟର ମାଣିଆ ଥିଲେ ସମସ୍ତଙ୍କର ମାଷ୍ଟର । ବୟସରେ ବୁଦ୍ଧିରେ ଆଉ କଳାକାର ଭାବରେ ବି । ଆସ୍କାରେ 'ଦସ୍ୟୁରତ୍ନାକର' ସୁଟିଂ ବେଳେ ଦେଖାହେଲା ତାଙ୍କ ସାଙ୍ଗରେ ୧୯୫୯ ମସିହାରେ । ସାଦାସିଧା ଲୋକ- ହସ ଛତା ମୁହଁରେ ଆଉ କିଛି ନାହିଁ । 'ସାରା ଦୁନିଆ ଅତିଭଲ' ଏଇ ଭାବନାରେ ଦିନ କାଟୁଥିବା କଳାକାରଟିଏ

ଯେତେବେଳେ କ୍ୟାମେରା ସାମନାକୁ ଆସେ ସେତେବେଳେ ତା ଭିତରେ ଥିବା କଳାସାଧନାର ବିସ୍ଫୋଟ ହୁଏ ।

ହଁ ,ମୁଁ ଶୁଣିଛି ସେ ବେଶି ପଢ଼ିନଥିଲେ -ହେଲେ ହଜାର ହଜାର ବହିର ଜ୍ଞାନ ନେଇ ସେ ବୁଲୁଥିଲେ । 'ମମତା' ଚଳଚ୍ଚିତ୍ରରେ 'ବୁଢ଼ାସଙ୍ଖାରୀ' ରୂପରେ ସ୍ୱପ୍ନ ଦେଖିଥିଲି ତାଙ୍କୁ । ଆଉ ଯୋଉଦିନ ସୁଟିଂ ହେଲା, ସେଦିନ ଦେଖିଲି - 'ଶଙ୍ଖା ଦେଇପାରିନି ବୋଲି ତୁ ବିଧବା ହୋଇଗଲୁ' ଏଇକଥା କହିଲା ବେଳକୁ ସେ ମାଷ୍ଟର ମାଣିଆ ନଥିଲେ, ସେ ଥିଲେ ଏକ 'ବୁଢ଼ା ଶଙ୍ଖାରୀ' । ଆଖିରୁ ଧାର ଧାର ଲୁହ, କଥା ଅସ୍ପଷ୍ଟ । ଆଉ ସେ ସଟ୍ ସରିଗଲା ପରେ ଧୂମ୍ କରି ପଡ଼ିଗଲେ ସିଏ । ସମସ୍ତେ ନିର୍ବାକ୍ । ଭୁଲିହବନି ସେମିତି କଳାକାରଙ୍କୁ ତା'ପରେ ମୁଁ ନିର୍ଦ୍ଦେଶକ ହେଲି । ବହୁଚଳଚ୍ଚିତ୍ରରେ ନିର୍ଦ୍ଦେଶନା ଦେଲି । କିନ୍ତୁ ଆଉ ମାଷ୍ଟର ମାଣିଆଙ୍କୁ ପାଇନି, ପାଇଛି ଅନେକ କଳାକାରଙ୍କୁ । ହେଲେ ସେ ମତେ ଠକିଦେଲେ - ଯେମିତି କହୁଛନ୍ତି 'ତୁ ଯେତେ ବଡ଼ ନିର୍ଦ୍ଦେଶକ ହେଲେ ବି ତୁ ମୋର ଛାତ୍ର । ମୁଁ ତୋର ମାଷ୍ଟର । ଛାତ୍ର କେମିତି ମାଷ୍ଟରର ମାଷ୍ଟର ହବ ?' ସତ କଥା, ମୁଁ ଛାତ୍ର ହୋଇ ରହିଗଲି ମାଷ୍ଟରଙ୍କର । ସେଥିରେ ଆନନ୍ଦ ବି ଅଛି, ଗୌରବ ବି ଅଛି । ଯୋଉ କଳାକାର ଜୀବନର ଦୁଆଇ ସେ ଜାଳିଯାଇଛନ୍ତି, ତାକୁ ଅଖଣ୍ଡ ଧୁନି କରି ଜଳେଇ ରଖିବାର ଦାୟିତ୍ୱ ଆମ ସମସ୍ତଙ୍କର । ମାଟିର ମଣିଷର ମାଷ୍ଟର ମାଣିଆ ଆଜି ମାଟିରେ ମିଶିଗଲେଣି, ହେଲେ ଏ ଓଡ଼ିଆ କଳାକାରଙ୍କର ମନରେ ସିଏ ସେମିତି ବିରାଜୁଥିବେ, ଏକ ଅହଂକାର ଶୂନ୍ୟ କଳାକାରଭାବେ । ଏକ ଶାଶ୍ୱତ ପ୍ରତିଭାବାନ୍ ବ୍ୟକ୍ତି ଭାବେ ।



# କେମିତି ମରିବି କୁହ ?

*ଅସୀମ ବସୁ*

ସେଦିନ ଶହ ଶହ ଦର୍ଶକ ଯେତେବେଳେ ତାଙ୍କ ଆଡକୁ ଚାହିଁ ରହିଛନ୍ତି- ତାଙ୍କ ମୃତ୍ୟୁକୁ ଅନେଇ ବସିଛନ୍ତି- ହେମନ୍ତ, ଅକ୍ଷୟ, ବିଜୟ ସହିତ ଆମେ ସମସ୍ତେ । ଠିକ୍ ସେତିକି ବେଳେ ତାଙ୍କ ମୁହଁରେ ଏହି ପ୍ରଶ୍ନ - ''କେମିତି ମରିବି କୁହ ?''

'ଯାଯାବର'ର ପୂରା ସୁଟିଂ ବାରିପଦାରେ ହବ ବୋଲି ସ୍ଥିର ହେଲା । ଲାଲ୍ ସାହେବଙ୍କ କୋଠା 'ଯାଯାବର'ର ଜମିଦାରଙ୍କ କୋଠା ପାଲଟିଲା । ବାରିପଦାର ବିଲ, ବାଡ଼ି , ଆମ୍ବତୋଟା, ପୋଖରିତୁଠ, ଏସବୁ ଏବେ ଆମ ଅକ୍ତିଆରରେ । ମୁଁ ଫିଲିମ୍‌ର କଳା ନିର୍ଦ୍ଦେଶକ । ତେଣୁ କେଉଁଠି ଗଛଟିଏ ଦରକାର, କେଉଁଠି ପିଣ୍ଡି ତ କେଉଁଠି ଚାଳିଆଟିଏ ଦରକାର । ସେ ସବୁ ତିଆରିର ଦାୟିତ୍ୱ ମୋର । ସେଥିପାଇଁ ମତେ ଆଗତୁରା ଯିବାକୁ ପଡ଼ିଲା ବାରିପଦା । ହେଲେ ତା ଆଗରୁ କେମିତି କେଜାଣି ମାଷ୍ଟର ମାଣିଆଙ୍କୁ ତାଙ୍କ ଯିବା ତାରିଖ ଜଣେଇବା ଦାୟିତ୍ୱଟା ମୋରି ଉପରେ ଲଦି ଦିଆ ହୋଇଥିଲା । ହେଲେ ସେ ଦାୟିତ୍ୱ ମୋ ପାଇଁ ବୋଝ ନହୋଇ ଏକ ସୁବର୍ଣ୍ଣ ସୁଯୋଗ ପାଲଟି ଥିଲା । ସେ ଦିନ ଉଦୁଉଦିଆ ଦି'ପହରେ ମଟର ସାଇକେଲ୍ ଧରି ଦଉଡିଲି ତାଙ୍କ ଗାଆଁକୁ । ଭେଟିବି-ଯାହାଙ୍କୁ ମଞ୍ଚରେ ଦେଖି ନଥିଲେବି ଶହେ ଥର ଶୁଣିଥିବା ନାମର ଚରିତ୍ରକୁ ଭେଟିବି । ସେଇ ସତୁରି ଦଶକର ବ୍ୟବସାୟୀକ ରଙ୍ଗମଞ୍ଚର ଅଭିନେତାମାନେ ମୋ ନିକଟରେ ଈଶ୍ୱର ତୁଲ୍ୟ । ମାଷ୍ଟର ମାଣିଆଙ୍କର ନାଁ ତ ଶୁଣିଛି, କାହିଁ କେବେଠୁଁ ; ମୋ କୈଶୋରରୁ । ପ୍ରଥମେ ଭାବିଥିଲି, ମାଷ୍ଟର ମାଣିଆ ଜଣେ ଶିଶୁ ଅଭିନେତା ହୋଇଥିବେ । ଏଭଳି ଭାବିବାର କାରଣ- ଚଳଚ୍ଚିତ୍ରରେ ଶିଶୁ ଅଭିନେତାମାନଙ୍କ ନାଆଁ ଆଗରୁ 'ମାଷ୍ଟର' ଶବ୍ଦ ଲେଖା ଯାଉଥିଏ । ହେଲେ ପରେ ଜାଣିଲି ଏ ମାଷ୍ଟର ସେ ମାଷ୍ଟର୍ ନୁହେଁ । ଏ ଏକ ଗୌରବ ମଣ୍ଡିତ ଏକ ମର୍ଯ୍ୟାଦାପୂର୍ଣ୍ଣ ଡାକ । ଗାଆଁରେ ପହଞ୍ଚି ରାସ୍ତାରେ ଖେଳୁଥିବା ଦଳେ ଛୋଟ ପିଲାଙ୍କୁ ଲକ୍ଷ୍ୟ କରି ମାଷ୍ଟର ମାଣିଆଙ୍କ କଥା ପଚାରିଲି । ତାଙ୍କରି ଭିତରୁ ପିଲାଟିଏ ମତେ ଖାଲି ତାଙ୍କ ଘର ନୁହେଁ- ଦାଣ୍ଡ ପିଣ୍ଡାରେ ବସିଥିବା ମାଷ୍ଟର ମାଣିଆଙ୍କୁ ଦେଖେଇ ଦେଲା । ସେଇଥିଲା ମୋର ପ୍ରଥମ ଗୁରୁ ଦର୍ଶନ ।

ସୁଟିଂ ଚାଲିଛି ଆମ୍ବତୋଟା ଭିତରେ ନକଲି ବସ୍ତି ତିଆରି ହୋଇ ଜଳା ସରିଛି । ଏଥର ସେହି ବସ୍ତିର ବାସିନ୍ଦା ମାଷ୍ଟର ମାଣିଆଙ୍କ ମରିବା କଥା । ପୋଡ଼ା

ବାଉଁଶ, ନଡା ଭିତରେ ମାଷ୍ଟର ମାଣିଆ ମୃତ୍ୟୁକୁ ଅପେକ୍ଷା କରିଛନ୍ତି । କ୍ୟାମେରା ମ୍ୟାନ୍ ଶ୍ରୀନିବାସ ମହାପାତ୍ର କ୍ୟାମେରା ସଜାଡ଼ି ନିର୍ଦ୍ଦେଶକଙ୍କ ଇସାରାକୁ ଅପେକ୍ଷା କରି ରହିଛନ୍ତି । ଆଉ ଠିକ୍ ସେତିକି ବେଳେ ତ୍ରୀମୂର୍ତ୍ତୀ ନାମ ଅନ୍ତରାଳର ନିର୍ଦ୍ଦେଶକ- ହେମନ୍ତ, ଅକ୍ଷୟ, ବିଜୟଙ୍କୁ ଅନେଇ ମୃତ୍ୟୁ ପଥ ଯାତ୍ରୀ ମାଷ୍ଟର ମାଣିଆ ପ୍ରଶ୍ନ କଲେ- ''କେମିତି ମରିବି କୁହ ?'' ପ୍ରଶ୍ନ ଶୁଣି ଅକ୍ଷୟ ଆଉ ବିଜୟ ପୋଖତ ଅଭିନେତା ହେମନ୍ତ ଦାସଙ୍କୁ ଅନେଇଲେ । ସେ ହିଁ କୁହନ୍ତୁ କେମିତି ମରିବେ ମାଷ୍ଟର ମାଣିଆ । ହେଲେ ହେମନ୍ତ ଦାସ କହିବେ କ'ଣ ? କେମିତି ମରିବେ ତାର ଉତ୍ତରତ ତାଙ୍କ ପାଖରେ ନାହିଁ । ନାଟ୍ୟକାର ବିଜୟ ମିଶ୍ର ବି ଲେଖି ନାହାନ୍ତି କେମିତି ମରିବ ତାଙ୍କର ସେଇ ଚରିତ୍ରଟି । ହେଲେ ମଞ୍ଚଗୁରୁ ପ୍ରଶ୍ନ କରୁଛନ୍ତି- ''କୁହ ମୁଁ କେମିତି ମରିବି ?'' । ହେମନ୍ତ ଦାସ କିଛି ସମୟ ଗୁମ୍ ମାରି କ'ଣ ଭାବିଲେ । ତା'ପରେ କହିଲେ- ''ଆପଣ କେମିତି ମରିବା କଥା ଭାବୁଛନ୍ତି ଟିକିଏ ରିହରସଲ୍ କରି ଦେଖେଇ ଦେଲେ'' । ମାଷ୍ଟର ମାଣିଆ ମୁରକି ହସି କହିଲେ- ବାବୁମାନେ ! ମରିବା ତ ଅନେକ କିସମର ଅଛି । କେଉଁଟା ତମକୁ ଭଲ ଲାଗିବ ମୁଁ ଜାଣିବି କେମିତି ? ଠିକ୍ ଅଛି, ତିନି ଚାରିଟା ମରଣ ମୁଁ କରୁଛି, ତମେ ସେଇଥିରୁ ଗୋଟାଏ ବାଛ । ଏତକ କହି ସେ ଗୋଟିକ ପରେ ଗୋଟିଏ ମୃତ୍ୟୁର ରୂପ ଆମକୁ ଦେଖେଇ ଚାଲିଲେ । ତିନି ଚାରିଟା ନୁହେଁ- ପ୍ରାୟ ଆଠ-ଦଶ ପ୍ରକାରର ମରଣକୁ ଦେଖି ସାରିଲା ପରେ ହେମନ୍ତ ବାବୁ କହିଲେ- ଥାଉ ଅଜା ସେତିକି ଥାଉ । ସବୁଗୁଡ଼ାକ ମରିବା ତ ଆମକୁ ଭଲ ଲାଗୁଛି । ବାଛିବୁ କେଉଁଟା ? ଆପଣ ବରଂ ଆପଣଙ୍କର ପସନ୍ଦର ମରିବା ମରନ୍ତୁ । ସେଇୟା ହେଲା । ସେ ତାଙ୍କ ପସନ୍ଦର ମରିବା ଦୃଶ୍ୟ ସେଦିନ ଅଭିନୟ କଲେ । ସେଲୁଲ୍ୟେଡ଼ରେ ସେ ମରିବା ସାଇତା ହେଲା । ହଜାର ହଜାର ଲୋକ ସେ ମରିବା ଦେଖିଲେ । ଆମ ସମସ୍ତଙ୍କ ମନ ଭିତରେ ସେ ମୃତ୍ୟୁ ଦୃଶ୍ୟ ଏବେବି ପ୍ରାଣବନ୍ତ, ଅବିସ୍ମରଣୀୟ । ମାଷ୍ଟର ମାଣିଆ ନିଜକୁ ଜଣେ ବାଧ କଳାକାର ବୋଲି ମଣୁଥିଲେ । ଜୀବନଟା ଥିଲା ତାଙ୍କ ନିକଟରେ ଏକ ନାଟକର ଚରିତ୍ର । ଯେଉଁ ନାଟକର ନିର୍ଦ୍ଦେଶକ ଅଲକ୍ଷ୍ୟରେ ରହି ତାଙ୍କୁ ବତାଉଥିଲେ କେମିତି ଅଭିନୟ କରିବାକୁ ହେବ । ଚଳଚ୍ଚିତ୍ରର ମୃତ୍ୟୁ ଦୃଶ୍ୟ ସିନା ସାଇତା ହୋଇଥିଲା ବୋଲି ଏତେ ଲୋକ ଦେଖି ପାରିଲେ, ହେଲେ ତାଙ୍କର ଶେଷ ଅଭିନୟ ଦିନର ମୃତ୍ୟୁ ଦୃଶ୍ୟରେ କେମିତି ଅଭିନୟ କଲେ-କେତେ ପ୍ରାଣବନ୍ତ, ଆମ ପାଖରେ ଅଜଣା ରହିଗଲା ।



# ଏକ ଯୋଗଜନ୍ମା କଳାକାର

*କାର୍ତ୍ତିକ କୁମାର ଘୋଷ*

ଓଡ଼ିଶା ରଙ୍ଗମଞ୍ଚର ଇତିହାସ ଆଲୋଚନା କରିବାକୁ ବସିଲେ ଯାହାଙ୍କର ନାମ ପ୍ରଥମେ ମନେପଡ଼େ ସେ ହେଉଛନ୍ତି ମାଷ୍ଟର ମାଣିଆ ଓରଫ୍ ରାମଚନ୍ଦ୍ର ମାଣିଆ । ପ୍ରକୃତ ପକ୍ଷେ ଓଡ଼ିଶାରେ ବ୍ୟବସାୟୀ ନାଟ୍ୟଦଳ ଗଢ଼ି ଉଠିଥିଲା ରାମଚନ୍ଦ୍ର ମାଣିଆଙ୍କୁ କେନ୍ଦ୍ର କରି ।

୧୯୧୧ ମସିହା ପୂର୍ବର କଥା । ବଳଙ୍ଗା ଗ୍ରାମର ନାଏକ ଶ୍ରୀ ବନମାଳୀ ପତି ନିଜେ ଏକ ନାଟ୍ୟସଂସ୍ଥା ଗଢ଼ିବା ଉଦ୍ଦେଶ୍ୟରେ ଚେଷ୍ଟିତ ହୋଇଥିଲେ । ସେତେବେଳେ ପରିସ୍ଥିତି ତାଙ୍କ ପାଇଁ ଅନୁକୂଳ ଥିଲା । ସାମାନ୍ୟ ଚେଷ୍ଟାରେ ସେ ତାଙ୍କରି ଗ୍ରାମର ପ୍ରତିବେଶୀମାନଙ୍କୁ ସଂଗଠିତ କରି ଏକ ନାଟ୍ୟସଂସ୍ଥା ଗଢ଼ିପାରିଲେ । ଏହି ଦଳ ଗଠନ ସମୟରେ ସେ ତାଙ୍କର ବୈଷୟିକ କାର୍ଯ୍ୟରେ ଖୋରଧା ସବ୍‌ଡ଼ିଭିଜନ୍‌ର ଛଟଣୀ ଗ୍ରାମକୁ ଗସ୍ତ କରୁଥିବା ସମୟରେ ଗୋଟିଏ ଯାତ୍ରା ଦଳର ଅଭିନୟ ଦେଖିବାର ସୁଯୋଗ ପାଇଲେ । ସେତେବେଳେ ମାଣିଆଙ୍କର ବୟସ ୧୩/୧୪ ବର୍ଷ । ମାଣିଆଙ୍କଠାରୁ ଶୁଣିଛି, ସେ ସାତ ବର୍ଷ ବୟସରେ 'ଗୋଟିପୁଅ' ନାଟ୍ୟଦଳରେ ମିଶିଥିଲେ ଏବଂ ପ୍ରଥମରୁହିଁ ଦର୍ଶକଙ୍କର ସସ୍ନେହ ଦୃଷ୍ଟି ଆକର୍ଷଣ କରିପାରିଥିଲେ ।

ଛଟଣୀଠାରେ କାର୍ଯ୍ୟ ହେତୁ ରହୁଥିବା ସମୟରେ ଶ୍ରୀ ବନମାଳୀ ପତି ସେହି ଯାତ୍ରା ଦଳର ନାଟ , ମାଣିଆଙ୍କର ନୃତ୍ୟଭଙ୍ଗୀ ଓ ରୂପଲାବଣ୍ୟ ଦେଖି ସେ ମୁଗ୍ଧ ହୋଇ ତାଙ୍କୁ ଏକ ସ୍ୱର୍ଣ୍ଣ ପଦକ, ଦଳର ଶିକ୍ଷକଙ୍କୁ ପୁରସ୍କାର ଦେବା ପାଇଁ ଦେଇଥିଲେ ।

କହିବା ବାହୁଲ୍ୟ ଯେ, ବନମାଳୀ ପତି ଥିଲେ ସଂଗୀତ ପ୍ରିୟ । ଯେକୌଣସି ଠାରେ ସଂଗୀତ ଓ ନୃତ୍ୟର ଆସର ବସିଲେ ସେ ନିଶ୍ଚିତ ଭାବେ ସେଠାରେ ଉପସ୍ଥିତ ହେଉଥିଲେ ।

ରାମ ମାଣିଆଙ୍କର ନୃତ୍ୟ, ସଂଗୀତ ସଙ୍ଗେ ସଙ୍ଗେ ସୁନ୍ଦର ଗଠନ ତାଙ୍କୁ ମୁଗ୍ଧ କରିଥିଲା । ନିଜର ନାଟ୍ୟସଂସ୍ଥାରେ ତାଙ୍କୁ ସାମିଲ୍ କରିବା ପାଇଁ ସେ ପନ୍ଥା ଉଦ୍‌ଭାବନରେ ଲାଗିପଡ଼ିଲେ । ତାଙ୍କୁ ବଳଙ୍ଗା ଗ୍ରାମକୁ ଡ଼ାକି ନେଇ ତାଙ୍କର ମନକଥା ପ୍ରକାଶ କରିଥିଲେ ଏବଂ ନିଜର ସ୍ୱାର୍ଥ ରକ୍ଷାରେ ସମର୍ଥ ହୋଇଥିଲେ । ଫଳରେ ୧୯୧୧ ମସିହାରେ ବନମାଳୀ ପତିଙ୍କର ନାଟ୍ୟସଂସ୍ଥା ଗଢ଼ିଉଠିବାର ପ୍ରାୟ ବର୍ଷକ ଭିତରେ ଶ୍ରୀ ମାଣିଆ ପତିଙ୍କର ନାଟ୍ୟଦଳରେ ସାମିଲ ହୋଇଥିଲେ ।

୰ ରାମଚନ୍ଦ୍ର ମାଣିଆଙ୍କ ସହ ମୋର ପରିଚୟ ଏକ ଅଭୂତପୂର୍ବ ଘଟଣାରେ ହୋଇଥିଲା । ବଡ଼ଭାଇ ୰ ଅଶ୍ୱିନୀ ଘୋଷ ବଳଙ୍ଗାରେ ଗଢ଼ିଉଠିଥିବା ନାଟ୍ୟଦଳ ରାଧାକୃଷ୍ଣ ଥିଏଟର ଲାଗି ନାଟକ ରଚନା କରୁଥିଲେ ।

୧୯୧୬ରେ 'ଭୀଷ୍ମ' ସେହି ବର୍ଷ ଶେଷ ଭାଗରେ, ୧୯୧୭ ରେ 'ସାବିତ୍ରୀ' ଓ ୧୯୧୮ ସାଲରେ 'ଗୋବିନ୍ଦ ବିଦ୍ୟାଧର' ନାଟକ ଅଭିନୀତ ହୋଇଥିଲା । 'ଗୋବିନ୍ଦ ବିଦ୍ୟାଧର' ଅଭିନୀତ ହେବାର ତୃତୀୟ ଦିନ ଆମ ପରିବାରର ସମସ୍ତେ ଅଭିନୟ ଦେଖିବାକୁ ଯାଇଥିଲେ । ରାତି ୧୦ ଟା ବେଳେ ଅଭିନୟ ଆରମ୍ଭ ହେବାକଥା ପ୍ରେକ୍ଷାଳୟର ଦର୍ଶକପୂର୍ଣ୍ଣ ମାତ୍ର ରାତି ୧୦.୩୦ ବାଜିଗଲା ତଥାପି ଅଭିନୟ ଆରମ୍ଭ ହେବାର ସଙ୍କେତ ଦିଆନଯିବାରୁ ମୁଁ ବଡ଼ଭାଇଙ୍କ ସହ ଗ୍ରୀନରୁମ୍‌କୁ ଗଲି । ଦେଖିଲି ସେଠାରେ ସମସ୍ତେ ଚିନ୍ତିତ ଅବସ୍ଥାରେ ବସିଛନ୍ତି । କାରଣ ପଚାରିବାରୁ 'କଳୁୟ ଦେବ' ଭୂମିକାରେ ଅଭିନୟ କରୁଥିବା ପିଲା ଶ୍ରୀ କୁଞ୍ଜବିହାରୀ ପାତ୍ର ହଠାତ୍ ୧୦୪ ଡ଼ିଗ୍ରୀ ଜ୍ୱରରେ ପଡ଼ିଛନ୍ତି । ସେ ଭୂମିକାରେ ଅଭିନୟ କରିବ କିଏ? ସେହି ଚିନ୍ତାରେ ସମସ୍ତେ ଉଦ୍‌ବିଗ୍ନ ହୋଇଥାନ୍ତି ।

କ'ଣ କରାଯିବ ବୋଲି ବିଚାର ଚାଲିଥିବା ସମୟରେ ଶ୍ରୀଯୁକ୍ତ ମଣିଆ ହଠାତ୍ ଗ୍ରୀନ୍‌ରୁମ୍ ଭିତରୁ ବାହାରି ଆସି ମୋତେ ଟାଣି ନେଇ କହିଲେ- 'ଆଉ ଚିନ୍ତା କାହିଁକି, ଅଶ୍ୱିନୀବାବୁଙ୍କ ସାନ ଭାଇ ତ ଏଇଠି'' । ମୋ ଗାଲରେ ରଙ୍ଗବୋଳି ଦେଲେ, ମୁଁ ଏଥିରେ ବିରକ୍ତ ହୋଇ ଚାଲିଆସୁଥିବା ବେଳେ ମନିବାବୁ (ସେତେବେଳର ମେନେଜର ମନୀନ୍ଦ୍ରନାଥ ମୁଖାର୍ଜୀ) ଓ ବୃନ୍ଦାବନ ଦାସ ଧରି ଟାଣିଦେଲେ ଓ ବୁଝାଇ କହିଲେ, ଭୟ ନାହିଁ, ଆମେ ସବୁ ସମ୍ଭାଳି ନେବୁ ।

ସେହିଦିନ ଠାରୁ ରାମଚନ୍ଦ୍ର ମାଣିଆଙ୍କର ସହ ପରିଚୟ ଘନିଷ୍ଠରୁ ଘନିଷ୍ଠତର ହେଲା । ପରବର୍ତ୍ତୀ କାଳରେ ଏପରି ହେଲା ଯେ ଆମେ ଦୁହେଁ ପ୍ରାୟ ନାଚ,ଗୀତ ଓ ଅଭିନୟ ବେଳେ ଏକତ୍ର ରହି ଦେଖାଶୁଣା କରିବାକୁ ଲାଗିଲୁ । ୰ ରାମଚନ୍ଦ୍ର ମାଣିଆ ଥିଲେ ସରଳ ପ୍ରକୃତିର । ପିଲାଦିନୁ ସେ ବହୁ ନାଟକରେ 'ସ୍ତ୍ରୀ' ଭୂମିକାରେ ଅଭିନୟ ଓ ସଂଗୀତ ନୃତ୍ୟ ପରିବେଷଣ କରି ଦର୍ଶକଙ୍କ ପ୍ରିୟ ହୋଇ ପାରିଥିଲେ । ଓଡ଼ିଶାର ରଙ୍ଗମଞ୍ଚରେ ସେ ଜଣେ ଅତ୍ୟାବଶ୍ୟକ କଳାକାର ରୂପରେ ସ୍ୱୀକୃତିଲାଭ କରିଥିଲେ । ରାଧାକୃଷ୍ଣ ଥିଏଟର ପରେ ବନମାଳୀ ଆର୍ଟ ଥିଏଟର ଓ ତା'ପରେ ଅର୍ଣ୍ଣପୂର୍ଣ୍ଣା ଥିଏଟରରେ ଅଭିନୟ କରି ଅବସର ଗ୍ରହଣ କରିଥିଲେ । ପ୍ରତିଭୂମିକାରେ ତାଙ୍କର ଅଭିନୟ ଦର୍ଶକଙ୍କୁ ମୁଗ୍ଧ କରିଥିଲା । କୌଣସି ନାଟକରେ ସେ ଅଂଶଗ୍ରହଣ କରିନଥିଲେ , ଦର୍ଶକମାନେ

ପ୍ରଶ୍ନଦ୍ୱାରା ସଂସ୍ଥାର ପରିଚାଳକଙ୍କୁ ବିବ୍ରତ କରୁଥିଲେ । ନୃତ୍ୟ ଓ ସଂଗୀତରେ ମଧ୍ୟ ତାଙ୍କର କୃତିତ୍ୱ ସେବେଳର ଯେ କୌଣସି ମଞ୍ଚ କଳାକାରଙ୍କ ଠାରୁ ଉନ୍ନତ ଥିଲା । କ୍ରମେ ନୃତ୍ୟ ଓ ସଂଗୀତ ଗୁରୁ ରୂପେ ମଧ୍ୟ ସ୍ୱୀକୃତି ଲାଭ କରିଥିଲେ ।

ପ୍ରଥମରୁ ସେ ନାଟକରେ ସ୍ତ୍ରୀ ଭୂମିକା ଗ୍ରହଣ କରୁଥିଲେ । ତାଙ୍କର ସ୍ତ୍ରୀ ଭୂମିକାରେ ଅଭିନୟ ଯିଏ ଦେଖିଛନ୍ତି ସେ ନିଶ୍ଚିତ ଭାବେ କହିବେ ଯେ ସେ ଯେକୌଣସି ନାରୀ ଅଭିନେତ୍ରୀଠାରୁ ଗୁଣରେ ଶ୍ରେଷ୍ଠତ୍ୱଲାଭ କରିଥିଲେ । ଶାରୀରିକ ଗଠନ, ଅଙ୍ଗଭଙ୍ଗୀ ତଥା କଣ୍ଠସ୍ୱର ଦର୍ଶକଙ୍କର ଦୃଷ୍ଟି ବିଭ୍ରମ ଘଟାଉଥିଲା । ଅଭିନୟ କରିବା ଲାଗି ଯେଉଁସବୁ ଗୁଣ ଓ ନୈପୁଣ୍ୟ ଆବଶ୍ୟକ ତାହା ଶିକ୍ଷା କରିବାକୁ ସେ ପ୍ରଥମାବସ୍ଥାରୁ ନିଷ୍ଠାର ସହ ପାଳନ କରିଥିଲେ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତାଙ୍କର ମୁଖମଣ୍ଡଳର ପରିବର୍ତ୍ତନ ହେତୁ ସେ ପୁରୁଷ ଭୂମିକାରେ ଅଭିନୟ କରିବାକୁ ଲାଗିଲେ ଏବଂ କହିବା ବାହୁଲ୍ୟ ସ୍ୱଚ୍ଛ ସମୟ ମଧ୍ୟରେ ସେ ଦର୍ଶକଙ୍କୁ ଅଭିନୟ ଚାତୁରୀରେ ମୁଗ୍ଧ କରିପାରିଥିଲେ ।

ମୋର ରଙ୍ଗମଞ୍ଚ ଜୀବନର ଭାଗ୍ୟଡ଼ୋରି ମାଷ୍ଟର ମାଣିଆଙ୍କ ଦ୍ୱାରା ନିର୍ଦ୍ଧାରିତ ହୋଇଥିଲା । ୧୯୧୮ ମସିହାରେ ଅତର୍କିତ ଓ ଅପ୍ରସ୍ତୁତ ଅବସ୍ଥାରେ ମୁହଁରେ ରଙ୍ଗବୋଳି ଦେଇ ରଙ୍ଗମଞ୍ଚ  ଉପରକୁ ଠେଲି ଦେଇ ସେକେବଳ ଯେ, ମୋ ଜୀବନର ଗତିପଥକୁ ଭିନ୍ନମୁଖୀ କରିଥିଲେ ତାହା ନୁହେଁ, ମୋ ମନରେ ତାଙ୍କର ଅମାୟିକ ବ୍ୟବହାରରପ୍ରଭାବ ପକାଇ ଅତି ପ୍ରିୟ ବନ୍ଧୁ ରୂପେ ଗ୍ରହଣ କରାଇବାରେ ସକ୍ଷମ ହୋଇଥିଲେ । ପାଠପଢ଼ା ଶେଷ ପରେ ଭାଗ୍ୟର ନିର୍ଦ୍ଦେଶରେ ମୁଁ ଯେତେବେଳେ କଳାକୁ  ହିଁ ଜୀବିକା ରୂପେ ଗ୍ରହଣ କରିନେଲି, ଠିକ୍ ସେତିକିବେଳେ ମୋ ସହିତ ମୋର ପାଖେ ପାଖେ ରହି ଜୀବନର ଶେଷ ପର୍ଯ୍ୟନ୍ତ ରାମ ମାଣିଆ ମୋତେ ବନ୍ଧୁ ଭାବେ, ଅନୁଜ ଭାବେ ସାହାଯ୍ୟ ଓ ପରାମର୍ଶ ଦେଇ ମୋତେ ପ୍ରତିଷ୍ଠା ପଥରେ ଆଗେଇ ନେଇଥିଲେ । ଅତୀତର ସବୁ କଥା କହି ବସିଲେ ରାତି ପାହିଯିବ, ହେଲେ କଥା ଶେଷ ହେବନାହିଁ । କେବଳ ଗୋଟିଏ ଦୁଇଟି ଘଟଣା ଏଠାରେ ରଖୁଛି ।

ମୁଁ ଗୀତ ବୋଲୁଥିଲି । କଣ୍ଠସ୍ୱରକୁ ଆହୁରି ନିଖୁଣ ଓ ସତେଜ ରଖିବା ଲାଗି ସେ ମୋତେ ପରାମର୍ଶ ଦେଲେ, ଅତି ଭୋରରୁ ଉଠି ପୋଖରୀ ବା ନଈ ପାଣି ଭିତରେ ବେକ ପର୍ଯ୍ୟନ୍ତ ବୁଡ଼ିରହି ଅଧଘଣ୍ଟା କାଳ ସ୍ୱର ସାଧନା କରିବାକୁ । ମୁଁ ଏହା କରିବାକୁ ଇଚ୍ଛା କରିବି ନାହିଁ ବୋଲି ଚିନ୍ତା କରି ସେ ନିଜେ ମୋ ସହିତ ସେହିପରି ଅଭ୍ୟାସ କରିବାକୁ ଲାଗିଲେ । ପ୍ରାୟ ଛ'ମାସ ଏହିପରି ସାଧନା କରିବା ଫଳରେ ପ୍ରକୃତରେ ଗଳାର ସ୍ୱର

ସୂକ୍ଷ୍ମ ଓ ସ୍ପଷ୍ଟ ହେଲା । ଏହାର ପ୍ରମାଣ ପାଇଥିଲି ଅଭିନୟ ବେଳେ, ଯେତେବେଳେ ମୋର କଣ୍ଠସ୍ୱର ପ୍ରେକ୍ଷାଳୟର ଶେଷ ଭାଗରେ ବସିଥିବା ଦର୍ଶକ ମଧ୍ୟ ଭଲଭାବରେ ଶୁଣି ପାରୁଥିଲେ । କହିବା ବାହୁଲ୍ୟ ଯେ ସେ ବେଳରେ ମାଇକ୍ ଓ ଲାଉଡ୍‌ସିକର୍ ନଥିଲା । କେବଳ ସ୍ପଷ୍ଟ ଓ ଉଚ୍ଚ କଣ୍ଠସ୍ୱର ଦ୍ୱାରା ହିଁ ନିଜର ବଚନିକା (Dialogue) କୁ ପ୍ରେକ୍ଷାଳୟର ଶେଷ ଭାଗରେ ବସିଥିବା ଦର୍ଶକଙ୍କ ନିକଟରେ ପହଞ୍ଚାଇବାକୁ ପଡୁଥିଲା ।

ଏହିପରି ସ୍ୱରସାଧନା ବର୍ଷାଋତୁର ଶେଷଠାରୁ ଆରମ୍ଭ ହୋଇ ଶୀତଋତୁ ଶେଷ ପର୍ଯ୍ୟନ୍ତ କରିବାକୁ ପଡୁଥିଲା । ନୃତ୍ୟାଭ୍ୟାସରେ ମଧ୍ୟ ସେହିପରି ନିୟମିତ ବ୍ୟବସ୍ଥା ମାନିବାକୁ ପଡୁଥିଲା । ୧୯୨୩ ଠାରୁ ୧୯୩୬ ପର୍ଯ୍ୟନ୍ତ ୧୪ ବର୍ଷକାଳ ଆମେ ଦୁହେଁ 'ରାଧାକୃଷ୍ଣ ଥିଏଟର' ଓ 'ଆର୍ଟ ଥିଏଥର'ରେ କଣ୍ଠସ୍ୱର, ଅଙ୍ଗଭଙ୍ଗୀ ଓ ନୃତ୍ୟରେ ଦର୍ଶକଙ୍କର ପ୍ରିୟଭାଜନ ହୋଇପାରିଥିଲୁ ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ପରିଗଣିତ ହେବାର ଶୁଭ ମୁହୂର୍ତ୍ତରେ ରାଅଠାରେ ସାର୍ ଜନ୍ ହବାକ୍‌ଙ୍କୁ ଯେଉଁ ସମ୍ବର୍ଦ୍ଧନା ଦିଆଯାଇଥିଲା ସେଥିରେ ମୁଁ 'ଶିବପୂଜା' ନୃତ୍ୟ ପ୍ରଦର୍ଶନ କରି ହବାକ୍ ସାହେବଙ୍କ ଠାରୁ ପୁରସ୍କାର ଲାଭ କରିବା ସଙ୍ଗେ ସଙ୍ଗେ ଦୀର୍ଘ ଏକ ମାସ ବ୍ୟାପୀ ବିଭିନ୍ନ ସ୍ଥାନରେ ନୃତ୍ୟାନୁଷ୍ଠାନ ପ୍ରଦର୍ଶନରେ ଯୋଗ ଦେଇଥିଲି । ଆହୁରି ଏକ ଘଟଣାରୁ ରାମ ମାଣିଆଙ୍କର ଦୂରଦୃଷ୍ଟିର ପରିଚୟ ମିଳିଥିଲା । ସେ ସମୟରେ ନାଟକ ପରିବେଷଣ ଲାଗି ପ୍ରଚାର କରିବାର ସୁବିଧା ନଥିଲା । କେବଳ ଢେ଼ଙ୍ଗୁରା ବା ଡ଼ମ୍ବରୁ ବାଜା ବଜାଇ ଓ ହେଣ୍ଡବିଲ୍ ବାଣ୍ଟି କେବେ କେଉଁଠି କି ନାଟକ ଅଭିନୀତ ହେବ, ତାହା ପ୍ରଚାର କରାଯାଉଥିଲା । ଏହାଖୁବ୍ ବ୍ୟୟସାପେକ୍ଷ ନଥିଲେ ମଧ୍ୟ ଲୋକଙ୍କୁ ଆକର୍ଷିତ କରିପାରୁନଥିଲା । ରାମ ମାଣିଆ ଏକ ପ୍ରସ୍ତାବ ଦେଲେ ଯେ ନାଟକ ଆରମ୍ଭ ପୂର୍ବରୁ ଥିଏଟରରେ ଯେଉଁ କନ୍‌ସାର୍ଟ ବଜାଯାଏ, ସେହିପରି ଯଦି ଗୋଟିଏ ବଳଦଗାଡ଼ିରେ ସମସ୍ତଙ୍କୁ ବସାଇ କନ୍‌ସାର୍ଟ ବଜାଇ ପ୍ରଚାର କରାହୁଅନ୍ତା ତେବେ ଲୋକଙ୍କ ଦୃଷ୍ଟି ଆକର୍ଷଣ କରିବା ସହଜ ହୁଅନ୍ତା । ତାଙ୍କ ପ୍ରସ୍ତାବକୁ ସମସ୍ତେ ସମର୍ଥନ କଲେ । ରାମ ମାଣିଆ କ୍ଲାରିଓନେଟ୍, ତବଲା, ଢୋ଼ଲକ ଇତ୍ୟାଦି ବାଦ୍ୟଯନ୍ତ୍ର ବଜାଇ ପାରୁଥିଲେ । ମୋତେ ସେ କ୍ଲାରିଓନେଟ୍ ବଜାଇବା ଶିଖାଇଲେ । ମୁଁ ନୂଆଶିକ୍ଷାରେ ସାମାନ୍ୟ ଭୁଲ କରୁଥାଏ, ତଥାପି ଗୋଟିଏ ନୂତନ ଉତ୍ସାହରେ ଲାଗିପଡ଼ି କାର୍ଯ୍ୟ ଆରମ୍ଭ କରିଦେଲୁ । ପ୍ରକୃତପକ୍ଷେ ଆମର ସେହି ପ୍ରଥମ ଦିନର ପ୍ରଚାର ବିଫଳ ହୋଇନଥିଲା । ନାଟକ ଦେଖିବାକୁ ଆଗ୍ରହୀ ହୋଇ ଲୋକସଂଖ୍ୟା

ବୃଦ୍ଧି ପାଇଥିଲା । ଏହାଦ୍ୱାରା ପ୍ରଚାର ଖର୍ଚ୍ଚ ମଧ କମିଗଲା । ଏଥିପାଇଁ ସ୍ୱତ୍ୱାଧିକାରୀ ମାଷ୍ଟର ମାଣିଆଙ୍କୁ ପ୍ରଶଂସା ନକରି ରହିପାରିନଥିଲେ ।

ଆହୁରି ଏକ ଘଟଣା- ନାଟକର ବିଭିନ୍ନ ଭୂମିକାରେ ଅଂଶଗ୍ରହଣ କରିଥିବା ଶିଳ୍ପୀମାନଙ୍କୁ ଜଣେ ଲୋକ ମେକ୍ଅପ୍ କରୁଥିଲେ । ରାମ ମାଣିଆ ସେହି ପଦ୍ଧତିରେ ପରିବର୍ତ୍ତନ କରିଥିଲେ । ପ୍ରତ୍ୟେକ ଅଭିନେତାଙ୍କୁ ନିଜେ ନିଜର ରୂପ ବିନ୍ୟାସର ଅଭିନୟ ଅଭ୍ୟାସ କରାଇଥିଲେ ।

ହରିପୁର ଗ୍ରାମକୁ ନାଟକ ଶିକ୍ଷା ଦେବାକୁ ଯାଉଥିବାରୁ ସେଠାକାର ସମସ୍ତେ ତାଙ୍କୁ 'ମାଷ୍ଟର ବାବୁ' ବୋଲି ଡ଼ାକୁଥିଲେ । ପରବର୍ତ୍ତୀ ସମୟରେ ସେ ସେହି 'ମାଷ୍ଟର ମାଣିଆ' ନାମରେ ପରିଚିତ ହେଲେ ।

ହରିପୁର ଏକ ସାଜପୋଷାକ ତିଆରି କରୁଥିବା ଶିଳ୍ପୀମାନଙ୍କର ଗ୍ରାମ । କଟକ ଜିଲ୍ଲା ଅନ୍ତର୍ଗତ ଯାଜପୁର ସବ୍‌ଡ଼ିଭିଜନ୍‌ର ଅଧିନରେ ସେ ସମୟରେ ଯାତ୍ରା, ସୁଆଙ୍ଗ ଓ ନାଟକ ଦଳର ପୌରାଣିକ ତଥା ଐତିହାସିକ ନାଟକ ବେଶୀ ଅଭିନୀତ ହେଉଥିଲା । ଚରିତ୍ର ଅନୁଯାୟୀ ବିଭିନ୍ନ ପୋଷାକର ମଧ ପ୍ରୟୋଜନ ହେଉଥିବାରୁ ସେଠାକାର ପୋଷାକ ତିଆରି କରୁଥିବା ଶିଳ୍ପୀମାନେ ଖୁବ୍ ପାରିଶ୍ରମିକ ଅର୍ଜନ କରିପାରୁଥିଲେ । କ୍ରମେ ପୌରାଣିକ ଓ ଐତିହାସିକ ବିଷୟବସ୍ତୁ ଘେନି ନାଟକ ରଚନା କମିଗଲାରୁ ତାଙ୍କର ବ୍ୟବସାୟ ମଧ ଶିଥିଳ ହୋଇଗଲା । ଏହି କାରଣରୁ ସେହି ଶିଳ୍ପୀମାନଙ୍କ ଦ୍ୱାରା ହେଉଥିବା ଅଭିନୟ ସୀମିତ ହୋଇଗଲା ।

ବ୍ୟବସାୟୀ ରଙ୍ଗମଞ୍ଚର କଳାକାରମାନଙ୍କ ମଧରେ ସ୍ୱର୍ଗତ ରାମଚନ୍ଦ୍ର ମାଣିଆ ଥିଲେ ଜଣେ ଯୋଗଜନ୍ମା ବ୍ୟକ୍ତି । ଏକାସଙ୍ଗରେ ନୃତ୍ୟ, ସଂଗୀତ ଓ ଅଭିନୟରେ ଏପରି କୃତିତ୍ୱ ପ୍ରଦର୍ଶନ କରିଥିବା କଳାକାର ବିରଳ । ସେ ଥିଲେ ସବୁଥିରେ ମାଷ୍ଟର । ନାଚ ଶିଖାଇବା ଓ ନାଚିବା, ଗୀତ ବୋଲିବା ଏବଂ ଶିକ୍ଷା ଦେବା ; ବାଦ୍ୟଯନ୍ତ୍ର ବଜେଇବା ସହ ଶିକ୍ଷାଦେବା, ଅଭିନୟ କରିବା ଓ ଶିକ୍ଷା ଦେବାରେ ତାଙ୍କର ବିଚକ୍ଷଣ ଦକ୍ଷତା ଥିଲା ।

ରଙ୍ଗମଞ୍ଚ ବ୍ୟତୀତ ଚଳଚ୍ଚିତ୍ର ଅଭିନୟରେ ମଧ ସେ ନିଜର ସୁନାମ ରଖିଯାଇଛନ୍ତି । ଆନ୍ତରିକତା ଓ କର୍ତ୍ତବ୍ୟନିଷ୍ଠା ତାଙ୍କୁ କଳାକାରମାନଙ୍କ ଭିତରେ ଏକ ଗୌରବମୟ ସ୍ଥାନ ପ୍ରଦାନ କରିଥିଲା । ତାଙ୍କର ସେ ସ୍ଥାନ ଆଜି ବି ଶୂନ୍ୟ ରହିଛି ।

ମାଷ୍ଟର ମାଣିଆ ଆଜି ନାହାନ୍ତି ସତ କିନ୍ତୁ ତାଙ୍କର ସ୍ମୃତି, ତାଙ୍କର ପ୍ରୀତି ମୋ ମନରେ ଚିର ଜାଗ୍ରତ ରହିଛି ଏବଂ ରହିଥିବ ।



# ଦୁଇଟି ଜ୍ୱଳନ୍ତ ଆଖି

*ନାଟ୍ୟସଂଜୀବନୀ ବ୍ୟୋମକେଶ ତ୍ରିପାଠୀ*

ହଁ, ସେ ଆଖି ଦୁଇଟି ଦେଖିଲାଭଳି ମନେ ରଖିଲା ଭଳି ଦୁଇଟି ଜ୍ୱଳନ୍ତ ଅଙ୍ଗାର ଖଣ୍ଡ ।

ମୁଁ ଭୟରେ ଶଙ୍କିଯାଇଥିଲି- ଯଦିଓ ଆମ ଭିତରେ ଦୂରତ୍ୱ ବହୁତ ଥିଲା । ସେ ଆଖି ଦୁଇଟା ଥିଲା ରଙ୍ଗମଞ୍ଚ ଉପରେ ଓ ମୁଁ ଥିଲି ପ୍ରେକ୍ଷାଳୟ ମଧ୍ୟରେ । ଦର୍ଶକ ଓ ଅଭିନେତା ମଧ୍ୟରେ ଥିବା ଚିରନ୍ତନ ଦୂରତ୍ୱ ଯଦିଓ ଆମ ଭିତରେ ଥିଲା ତଥାପି ମୋ ଦେହର ରୁମ ଟାଙ୍କୁରି ଉଠିଥିଲା । ମୋର ନିଃଶ୍ୱାସ ପ୍ରଶ୍ୱାସ ରହିଯାଉଥିଲା । ଭୟରେ ଓ ଉତ୍କଣ୍ଠାରେ ମୁଁ ସ୍ଥାଣୁ ପାଲଟି ଯାଇଥିଲି । ଚାହିଁ ରହିଥିଲି କାଳାଚାନ୍ଦ ଆଡ଼କୁ ଯେଉଁ କାଳାଚାନ୍ଦ ଅନ୍ୟାୟ, ଅବିଚାର, ନିଷ୍ଠୁରତା ଓ ଅତ୍ୟାଚାର ସହିନପାରି ପ୍ରତିଶୋଧ ନେବାର ଶପଥ ନେଇ, ପରିବର୍ତ୍ତିତ ହେଲା କଳାପାହାଡ଼ରେ । ସେଇ ନାଟକୀୟ ପରିବର୍ତ୍ତନର ମୁହୂର୍ତ୍ତ ମୋ ଶରୀରରେ ଶିହରଣ ଆଣି ଦେଇଥିଲା ।

କାଳାଚାନ୍ଦ ଶ୍ରୀମନ୍ଦିର ସମ୍ମୁଖରେ ବ୍ରାହ୍ମଣମାନଙ୍କର ଦୟାଭିକ୍ଷା କରିଛି, କ୍ଷମାପ୍ରାର୍ଥନା କରିଛି, କାକୁତିମିନତି ହୋଇ ସେମାନଙ୍କର ପାଦଧରି ଦାଣ୍ଡ ଧୂଳିରେ ଗଡ଼ିଯାଇଛି । ଶେଷରେ ଅତ୍ୟାଚାର ସହି ନପାରି ସେ ଆତୁର-କାତର-କାଳାଚାନ୍ଦ ଗର୍ଜି ଉଠି ଦଣ୍ଡାୟମାନ ହୋଇଛି । ସେ ପ୍ରତିଜ୍ଞା କରିଛି ଏଇ ଶ୍ରୀମନ୍ଦିର, ଏଇ ଦାରୁବ୍ରହ୍ମ ଯାହାଲାଗି ବ୍ରାହ୍ମଣମାନଙ୍କର ଏତେ ଗର୍ବ, ଅହଙ୍କାର, ଅନ୍ୟାୟ, ଅତ୍ୟାଚାର ସେଇ ମନ୍ଦିରକୁ ଧୂଳିସାତ୍ କରିଦେବ । ସେଇ କାଠର ଠାକୁରକୁ ଜାଳିପୋଡ଼ି ଭସ୍ମୀଭୂତ କରିଦେବ । କାଳାଚାନ୍ଦରୁ କଳାପାହାଡ଼ ! ସେଇ ପରିବର୍ତ୍ତନ ମୁହୂର୍ତ୍ତ ! ସେଇ ରୁଦ୍ର ରୂପ! ସେଇ ଶାର୍ଦ୍ଦୁଳର ଗର୍ଜନ ! ଆଉ ସେଇ ଦୁଇଟି ଜ୍ୱଳନ୍ତ ଆଖି !

ମୋର ଠିକ୍ ମନେ ଅଛି, ଏଇ ଦୃଶ୍ୟରେ ପ୍ରେକ୍ଷାଳୟ ଫାଟି ପଡ଼ିଥିଲା କରତାଳିରେ । ମୁଁ ମଧ୍ୟ ପ୍ରାଣପଣେ ତାଳି ମାରିଥିଲି ଓ ତାହାପରେ ଆଖିରୁ ଲୁହ ପୋଛିଥିଲି । ସେ ମୁହୂର୍ତ୍ତ-ଭୁଲିବାର ନୁହେଁ -ଅନ୍ତତଃ ମୋ ପକ୍ଷରେ । ସେଇ ଦୃଶ୍ୟ ପରେ ପରେ ପ୍ରେକ୍ଷାଳୟରେ ଓଡ଼ିଆ ଦର୍ଶକଙ୍କର କି ଆନନ୍ଦ ! କି ଉତ୍ତେଜନା ! ମୁଁ ପ୍ରଥମ ଧାଡ଼ିରେ ବସିଥାଏ, ମୋର ବାପା, ବୋଉ ଓ ଭାଇଭଉଣୀଙ୍କ ସହିତ । ବାପାଙ୍କୁ ପଚାରିଲି, 'ତାଙ୍କ ନାଁ କଣ' ? ବାପା କହିଲେ, ସେଇପରା 'ମାଷ୍ଟର ମାଣିଆ' । ତାଙ୍କ ନାଁ ସେଇଠି ଶୁଣିଲି, ପ୍ରଥମ ଥର ପାଇଁ ଓ ଅନୁଭବ କଲି ଜଣେ ଅଭିନେତା କିପରି

ହଜାର ହଜାର ଦର୍ଶକଙ୍କୁ ପୁଲକିତ କରିପାରେ ତା'ର ସଫଳ ଅଭିନୟ ମାଧ୍ୟମରେ ।

ଅଭିନେତାଙ୍କୁ ମନେ ମନେ ପ୍ରଶଂସା କଲି ସତ, କିନ୍ତୁ ତାଙ୍କ ନାଁଟା କାହିଁକି ବହୁତ ଦିନଯାଏ ଖଟକା ଲାଗିଲା ମୋର କାନକୁ । ଛଅ ବର୍ଷ ବୟସରୁ ବିହାରର ବିଭିନ୍ନ ଅଞ୍ଚଳରେ ବୁଲି ବୁଲି ଓଡ଼ିଶାର ସାଙ୍ଗିଆ ଗୁଡ଼ିକ ସହିତ ମୋର ବିଶେଷ ପରିଚୟ ନଥାଏ । ଯେଉଁ କେତୋଟି ଓଡ଼ିଆ ସାଙ୍ଗିଆ ଶୁଣିଥାଏ, ତାହା ମିଶ୍ର, ତ୍ରିପାଠୀ, ରଥ, ପତି, ଦାସ, ମହାପାତ୍ର, ମହାନ୍ତି, ନାୟକ, ସାହୁ, ପଟ୍ଟନାୟକ ଭିତରେ ଆବଦ୍ଧ । 'ମାଣିଆ' ସାଙ୍ଗିଆଟି ମୁଁ ପ୍ରଥମ ଥର ପାଇଁ ଶୁଣିଲି । ତେଣୁ ବେଶ୍ କିଛି ଦିନଯାଏ ନାଁ ଟା ଅସ୍ୱାଭାବିକ ଲାଗିଥିଲା । ସେ ଅବଶ୍ୟ ୧୯୪୦-୪୧ ମସିହାର କଥା ।

ମୁଁ ଟାଟା ନଗରରେ ମାଇନର ପାସ୍ କରି ୮ମ/୯ମ ଶ୍ରେଣୀରେ ପଢୁଥାଏ । ଉତ୍କଳ ଆସୋସିଏସନ୍‌ର ସୌଖୀନ ଅଭିନେତା ଭାବରେ କିଶୋର ଭୂମିକାରେ ଅଭିନୟ ଆରମ୍ଭ କରିଥିଲି । ସେତିକିବେଳେ ଅନ୍ନପୂର୍ଣ୍ଣା ଥିଏଟର୍ ଟାଟା ଆସି ଉତ୍କଳ ଆସୋସିଏସନ୍‌ରେ ଅଭିନୟ ପ୍ରଦର୍ଶନ କରୁଥାନ୍ତି । ପେଷାଦାର ଅଭିନେତାଙ୍କର ଅଭିନୟ ଦେଖିବାକୁ ମନରେ ପ୍ରବଳ ଆଗ୍ରହ ଥାଏ । ବିଶେଷତଃ ମାଷ୍ଟର ମାଣିଆ ଓ କାଶୀନାଥ ସାହୁଙ୍କର ଅଭିନୟ । କଳାପାହାଡ଼, କୋଣାର୍କ, ମହାପଥର ଯାତ୍ରା, ମୀର କାଶୀମ୍, ମାତୃପୂଜା ପ୍ରଭୃତି ଦେଖି ମୁଁ ମୁଗ୍ଧ ହୋଇ ଯାଉଥିଲି । ଆଉ ସବୁବେଳେ ମୋ ମନରେ ରେଖାପାତ କରୁଥିଲା ସେଇ ଦୁଇଟି ଜ୍ୱଳନ୍ତ ଆଖି । ତିନି ଚାରି ବର୍ଷ ଯାଏଁ ତାଙ୍କ ସହିତ ମୋର ସଂପର୍କ ଥିଲା ସେଇ ଦୂରରୁ । ସେ ଥିଲେ ଅଭିନେତା ଓ ମୁଁ ଥିଲି ତାଙ୍କ ଗୁଣମୁଗ୍ଧ ଦର୍ଶକ ।

ଜଟଣୀର ଉତ୍ତରାୟଣୀ କ୍ଲବ ଅନୁଷ୍ଠାନଟି ବହୁ ପୁରାତନ । ଏହା ଉତ୍ତରାୟଣୀ (ଡ଼ମୁଣେଇ) ଠାକୁରାଣୀଙ୍କ ମନ୍ଦିର ହତା ଭିତରେ ପ୍ରତିଷ୍ଠିତ । ପ୍ରତିବର୍ଷ ଦଶହରାରେ ଏଠାରେ ଅଭିନୟ ହେବାର ପରମ୍ପରା ରହିଛି । ଏହାର ପ୍ରତିଷ୍ଠାତା ଓ ଉଦ୍ୟୋକ୍ତା ଥିଲେ ସେଠାର ତତ୍କାଳୀନ ସର୍ବରାକାର ଶତପଥି ପରିବାର । ସେହି ପରିବାର ମଧ୍ୟରୁ ବହୁ ଉଚ୍ଚକୋଟୀର ସୌଖୀନ ଅଭିନେତା ଓ ଚିତ୍ରଶିଳ୍ପୀ ଆତ୍ମପ୍ରକାଶ କରିଥିଲେ । ସେମାନେ ପ୍ରତିବର୍ଷ ଖ୍ୟାତି ସଂପନ୍ନ ନିର୍ଦ୍ଦେଶକମାନଙ୍କୁ ଆମନ୍ତ୍ରଣ କରି ନାଟକ ଶିଖୁଥିଲେ । ଶ୍ରୀଯୁକ୍ତ ବଲାଇ ଚାନ୍ଦ ବାନାର୍ଜୀ ଓ ମାଷ୍ଟର ମାଣିଆ ଥିଲେ ସେହି ରଙ୍ଗମଞ୍ଚର ଧରାବନ୍ଧା ନିର୍ଦ୍ଦେଶକ । ଏଭଳି ବଳିଷ୍ଠ ନିର୍ଦ୍ଦେଶକଙ୍କ ହାତ ତିଆରି କଳାକାର ମାନେ ଯେ ନିଶ୍ଚୟ କୁଶଳୀ ଅଭିନେତା ଥିଲେ ଏହା କହିବା ବାହୁଲ୍ୟମାତ୍ର ।

ମାଷ୍ଟର ମାଣିଆଙ୍କ ଜନ୍ମସ୍ଥାନ ଜଟଣୀ ଠାରୁ ତିନି ମାଇଲ ଦୂର ରେଙ୍ଗଳ ଗ୍ରାମରେ । ତାଙ୍କର ଗାଁ କୁ ଯିବା ଆସିବା ବାଟ ହଉଛି ଜଟଣୀ । ତେଣୁ ଉତ୍ତରାୟଣୀ କ୍ଲବରେ ତାଙ୍କ ପାଇଁ ଏକ ସ୍ଥାୟୀ ଆସନ ଥିଲା । ପ୍ରତିବର୍ଷ ଆଶ୍ୱିନ ମାସରେ ଅନ୍ନପୂର୍ଣ୍ଣା ଥିଏଟରରୁ ଏକମାସ ଛୁଟି ନେଇ ସେ ଡ଼ମୁଣେଇ ଠାକୁରାଣୀଙ୍କ ମନ୍ଦିରରେ ରହୁଥିଲେ ଓ ନାଟକ ଶିଖାଉଥିଲେ । ପ୍ରତିବର୍ଷ ଦୁଇଟି ବା ତିନୋଟି ନାଟକ ଶିଖାଯାଉଥିଲା ଓ ଦଶହରା ରାତିଠାରୁ ତିନି ଚାରିଦିନ ପର୍ଯ୍ୟନ୍ତ ଅଭିନୟ କରାଯାଉଥିଲା । ସେ ନିଜେ ମଧ୍ୟ ଅଭିନୟ କରୁଥିଲେ । ପ୍ରତିବର୍ଷ ଠାକୁରାଣୀଙ୍କ ନବମୀ ପୂଜା ଓ ଭୋଗ ତାଙ୍କ ଖର୍ଚ୍ଚରେ ହେଉଥିଲା ।

୧୯୪୩-୪୪ ମସିହା ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ଭାରତ ବର୍ଷ ତ୍ରସ୍ତ । ପାଶ୍ଚାତ୍ୟ ଦେଶର ସୈନ୍ୟମାନେ ଭାରତରେ ଭିଡ଼ ଜମେଇ ବସିଥାନ୍ତି । ନେତାଜୀଙ୍କ ଆଜଦ୍ ହିନ୍ଦ୍ ଫୌଜର 'ଚଲୋ ଦିଲ୍ଲୀ' ଓ 'ଜୟ ହିନ୍ଦ୍' ଧ୍ୱନୀରେ ସାରା ଭାରତ ବର୍ଷ ଓ ବ୍ରହ୍ମଦେଶ ପ୍ରତିଧ୍ୱନିତ ହେଉଥାଏ । ବାପୁଜୀ, ପଣ୍ଡିତ ଜୀ, ସର୍ଦ୍ଦାରଜୀ, ପ୍ରଭୃତି ନେତାମାନଙ୍କ 'ଭାରତ ଛାଡ଼' ଧ୍ୱନୀରେ ଇଂରେଜ ସରକାର ବିବ୍ରତ । କଲିକତା ଓ କୁଜଙ୍ଗରେ ଜାପାନୀ ସୈନ୍ୟଙ୍କର ବୋମାବର୍ଷଣ ଫଳରେ ବଡ଼ ବଡ଼ ସହରରୁ ସ୍ତ୍ରୀ ପିଲାଙ୍କୁ ନିରାପଦ ସ୍ଥାନ ଅର୍ଥାତ୍ ଗାଁ ଗହଳିକୁ ଚାଲିଯିବାପାଇଁ ସରକାର ଆଦେଶ ଦେଇଦେଲେଣି । ତେଣୁ ଆମେ ବାଧ ହୋଇ ବାପାଙ୍କୁ ଟାଟାରେ ଏକୁଟିଆ ଛାଡ଼ି ଦେଇ ଆସି ଆଶ୍ରୟ ନେଲୁ ଜଟଣୀରେ । ମୋର ଦୁଇଜଣ ମାମୁଁ ଜଟଣୀ ରେଳ ବିଭାଗରେ ଚାକିରୀ କରୁଥାନ୍ତି । ତେଣୁ ସେ ସମୟରେ ଜଟଣୀ ଆମପାଇଁ ସୁବିଧା ଜାଗାଥିଲା । ସାମୟିକ ଆଶ୍ରୟ ନେବାକୁ ଆସିଥିଲୁ ସତ ମାତ୍ର ଏହାର ପାଣି, ପବନ ଓ ଲୋକମାନଙ୍କ ସ୍ନେହ ଶ୍ରଦ୍ଧାରେ ବାନ୍ଧିହୋଇ ଶେଷରେ ସେହିଠାରେ ଘର କରି ରହିଗଲୁ । ଏହିପରି ଭାବରେ ଭାଗ୍ୟ ମୋତେ ଆଣି ପହଞ୍ଚେଇ ଦେଲା ମୋର ପୂଜ୍ୟ ଗୁରୁ ମାଷ୍ଟର ମାଣିଆଙ୍କ ପାଖରେ । ସେତେବେଳେ ମୋର ବୟସ ୧୪/୧୫ ବର୍ଷ । ସୁନ୍ଦର, ସ୍ୱାସ୍ଥ୍ୟବାନ ଓ ଅଭିନୟ କୁଶଳ । ତେଣୁ ସାଙ୍ଗେ ସାଙ୍ଗେ ଉତ୍ତରାୟଣୀ କ୍ଲବରେ ଅଭିନୟ କରିବାକୁ ଆମନ୍ତ୍ରଣ ଆସିଗଲା । ଗୁରୁଙ୍କଠାରୁ ଶିକ୍ଷା ନେବାର ସୁଯୋଗ ମୁଁ ପାଇଗଲି ।

ପ୍ରଥମ ପରିଚୟରୁ ହିଁ ଆମେ ଦୁହେଁ ଦୁହିଁଙ୍କ ପ୍ରତି ଆକର୍ଷିତ ହୋଇଥିଲୁ । ସେ ମୋତେ ଆଦରରେ ନାତି ବୋଲି ଡ଼ାକିଲେ, ଆଉ ମୁଁ ତାଙ୍କୁ ଅଜା ବୋଲି ଡ଼ାକୁଥିଛି । ଏହି ଲେଖାରେ ପରବର୍ତ୍ତୀ ଅଂଶରେ ତାଙ୍କୁ ମାଷ୍ଟର ମାଣିଆ ପରିବର୍ତ୍ତେ 'ଅଜା' ବୋଲି ଉଲ୍ଲେଖ କରିବି । ଅଭିନୟ କଳାର ଜ୍ଞାତବ୍ୟ ଓ ସୂକ୍ଷ୍ମ ତତ୍ତ୍ୱ ସବୁ ପ୍ରଥମେ ତାଙ୍କଠାରୁ ଶିଖିଲି ।

ଅଜା କୌଣସି ନାଟ୍ୟ ବିଦ୍ୟାଳୟରେ ପଢ଼ିନଥିଲେ ବା କୌଣସି ପ୍ରକାର ଡ଼ିଗ୍ରୀ ବା ଡ଼ିପ୍ଲୋମା ପାଇ ନଥିଲେ । ନାଟ୍ୟଶାସ୍ତ୍ର ବା ଷ୍ଟାନିସ୍‌ଲାଭସ୍କିଙ୍କ ନାମ ମଧ୍ୟ ସେ ଶୁଣିନଥିଲେ । କିନ୍ତୁ ଅଭିନୟର ବିଭିନ୍ନ କଳାରେ ତାଙ୍କର ବ୍ୟାବହାରିକ ଜ୍ଞାନ ଥିଲା ପ୍ରଚଣ୍ଡ । କେଉଁଠି କିପରି ଭାବରେ ଦର୍ଶକମାନଙ୍କ ଆକର୍ଷଣକୁ ଧରି ରଖିବାକୁ ହେବ ତାହା ସେ ନିଜ ମନଭିତରେ ଠିକ୍ ବୁଝିପାରୁଥିଲେ । ଘଟଣାବଳୀକୁ ନାଟକର ଶୀର୍ଷବିନ୍ଦୁ ପର୍ଯ୍ୟନ୍ତ କିପରି ବଢ଼େଇ ନେବାକୁ ହେବ ସେ ବିଷୟରେ ତାଙ୍କର ନିଜସ୍ୱ ଅନ୍ତର୍ନିହିତ ବିଚାରଶକ୍ତି ଥିଲା । ଏହାହିଁ ଐଶ୍ୱରିକ ଶକ୍ତି । ତେଣୁ ଅଜା ଏକ ନିରକ୍ଷର ଗରିବ, ଗୋପାଳ ପରିବାରରେ ଜନ୍ମଗ୍ରହଣ କରି ମଧ୍ୟ ସମଗ୍ର ଓଡ଼ିଶାର କୋଟି କୋଟି ଲୋକଙ୍କ ମଧ୍ୟରେ ବରେଣ୍ୟ କଳାକାର ହୋଇପାରିଥିଲେ । ଏଣୁ ସେ ଥିଲେ ଯୋଗଜନ୍ମା ଦେବୀ ସରସ୍ୱତୀଙ୍କର ବରପୁତ୍ର ।

ଉତ୍ତରାୟଣୀ କ୍ଲବର ରିହାର୍ସାଲ ସମୟରେ ଗୋଟିଏ ସଂଳାପକୁ ବିଭିନ୍ନ Timing-pause ଦେଇ, ବିଭିନ୍ନ Modulation ମାଧ୍ୟମରେ ବିଭିନ୍ନ Action ସଂଯୋଗ କରି ଅଜା ଅଭିନୟ କରି ଦେଖାଉଥିଲେ । ଗୋଟିଏ ସଂଳାପର କହିବାର ଭଙ୍ଗୀ ବଦଳାଇ ଦେଲେ ତାହା କିପରି ଭିନ୍ନ ଭାବ ଓ ଭିନ୍ନ ରୂପ ଗ୍ରହଣ କରେ ତାହା ତାଙ୍କଠାରୁ ସେଇଠାରେ ଶିଖିଲି । ସେଇ ଅକ୍ଷର କେତୋଟି କେତେ ବଦଳିଯାଏ । ସ୍ୱରର ତାରତମ୍ୟ ହେତୁ ସେଇ ଅକ୍ଷର ଗୁଡ଼ିକ କେତେବେଳେ ସନ୍ଦେହ ସୃଷ୍ଟି କରେ, କେତେବେଳେ ଭୟ ଆଣିଦିଏ, ଅବା କେତେବେଳେ ମନକୁ ଆନନ୍ଦରେ ଭରିଦିଏ । ଅଜାଙ୍କର ଏଇ ସବୁ ଉଦାହରଣ ଓ ଶିକ୍ଷାର ଝରଣାକୁ ମୁଁ ମରୁବାଲିର ଯାତ୍ରୀ ଭଳି ପିଇଯାଉଥାଏ । ଗୋଟିଏ ପଦରେ କହିବାକୁ ଗଲେ ଅଭିନେତାକୁ କେତେ ଚିନ୍ତା କରିବାକୁ ହୁଏ । କିପରି ଭାବ ସୃଷ୍ଟି କରିବାକୁ ହୁଏ ଓ ସେଇ ମାଧ୍ୟମରେ ହଜାରେ ଦର୍ଶକଙ୍କ ମନକୁ କିପରି ଗୋଟିଏ ତନ୍ତ୍ରୀରେ ବଜାଇ ହୁଏ, ତାହା ମୁଁ ଅନୁଭବ କଲି ଅଜାଙ୍କ ଶିକ୍ଷାରୁ । ବାଚିକ ଅଭିନୟ ସହିତ ଆଙ୍ଗିକ ଅଭିନୟ ମଧ୍ୟ ଆଉ ସେଇଦୁଇଟି ଜ୍ୱଳନ୍ତ ଆଖି ।

ହଁ ଅଜାଙ୍କ ଆଖିର ପୁଅ ଦୁଇଟି ଥିଲା ଖଇରିଆ ରଙ୍ଗର । ତାହା କଳା ନଥିଲା, ବାଦାମୀ ରଙ୍ଗର ନଥିଲା ବା ଚିଲାରଙ୍ଗର ନଥିଲା । ତାହାଥିଲା ଈଷତ୍ ଖଇରିଆ ରଙ୍ଗର । ତେଣୁ ପାଦ ପ୍ରଦୀପର ଆଲୋକରେ ସେ ଡ଼ୋଳାରୁ ଏକ ରକ୍ତିମ ଆଭା ଫାଟି ଉଠୁଥିଲା । ମନେ ହେଉଥିଲା ଯେମିତି ବାଘର ଦୁଇଟା ଜ୍ୱଳନ୍ତ ଆଖି ! ସେଇ ଆଖି ହସାଉଥିଲା, କନ୍ଦାଉଥିଲା, ପ୍ରେମାପ୍ଲୁତ କରୁଥିଲା ଓ ଭୟରେ ରୋମାଞ୍ଚିତ କରୁଥିଲା । ଆଖିର ଭାଷା ପ୍ରକୃତରେ କ'ଣ ତାହା ବୁଝିଲି ତାଙ୍କରି ପାଖରୁ । ସେ ସବୁବେଳେ କହୁଥିଲେ 'ସଂଳାପ

କହିବାକୁ କେବେହେଲେ ବ୍ୟସ୍ତ ହୁଅନି । ସଂଳାପ ହେଉଛି ନାଟ୍ୟକାରଙ୍କର ସୃଷ୍ଟି । ମୁହଁ ଓ ଆଖିର ଭାବ, ଦେହର ଅଭିନୟ ଓ ଗଳାର ସ୍ୱର ହେଉଛି ଅଭିନେତାଙ୍କର ଅସ୍ତ୍ର । ତେଣୁ ନିଜ ଅସ୍ତ୍ରଗୁଡ଼ିକ ବ୍ୟବହାର କରି ଅଭିନୟକୁ ପରିସ୍ଫୁଟ କରିବାର ଚେଷ୍ଟା କର, ତା'ପରେ ସଂଳାପ କୁହ । ଖାଲି ସଂଳାପ ମୁଖସ୍ଥ କରି ଗଡ଼ ଗଡ଼ କରି କହିଗଲେ ଅଭିନେତା ଓ ବେତାର କେନ୍ଦ୍ରର ଘୋଷକଙ୍କ ମଧ୍ୟରେ ପ୍ରଭେଦ କିଛି ରହିବନି ।

ପ୍ରତିବର୍ଷ ଗୋଟିଏ ମାସ ଅଜାଙ୍କ ସାନିଧ ଲାଭ କରୁଥିଲି । ପୂଜାଛୁଟି ଉପଲକ୍ଷେ ଜଟଣୀ ଚାଲିଆସୁଥିଲି । ଦିନରାତିର ଅଧିକାଂଶ ସମୟ କଟୁଥିଲା ଅଜାଙ୍କ ପାଖରେ । ଅଜାନାତି ଭିତରେ ବହୁତ ଥଟ୍ଟା ତାମସା ହୁଏ, ହସଖୁସି ହୁଏ, ଶିକ୍ଷାର ଆସର ମଧ୍ୟ ବସେ ।

ତାଙ୍କର ଗୋଟିଏ ଗୁଣ ମତେ ମୁଗ୍ଧ କରିଥିଲା, ତାହା ହେଉଛି ଗର୍ବଅହଂକାର ବିହୀନ-ନିଷ୍କପଟତା । ଅଭିନେତା ଭାବରେ ସେ ଥିଲେ ଓଡ଼ିଶା-ନାଟ୍ୟ-ଜଗତର ଉଜ୍ଜ୍ୱଳ ଭାସ୍କର, ମନୁଷ୍ୟ ଭାବରେ ସେ ଥିଲେ, ସରଳ-ମୁଗ୍ଧ-ଶୀତଳ ଚନ୍ଦ୍ରମା ! ଡ଼ମୁଣେଇ ଠାକୁରାଣୀଙ୍କ ଅତିଥି ଚଟାଣରେ ମସିଣା ପକେଇ ଶୋଉଥିଲେ ଓ ଖାଉଥିଲେ ଠାକୁରାଣୀଙ୍କ ପାଖରେ ରନ୍ଧାଯାଉଥିବା ଅରୁଆନ୍ନ ଓ ଡ଼ାଲମା । ଡ଼ାଲମା ଯଦି ଲୁଣିଆ ବା ଅଲଣା ହୋଇଯାଉଥିଲା ବା କେବେ ସାମାନ୍ୟ ପୋଡ଼ାବାସୁଥିଲା, ସେ ତାହା ଜାଣିପାରୁନଥିଲେ । ଅନ୍ୟମାନେ ପୂଝାରୀ ଭାଇନାଙ୍କ ସହିତ ପାଟିତୁଣ୍ଡ କରନ୍ତି । ମାତ୍ର ଅଜା ନିର୍ବିକାର । ପଚାରିଲେ ବରଂ ଉତ୍ତର ଦିଅନ୍ତି 'କ'ଣ ଖରାପ୍ ଲାଗିଲା କି, କାହିଁ ମୁଁ ବାରି ପାରିଲିନି ତ ! ' ନିଜର ଖାଇବା ଓ ଶୋଇବା ବିଷୟରେ ସେ ଥିଲେ ସଂପୂର୍ଣ୍ଣ ନିସ୍ପୃହ ।

ଖାଲି ଖାଇବା ଶୋଇବା ନୁହେଁ, ସରସ୍ୱତୀଙ୍କ ବରପୁତ୍ର ଭଳି ଲକ୍ଷ୍ମୀଙ୍କ ଆରାଧନାରେ ସେ ଥିଲେ ନିଶ୍ଚେଷ୍ଟ । ଟଙ୍କା ରୋଜଗାର ପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି ବା ଲାଳସା ନଥିଲା । ତାଙ୍କଠାରୁ ଶୁଣିଚି ସେ ମାସିକ ୧୫ ଟଙ୍କା ଦରମାରେ ଥିଏଟରରେ ଯୋଗ ଦେଇଥିଲେ ଏବଂ ଅବସର ନେଲାବେଳକୁ ତାଙ୍କର ଦରମା ଥିଲା ମାସିକ ଦେଢ଼ଶହ ଟଙ୍କା । ଏକଥା କହି ସେ ହସୁଥିଲେ ।

ନିଜର ଶିକ୍ଷା-ଦୀକ୍ଷା ଓ ପରିବାରର ଅଜ୍ଞତା ବିଷୟରେ ଆତ୍ମବ୍ୟଙ୍ଗ କରି ସେ ଗୋଟିଏ ଘଟଣାର ଆବୃତ୍ତି କରୁଥିଲେ । ତାହା ଏହିପରି- ଅଜା ଦିନକ ଲାଗି ଗାଁକୁ ଯିବେ ବୋଲି ଠିକ୍ କରି ଆଳୁ, କୋବି, ଟମାଟ ପ୍ରଭୃତି ଜଣକ ହାତରେ ଗାଁକୁ ପଠାଇ

ଖବର ଦେଲେ, 'ମୁଁ ଯିବି, ରନ୍ଧାବଢ଼ାକରି ରଖିଥିବ ।' ସେ ଗାଁରେ ପହଞ୍ଚି ଯେତେବେଳେ ଖାଇବସିଲେ କୋବି ତରକାରିର ଦେଖା ପାଇଲେନି । ତାଙ୍କ ମା' ପାଖରେ ବସିଥିଲେ । କୋବି ତର୍କାରି କଥା ପଚାରିବାରୁ ମା କହିଲେ, 'ଆରେ ପୁଅ, ସେଥିରେ କୋବି କାହିଁ ? ଖାଲିପତର, ପତରଗୁଡ଼ାକ । ସବୁତକ ଗୋରୁ କୁଣ୍ଡରେ ପକାଇଦେଲି ।' କହିବା ବାହୁଲ୍ୟ ଯେ ବୁଢ଼ୀ ସେ ପର୍ଯ୍ୟନ୍ତ ପତ୍ରକୋବିର ରୂପ ଦେଖିନଥିଲେ । ଏହିପରି ଭାବରେ ସେ ନିଜ ପରିବାରର ଅଜ୍ଞତା ପ୍ରକାଶ କରିବାକୁ କୁଣ୍ଠାବୋଧ କରୁନଥିଲେ ।

ସେହିପରି ଆଉ ଏକ ହାସ୍ୟକର ଘଟଣା । ମୁଁ ସକାଳେ ଅଜାଙ୍କ ପାଖେ ପହଞ୍ଚି ଦେଖିଲି ସେ ନିତ୍ୟକର୍ମ ଶେଷ କରି ନାହାନ୍ତି । ଦାନ୍ତ ଘଷି, ଚା ପିଇ, ବିଡ଼ି ଟାଣି, ଗୁଡ଼ାଖୁ ଘସିଲା ପରେ ଝାଡ଼ା ତଲବ ଦେଉନାହିଁ । ରାତିରେ ଖାଇଥିବା ଅରୁଆଭାତ ଡ଼ାଲମାକୁ ଦୋଷ ଦେଇ ଅଜା ଉଠିଲେ । କହିଲେ 'ନା ବିହିତ ପ୍ରତିକାର କରାଯିବା ଦରକାର' । ମୁଁ କଥାର ମର୍ମ ହଠାତ୍ ବୁଝି ପାରିଲିନି । ସେ ପଚାରିଲେ, 'ବୁଢ଼ା, ତୁ ତଲବ୍ ନାଚ ଦେଖିଛୁ ?' ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ବିଭିନ୍ନ ପ୍ରକାର ଶାସ୍ତ୍ରୀୟ ଓ ଲୋକନୃତ୍ୟ ଦେଖିବାର ସୁବିଧା ବେଳେବେଳେ ପାଇଥାଏ, ମାତ୍ର ତଲବ ନାଚ- ଅଜା କହିଲେ , 'ହଉ, ଆଜି ତତେ ସେଇ ନାଚ ଦେଖାଇବା,' ଏହାକହି, ସେ ଗାମୁଛା ପିନ୍ଧି, ଗୁଡ଼ାଖୁ ମେଞ୍ଚାଏ ଧରି, ଧୀରେ ଧୀରେ ଡେଇଁବାକୁ ଲାଗିଲେ । ତାପରେ ଉଦ୍ଦଣ୍ଡ ବଢ଼ିଲା । ମଝିରେ ମଝିରେ ତାଣ୍ଡବର ଭଙ୍ଗୀ ମଧ ଦେଖିବାକୁ ପାଇଲି । ତା ମଝିରେ ସେ ବେଳେ ବେଳେ ପେଟ ଚାପୁଡ଼େଉଥାନ୍ତି । ନାଚିବା ଭିତରେ କହିଲେ, 'ଏ ନାଚରେ ପେଟର ମାଲ ମଶଲା ଗୁଡ଼ିକ ତଳକୁ ଖସି ଆସିବ ।' ମୁଁ ହସି ହସି ବେଦମ୍ । ମାଷ୍ଟର ମାଣିଆଙ୍କର ସେ ନୃତ୍ୟ ଆଉ କେହି ଦେଖିଥିବେ କି ନାହିଁ ସନ୍ଦେହ । ହଠାତ୍ ନାଚ ବନ୍ଦ କରି ଅଜା କହି ଉଠିଲେ ' ତଲବ୍ ଆସିଗଲାରେ ବୁଢ଼ା ! ସେ ପାଣି ଲୋଟା ଧରି ଏକ ମୁହାଁ ଆମ୍ବତୋଟା ଆଡ଼େ ଧାଇଁଲେ । ଏଇ ହେଉଛନ୍ତି ମାଷ୍ଟର ମାଣିଆ, ଜୀବନର ପ୍ରତି କ୍ଷେତ୍ରରେ ଯିଏ ହସି ଜାଣିଥିଲେ, ହସେଇ ଜାଣିଥିଲେ ଓ ଜୀବନକୁ ଉପଭୋଗ କରି ଜାଣିଥିଲେ । ସେ ଥିଲେ ସତ୍ ଓ ଚିଦାନନ୍ଦ ।

ମୁଁ ଅନ୍ନପୂର୍ଣ୍ଣା ଥିଏଟରରେ ଯୋଗଦେଲା ବେଳକୁ ଅଜା ଅବସର ନେଲେଣି । ତେଣୁ ପେଷାଦାର ରଙ୍ଗମଞ୍ଚରେ ଆମେ ଏକାଠି ଅଭିନୟ କରିବାର ସୁଯୋଗ ପାଇନାହୁଁ । ତେଣୁ ୧୯୬୧ ମସିହାରେ ରବୀନ୍ଦ୍ର ଶତବାର୍ଷିକୀ ଉପଲକ୍ଷେ ଆମେ ଯେତେବେଳେ ବିଶ୍ୱକବିଙ୍କର 'ଶେଷରକ୍ଷା' ନାଟକର ଓଡ଼ିଆ ଅନୁବାଦ କରି ମଞ୍ଚସ୍ଥକଲୁ, ସେତେବେଳେ

ଅନ୍ନପୂର୍ଣ୍ଣା ଥିଏଟରର ଦୁଇଜଣ ଅବସରପ୍ରାପ୍ତ ଶ୍ରେଷ୍ଠକଳାକାରଙ୍କୁ ନିମନ୍ତ୍ରଣ କରିଥିଲୁ । ସେ ଦୁହେଁ ହେଲେ, ମାଷ୍ଟର ମାଣିଆ ଓ କାର୍ତ୍ତିକ କୁମାର ଘୋଷ । ଦୁହେଁ ଆଗ୍ରହର ସହିତ ଆସି ସେହି ନାଟକରେ ଆମ ସହିତ ଅଭିନୟ କରିଥିଲେ । ସେ ନାଟକ ଦେଖିଲା ଭଳି ଓ ମନେରଖିବା ଭଳି ହୋଇଥିଲା । କୋରାପୁଟ ଜିଲ୍ଲାର ଜୟପୁରଠାରେ ସେ ନାଟକ ପ୍ରଥମ ଥର ପାଇଁ ଅଭିନୀତ ହୋଇଥିଲା । ସେଥିରେ ଅଭିନୟ କରୁଥିଲେ ମାଷ୍ଟର ମାଣିଆ, ମାଷ୍ଟର ଘୋଷ, ଦୁର୍ଲ୍ଲଭ ସିଂ, ଦୁଃଖିରାମ ସ୍ୱାଇଁ, ମୁଁ , ଲକ୍ଷ୍ମୀପ୍ରିୟା, ଭାନୁମତୀ ଓ ପୂର୍ଣ୍ଣିମା । ପ୍ରତ୍ୟେକ ଜଣେ ଜଣେ ପ୍ରତିଷ୍ଠିତ କଳାକାର । ତେଣୁ କେହି କାହାରିକୁ ଆଗେଇ ଯିବାକୁ ଦେଉନଥିଲେ । ପ୍ରତ୍ୟେକେ ନିଜ ନିଜ କୃତି ଦେଖାଇବାକୁ ତତ୍ପର । ଆମର ଗୁରୁମାନଙ୍କର ଅଭିନୟ ଦେଖିବାକୁ ଆମେସବୁ ମଞ୍ଚଭିତରେ ଭିଡ଼ ଜମେଇ ରହୁଥିଲୁ । ଅଙ୍କା ଓ କାର୍ତ୍ତିକ ବାବୁଙ୍କର ଅଭିନୟ ଯେ କି ହାସ୍ୟରୋଳସୃଷ୍ଟି କରୁଥିଲା ତାହା ମନେ ରଖିଲା ଭଳି । ଦୁଇଜଣ ନାଟ୍ୟଗୁରୁ ଅଭିନୟର ସୁଯୋଗ ପାଇ ଯେମିତି ମାତି ଉଠିଥିଲେ ! ରଙ୍ଗମଞ୍ଚ ଭିତରେ ଯେପରି ଜୁଆରଛୁଟିଥିଲା ! ରଙ୍ଗମଞ୍ଚରେ ସେଇ ତାଙ୍କର ଶେଷ ଅଭିନୟ ।

ପ୍ରତ୍ୟେକ ବର୍ଷ ରଥଯାତ୍ରା ସମୟରେ ଥିଏଟର ପୁରୀରେ ରହୁଥିଲା ଓ ଅଙ୍କା ମଧ୍ୟ ରଥଯାତ୍ରା ଦେଖିବାକୁ ପୁରୀ ଆସୁଥିଲେ । ତେଣୁ ପ୍ରତିବର୍ଷ ସେହି ସମୟରେ ଦଶ ପନ୍ଦର ଦିନ ଏକାଠି ହେବାର ସୁବିଧା ମିଳୁଥିଲା ।

ବାର୍ଦ୍ଧକ୍ୟ ଅସୁସ୍ଥତା, ପାରିବାରିକ ଅଶାନ୍ତି ଓ ଆର୍ଥିକ ଅନଟନ - ଏସବୁ ଥିଲା ତାଙ୍କ ଶେଷ ଜୀବନର ସହଚର । ତାଙ୍କର କନ୍ୟା ସନ୍ତାନ ଥିଲେ । ଦୁଇଟି ସେ ସେମାନଙ୍କୁ ବିବାହ କରାଇ ଦେଇଥିଲେ । ବଂଶ ରକ୍ଷା କରିବା ପାଇଁ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ ଓ ତାକୁ ମଧ୍ୟ ବିବାହ ଦେଇଥିଲେ । ପୋଷ୍ୟପୁତ୍ରର ତାଙ୍କ ପ୍ରତି ବିଶେଷ ସ୍ନେହ ମମତା ନଥିଲା । ଜଣେ ଦରିଦ୍ର ଗୋପାଳ ଯୁବକ, ଏଭଳି ପ୍ରତିଭାର ମୂଲ୍ୟ ବା କ'ଣ ବୁଝନ୍ତା ? ଗାଁକୁ ଗଲେ ମନ ଖୁସିରେ ମୁଠାଏ ଖାଇବାକୁ ମଧ୍ୟ ପାଉନଥିଲେ । ଯଦି ବା କେତେବେଳେ କେମିତି ମନଖୁସିରେ କିଛି ଖାଇବାକୁ ବସନ୍ତି, ତେବେ ତାଙ୍କ ବୋହୂ ନାତି ନାତୁଣୀଙ୍କୁ ତାଙ୍କ ପାଖକୁ ପଠାଇ ଦେଇ କହୁଥିଲେ, 'ଯାଅ, ଜେଜେଙ୍କ ସାଙ୍ଗରେ ଖାଇବ' । ତେଣୁ ଅଙ୍କା ନିଜେ ଖାଇବେ କ'ଣ, ନିଜର ଆଗ୍ରହକୁ ଚାପି ଦେଇ ନାତି ନାତୁଣୀଙ୍କୁ ସବୁ ଖୁଆଇ ଦେଉଥିଲେ ।

ରୋଜଗାର କ୍ଷମ ଥିଲାବେଳେ ଖାଦ୍ୟ ପ୍ରତି ତାଙ୍କର ଯେଉଁ ଲାଳସା ନଥିଲା, ଅର୍ଥାଭାବ ସମୟରେ ତାହା ଦେଖା ଦେଇଥିଲା । ତେଣୁ ପୁରୀ ଆସିଲେ ତାଙ୍କର

ଖାଇବାର ଆଗ୍ରହ ପୂର୍ଣ୍ଣ ହେଉଥିଲା । ଅନୁଷ୍ଠାନର ଅନ୍ୟତମ ନାୟିକା ପୂର୍ଣ୍ଣିମାକୁ ସେ ଝିଅ ପରି ଭଲ ପାଉଥିଲେ । ପୂର୍ଣ୍ଣିମା ମଧ୍ୟ ତାଙ୍କୁ ଦେଖିଲେ ନିଜର ବାପାଙ୍କୁ ପାଇଲା ପରି ଆଦର କରୁଥିଲା । ଅଜାଙ୍କ ଫରମାସ୍ ମୁତାବକ ଖାଦ୍ୟ ନିଜେ ପ୍ରସ୍ତୁତ କରି ତାଙ୍କୁ ଖୁଆଉଥିଲା । ଦାନ୍ତ ନଥିବା ହେତୁ ସେ ମାଂସ ଖାଇପାରୁନଥିଲେ । ଯଦିଓ ସେଥିପ୍ରତି ତାଙ୍କର ଆଗ୍ରହ ଥିଲା । ତେଣୁ କଲିଜା କିଣି ଆଣି ପୂର୍ଣ୍ଣିମା ତରକାରୀ କରେ । ଅଜା କଲିଜା ତରକାରୀ ବଡ଼ ଆଗ୍ରହରେ ଖାଉଥିଲେ । ମାଛ, ମାଂସ, ଖୀରି, ଖେଚଡ଼ି ଯାହା ତାଙ୍କର ଇଚ୍ଛା ହୁଏ । ପୂର୍ଣ୍ଣିମା ତାହା ରାନ୍ଧି ପ୍ରତିଦିନ ତାଙ୍କୁ ଖୁଆଏ । ଖାଇ ସାରିବା ପରେ ତାଙ୍କର ମୁହଁରେ ଯେ କି ଆନନ୍ଦ ! କି ପରିତୃପ୍ତି !

ଅଜା ଶୋଇଲା ବେଳେ ପୂର୍ଣ୍ଣିମା ତାଙ୍କର ଗୋଡ଼ ଚିପିଦିଏ । ଅଜା ମଧ୍ୟ ପୂର୍ଣ୍ଣିମାର ଭବିଷ୍ୟତ ପାଇଁ ବଡ଼ ଚିନ୍ତା କରୁଥିଲେ । କାରଣ ମଞ୍ଚରାଣୀ ରାଧାରାଣୀଙ୍କର ଓ ମଞ୍ଚ ସମ୍ରାଟ ନିଜର ବାର୍ଦ୍ଧକ୍ୟ ସମୟର ଦୁରବସ୍ଥା ଅନୁଭବ କରି ସେ ଅନେକ ସମୟରେ ପୂର୍ଣ୍ଣିମାକୁ କହନ୍ତି, 'ବୟସ ଖସିଗଲେ ତୁ କେମିତି ଚଳିବୁଲୋ ମା ?' ଅଜାଙ୍କର ଏଇ ବ୍ୟାକୁଳତା ଓ ଦୁଶ୍ଚିନ୍ତା ବୋଧହୁଏ ଜଗନ୍ନାଥ ଶୁଣିଥିଲେ । ତେଣୁ ବୃଦ୍ଧ, ଅବସରପ୍ରାପ୍ତ କଳାକାରର ମର୍ମଦାହ, ଯନ୍ତ୍ରଣା, ଅଭାବ ଓ ଦୁଃଖ ସହ୍ୟ କରିବା ପୂର୍ବରୁ ପୂର୍ଣ୍ଣିମାକୁ ସେ ନେଇଗଲେ ।

ଅଜାଙ୍କର ଅଭାବ ଅସୁବିଧା ସେ ମୋତେ ଏକାକୀ ପାଖରେ ବସେଇ କହୁଥିଲେ । ସେତେବେଳେ ମୋର 'କଳାକାର' ପତ୍ରିକାଟି ପ୍ରକାଶ ପାଉଥାଏ ଓ ତାହା ପାଇଁ 'କଳାକାର ପାଣ୍ଠି' ମଧ୍ୟ ତିଆରି କରାଯାଇଥାଏ । ସହକର୍ମୀଙ୍କ ଅନୁମତି ନେଇ ସେଇ ପାଣ୍ଠିରୁ ଟ ୫୦୦ଙ୍କା ଅଜାଙ୍କୁ ସାହାଯ୍ୟ ଦିଆଯାଇଥିଲା । ପ୍ରତିବର୍ଷ ଗୁରୁପୂର୍ଣ୍ଣିମାରେ ଆମେ ଅଜାଙ୍କୁ ଆମନ୍ତ୍ରଣ କରି ସବୁ କଳାକାରମାନେ ଗୁରୁ ବନ୍ଦନା କରୁଥିଲୁ । ଧୋତି, ପଞ୍ଜାବୀ, ଚାଦର ସହିତ କିଛି ଅର୍ଥ ଗୁରୁଦକ୍ଷିଣା ଭାବରେ ତାଙ୍କୁ ଦେଉଥିଲୁ । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀକୁ ଅନୁରୋଧ କରି ଦୁଃସ୍ଥ କଳାକାର ସାହାଯ୍ୟ ମଧ୍ୟ ତାଙ୍କ ପାଇଁ କରାଇ ଦେଇଥିଲି । ମୁଁ ଏକାଡେମୀର ସାଧାରଣ ସଭ୍ୟ ଓ କାର୍ଯ୍ୟକାରୀ ସମିତିର ସଭ୍ୟ ସମୟରେ ଏଇ ସାହାଯ୍ୟକୁ ବାର୍ଷିକ ଭତ୍ତା ଆକାରରେ ପରିବର୍ତ୍ତିତ କରାଇଥିଲି । ତେଣୁ ଶେଷ ଜୀବନ ପର୍ଯ୍ୟନ୍ତ ଅଜା ମାସିକ ଟ ୧୫୦/ କରି ପାଉଥିଲେ । ସେତେବେଳେ କଳାକାର ପେନ୍‌ସନ୍ ଆରମ୍ଭ ହୋଇନଥାଏ ।

ଅଜାଙ୍କ ପାଇଁ ମୋର ଶେଷ କର୍ତ୍ତବ୍ୟ ହେଲା 'ମମତା' ଚଳଚ୍ଚିତ୍ର । ସେ ଚଳଚ୍ଚିତ୍ରରେ ବୁଢ଼ା ଖଙ୍ଖାରୀ ଭୂମିକାରରେ ଅଭିନୟ କରିବା ପାଇଁ ମୁଁ ମନେମନେ ଅଜାଙ୍କୁ

ଠିକ୍ କରିଥାଏ । ମାତ୍ର ସେତେବେଳକୁ ସେ ଅତି ଦୁର୍ବଳ ହୋଇଗଲେଣି । କିଏ ଜଣେ ଧରିଲେ ସେ ଚାଲୁଛନ୍ତି । 'ମମତା'ର ସୁଟିଂ ହେଉଥାଏ ସାଲେପୁରରେ । ମୁଁ ଚିଠି ସହିତ ଜଣେ ଲୋକକୁ ଗାଡ଼ିରେ ପଠାଇଲି ରେଙ୍ଗଳ । ଅଜାଆସି ପାରିବେନି ବୋଲି ମନରେ ସନ୍ଦେହ ଥାଏ । ଗାଡ଼ି ଅଜାଙ୍କୁ ନେଇ ସନ୍ଧ୍ୟାବେଳକୁ ଫେରିଲା । ମୁଁ ଗାଡ଼ିର ଦ୍ୱାରଖୋଲି ଅଜାଙ୍କ ପାଦଧୂଳି ନେଲି । ସେ ମୋ କାନ୍ଧରେ ହାତରଖି ଗାଡ଼ିରୁ ଓହ୍ଲାଉ ଓହ୍ଲାଉ କହିଲେ 'ହଇରେ ବୁଢ଼ାଟାକୁ ମରଣ ମୁହଁରୁ ପୁଣି ଟାଣି ଆଣିଲୁ ଅଭିନୟ କରିବାକୁ ?' ମୁ କହିଲି, 'ସେ ପାର୍ଟଟି ଲେଖିଲା ବେଳୁ ତମକୁ ମନରେ ରଖି ଲେଖିଛି । ତମେ ନଆସିଥିଲେ ସେ ପାର୍ଟଟା ଅପୂର୍ଣ୍ଣ ରହିଯାଇଥାନ୍ତା ।' ସେ ମୋ କାନ୍ଧରେ ଭରାଦେଇ ଚାଲୁ ଚାଲୁ ପଚାରିଲେ, 'ମୋ ଅବସ୍ଥାତ ଦେଖୁଚୁ । ମୁଁ ପାରିବିଟି ?' ଅଭିନୟର ସଫଳତା ପାଇଁ କେତେ ବ୍ୟାକୁଳ ସେ । ତାଙ୍କୁ ଦମ୍ଭ ଦବାକୁ ଉତ୍ତର ଦେଲି, 'ଯେତେଟା Take ହେବତହେଉ, ତୁମ ଅଭିନୟ ସଫଳ ନହେବା ଯାଏ Shooting ଚାଲୁରହିବ ।'

'ମମତା' ଚିତ୍ରରେ ତାଙ୍କର ଭୂମିକା ଅତିକ୍ଷୁଦ୍ର ହେଲେ ମଧ ଦର୍ଶକ ଭୁଲି ପାରିବେନାହିଁ । ତାଙ୍କର ସେଇ ସଂଳାପ, ''ନାଃ, ଆଜିଠୁ ଥାଉ ଶଂଖା ତିଆରି କରିବିନି ।'' ତାପରେ ଚୁଡ଼ି ଗୋଛାକ ବାଡ଼େଇ ଭାଙ୍ଗିଦେବାର ଦୃଶ୍ୟ ପ୍ରତ୍ୟେକ ହୃଦୟ ତନ୍ତ୍ରୀରେ ଆଘାତ କରିଥିଲା । ସେଇ ସୁଟିଂ ସମୟକଥା ଲେଖୁଛି ।

ସଂଳାପ ବାରମ୍ବାର ପଢ଼ି ଅଜାଙ୍କୁ ଶୁଣାଇ ଦେଇଥାଏ । ସେ ମଧଚୁପ୍ ହୋଇ ବସି ସଂଳପ ଶୁଣୁଥାନ୍ତି ଓ ମନେ ମନେ ମୁଖସ୍ଥ କରୁଥାନ୍ତି । ସେଇ ସଟ୍‌ଟି ନେବାପାଇଁ ସବୁ ବ୍ୟବସ୍ଥା କରି ମୁଁ ଆସି ଅଜାଙ୍କ ବାହୁ ଧରିଲି, 'ଅଜା, ଆସ,ସଟ୍‌ଟା ସାରିଦେବା' । ସେ ଉଠୁ ଉଠୁ ସନ୍ଦେହ ପ୍ରକାଶ କଲେ, 'ମୁଁ ପାରିବିଟି ?' ମୋରକଣ୍ଠରୋଧ ହୋଇ ଆସିଲା । ମଞ୍ଚ ସମ୍ରାଟ ମାଷ୍ଟର ମାଣିଆ ପଚାରୁଛନ୍ତି, 'ମୁଁ ଅଭିନୟ କରି ପାରିବିଟି ?' କି ସରଳ ମନ ? କି ଅନାବିଳ ହୃଦୟ ! ଲକ୍ଷ୍ୟ କଲି ତାଙ୍କର ହାତ ଓ ଆଙ୍ଗୁଠି ସବୁ ଥରୁଚି । ବାର୍ଦ୍ଧକ୍ୟ ଓ ଭଗ୍ନ ସ୍ୱାସ୍ଥ୍ୟ ଯୋଗୁଁ ଉତ୍ତେଜନା ଓ ଭାବ ବିହ୍ୱଳତା ସେ ଆଉ ସହ୍ୟ କରି ପାରୁନାହାନ୍ତି । ତେଣୁ ଆବହାଓ୍ୱାଟ । ବଦଳାଇ ଦବାକୁ ହଠାତ୍ ପାଟି କରି ଉଠିଲି 'ଭାଇଓ, ତାଳି ବଜାଓ ! ମାଷ୍ଟର ମାଣିଆ କ୍ୟାମେରା କେ ସାମ୍‌ନେ ଆଗୟେ ।' କରତାଳି ଧ୍ୱନିରେ ସୁଟିଂ ସ୍ଥାନ କମ୍ପିଉଠିଲା । ମୁଁ ଅଜାଙ୍କୁ କହିଲି, 'ଅଜା ଏଦୃଶ୍ୟଟା ଯଦି ତୁମେ କରିନପାରିବ, ତେବେ ସାରା ଓଡ଼ିଶାରେ ପୁଅ ନାହିଁ ଯାକୁ କରିବାକୁ ।' କରତାଳି ର ଧ୍ୱନି ଓ ମୋର କଥା ତାଙ୍କୁ ବୋଧ ହୁଏ ଉତ୍ସାହିତ କଲା । ତାଙ୍କୁ ସଟ୍‌ଟି

ବୁଝାଇ ଦେଲି । କୋଉଠି ଛିଡ଼ା ହୋଇ ଶେଷ ସଂଳାପ କହିବେ ଓ ଚୁଡ଼ି ଫିଙ୍ଗିବେ ତାହା ଦାଗ ଦେଇ ରଖାଯାଇଥିଲା । ତାହା ଦେଖାଇଦେଲି । ତାଙ୍କ ହାତରେ ଚୁଡ଼ି ଗୋଛାକ ଧରେଇ ଦେଇ, ତାଙ୍କୁ ଏକାଛାଡ଼ି, ମୁଁ ଘୁଞ୍ଚିଆସିଲି ।

ନିର୍ଦ୍ଦେଶନା ଦେବା ପୂର୍ବରୁ ଦୂରରୁ ଅତି ଧିରେ ପଚାରିଲି, 'ଅଜା କ୍ୟାମେରା ଚାଲୁ କରିବି ?' ସେ କିନ୍ତୁ ନୀରବ, ସ୍ଥିର ନିଶ୍ଚଳ ! ମୁଁ ବୁଝି ପାରିଲି ସେ ନିଜର ସମସ୍ତ ଶକ୍ତି, ଭାବନା ଓ ଅନୁଭୂତିକୁ କେନ୍ଦ୍ରୀଭୂତ କରୁଛନ୍ତି । ଯାହାକୁ କହନ୍ତି Concentration । ମୁଁ ସମସ୍ତଙ୍କୁ ନୀରବ ରହିବାକୁ କହି ଅପେକ୍ଷା କରିବାକୁ ଇଙ୍ଗିତ ଦେଲି । ପନ୍ଦର କୋଡ଼ିଏ ସେକେଣ୍ଡ୍ ସଂପୂର୍ଣ୍ଣ ନିରବତା ପରେ ଲକ୍ଷ୍ୟ କରି ସେ relax କଲେ । ମୁଁ ଖୁବ୍ ଆସ୍ତେ କହିଲି 'Start' ସାଉଣ୍ଡ ରେକର୍ଡ଼ର ଓ କ୍ୟାମେରା ଚାଲିବାରେ ଲାଗିଲେ । ସେଇପରି ଅତିକ୍ଷୀଣ ସ୍ୱରରେ କହିଲି । 'ଅଜା action ତାପରେ ! ତାପରେ ମାଷ୍ଟର ମାଣିଆ ଯାହା କଲେ ତାହା ସେଠାରେ ଉପସ୍ଥିତ ଥିବା ଜନତା ଦେଖିଥିଲେ । ପରେ ଚଳଚ୍ଚିତ୍ର ମାଧ୍ୟମରେ ସାରା ଓଡ଼ିଶାର ଦେଖଣାହାରୀ ମଧ୍ୟ ଦେଖିଥିଲେ । ବୁଢ଼ା ହୋଇଗଲେ ମଧ୍ୟ ବାଘ ସବୁଦିନେ ବାଘ ହୋଇଥାଏ ।

ସେ ସମୟରେ ମୁଁ କିନ୍ତୁ ଟିପ ଆଗରେ ଛିଡ଼ା ହୋଇଥାଏ । କଟ୍ ବୋଲି ଚିତ୍କାର କରୁ କରୁ ମୁଁ ଦୌଡ଼ିଯାଇ ଅଜାଙ୍କୁ ଧରିନେଲି । ଆଗରୁ ଏଥିପାଇଁ ମୁଁ ପ୍ରସ୍ତୁତ ଥିଲି । ଅଜା ଏଇ ଆବେଗମୟ ଦୃଶ୍ୟକୁ ନିଶ୍ଚୟ ସହ୍ୟ କରି ପାରିବେନି, ଏହା ମୁଁ ପୂର୍ବରୁ ସନ୍ଦେହ କରିଥିଲି । ସେ ଚୁଡ଼ି ଗୋଛାକ ଫିଙ୍ଗି ଦେଇ ଟଳମଳ ହୋଇ ପଡ଼ିଯାଇଥିଲେ । ମୁଁ ଠିକ୍ ସମୟରେ ତାଙ୍କୁ ଦୁଇ ବାହୁ ଭିତରେ ଧରି ନେଲି । ସେ ମଧ୍ୟ ଅସହାୟ, ଦୁର୍ବଳ, ଶିଶୁଟି ପରି ମୋ ଛାତିରେ ଚିପି ହୋଇ ରହିଲେ । ସେତେବେଳକୁ ଦୁହେଁ କାନ୍ଦୁ ଥାଉ । ସେ ଅଭିନୟର ଆବେଗ ଚାପିନପାରି କାନ୍ଦୁଥାନ୍ତି । ଆଉ ମୁଁ କାନ୍ଦୁଥାଏ ଆନନ୍ଦରେ, ଗର୍ବରେ । ମୋର ବନ୍ଦନୀୟ ଗୁରୁଙ୍କୁ ମୁଁ ଆହୁରି ଗୌରବ ମଣ୍ଡିତ କରିପାରିଚି ବୋଲି । ତିନି ଚାରି ମିନିଟ ତାଙ୍କୁ ସେହିପରି ଧରି ରଖିଲି । ଅନୁଭବ କଲି ତାଙ୍କର ମାଂସପେଶୀ ସବୁ ଢ଼ିଲା ହେବାକୁ ଆରମ୍ଭ କଲା । ଆସ୍ତେ ପଚାରିଲି 'ଅଜା ଯିବା ?' ସେ ହଁ କଲେ । ତାଙ୍କୁ ଧରି ଧରି ନେଇ ବାରଣ୍ଡାରେ ବସାଇଦେଲି । ପାଣି ଓ ଚା ପାଇଁ ବରାଦ ଦେଇ ମୁଁ ମଧ୍ୟ ତାଙ୍କ ପାଖରେ ବସି ପଡ଼ିଲି । ସେ କାନ୍ଥକୁ ଆଉଜି ବସିଲେ, ପଚାରିଲେ, 'ବୁଢ଼ା, ହେଲା କିରେ' ?

ମୁଁ ବିହ୍ୱଳ ହୋଇଗଲି ! କି ଉତ୍ତର ମୁଁ ତାଙ୍କୁ ଦେବି ! ଓଡ଼ିଶାର ଶ୍ରେଷ୍ଠ ଅଭିନେତା ମୋ ପରି ଜଣେ ଅଯୋଗ୍ୟ-ଅଧମ-ଶିଷ୍ୟକୁ ପଚାରୁଛନ୍ତି । ତାଙ୍କ ଅଭିନୟ

ଠିକ୍ ହେଲା କି ନାହିଁ, ମନ୍ତବ୍ୟ ପ୍ରକାଶ କରିବାକୁ ! ତାଙ୍କୁ ଚାହିଁ ରହିଲି । ଆଖି ମୋର ଲୁହରେ ଭରି ଆସିଲା । ତାଙ୍କର କ୍ଳାନ୍ତ, ଦରବୁଜା ଆଖିପତା ତଳୁ ସେଇ ରକ୍ତିମ ଢ଼ୋଳା ଦୁଇଟି ମୋ ଅଖିକୁ ଚାହିଁ ରହିଥାଏ । ମୁଁ ଆବେଗକୁ ଦମନ କରି ପଚାରିଲି । 'ତୁମେ ନିଜେ ସନ୍ତୁଷ୍ଟ ହୋଇଚ ତ?' ସେ ଉତ୍ତରଦେଲେ 'କେଜାଣି, କଣ କଲି ଜାଣି ପାରିଲିନି । ପିଲ୍ମରେ ଅଭିନୟ କଲେ ଏଇ ଅସୁବିଧାଟା ମୁଁ ସବୁବେଳେ ଅନୁଭବ କରେ । ଏ ସଟ୍‌ଟା ଆଉ ଥରେ ନବୁ ? ' ମୁଁ ଉତ୍ତର ଦେଲି, 'ଥରେ କଣ, ତୁମେ ସନ୍ତୁଷ୍ଟ ହେବାଯାଏ ଯେତେଥର କହିବ ସେତେଥର ସଟ୍‌ନେବି । ହେଲେ ତୁମେ ପାରିବତ ?' ସେ ଉଠିବାକୁ ଚେଷ୍ଟାକରୁ କରୁ କହିଲେ, 'ଚାଲ, ଦେଖିବା ଆଉଥରେ ନେ' ଉଠିବାରେ ବାଧା ଦେଇ ମୁଁ କହିଲି, 'ଆଗେ ପାଣି ପିଅ, ଚା ଖାଅ, ସିଗାରେଟ୍ ଟାଣ । ଆରାମ ଲାଗିଲେ କହିବ ପୁଣି ସଟ୍ ନବା' । ପରେ ଆଉଥରେ ସେ ସଟ୍ ନେଲି ।

ଏଇ ହେଉଛନ୍ତି ମାଷ୍ଟର ମାଣିଆ । ବାଲ୍ୟକାଳରୁ ନୃତ୍ୟ-ଗୀତ-ଅଭିନୟ କରି, କଳା ଯାହାଙ୍କର ଅସ୍ଥିମଜ୍ଜାଗତ, ବାର୍ଦ୍ଧକ୍ୟ ଓ ଅସୁସ୍ଥତାରେ ଭାଙ୍ଗି ପଡ଼ିଲେ ମଧ ଅଭିନୟର ସଫଳତା ପାଇଁ ସେ କେତେ ବ୍ୟାକୁଳ ! ଅନେକ ପ୍ରବୀଣ ବୃଦ୍ଧ ଅଭିନେତାଙ୍କୁ ଦେଖିଛି, ଯେଉଁମାନେ ଗର୍ବ ଓ ଅହଂଙ୍କାରରେ ସ୍ଫୀତ ହୋଇ କହନ୍ତି, 'ଆରେ ଆମେ ଛିଡ଼ା ହୋଇ ଯାହା କହି ଦେଲେ ବି ସିଏ 'କଳା' ହୋଇଯାଏ, ଅଭିନୟ ହୋଇଯାଏ ।' ମାଷ୍ଟର ମାଣିଆ କିନ୍ତୁ ଏମାନଙ୍କ ଭଳି ଅହଂଙ୍କାରୀ ନଥିଲେ । ତାଙ୍କ ଅଭିନୟରେ ସେ ନିଜେ ସନ୍ତୁଷ୍ଟ ହେଉନଥିଲେ । ସାନମାନଙ୍କୁ ମଧ ପଚାରି ବୁଝୁଥିଲେ । ସେମାନଙ୍କ ମନକୁ ପାଇଲାକି ନାହିଁ । ଏଇ ହେଉଛନ୍ତି ପ୍ରକୃତ କଳାକାର ।

ବାଲେଶ୍ୱର ଜିଲ୍ଲାର ଖଇରାରେ ଅନ୍ନପୂର୍ଣ୍ଣା ଥିଏଟର ଥାଏ, ହଠାତ୍ ଖବର କାଗଜରେ ଦେଖିଲି ତିରୋଧାନର ସମ୍ବାଦ ପ୍ରକାଶ ପାଇଛି । ଥିଏଟର୍‌ର ସବୁ କର୍ମଚାରୀ ଓ କଳାକାରଙ୍କ ମୁହଁରେ ବିଷାଦର ଛାୟା ଢ଼ାଙ୍କି ଗଲା । ସମସ୍ତେ ସମବେତ ହୋଇ ନୀରବ ପ୍ରାର୍ଥନା କଲୁ ଓ ସେହି ରାତିଟି ଅଭିନୟ ବନ୍ଦ ରଖିଲୁ । ତାଙ୍କ ଦଶାହ ଦିନ ସକାଳୁ ପୋଖରୀରେ ଗାଧୋଇ ଓଦା ଲୁଗାରେ ତିଳ ତର୍ପଣ କଲି । ଆକାଶକୁ ଚାହିଁ ତାଙ୍କ ଆତ୍ମା ଉଦ୍ଦେଶ୍ୟରେ ତିଳାଞ୍ଜଳି ଦେଲାବେଳେ ମୋ ଅଖି ଆଗରେ ଭାସି ଉଠିଲା, ସେଇ ଦୃଶ୍ୟ- ଯାହା ମୁଁ ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ଭୁଲିବି ନାହିଁ- ସେ ଜ୍ୱଳନ୍ତ ଆଖି ଦୁଇଟି !



# ଏକ ସାର୍ଥକ ଜୀବନ

*ଦୁର୍ଲ୍ଲଭ ଚନ୍ଦ୍ର ସିଂହ*

ମାଷ୍ଟର ରାମଚନ୍ଦ୍ର ମାଣିଆଙ୍କୁ ୧୯୩୨ ମସିହାରୁ ମୁଁ ଜାଣିଛି । ମୋର ଯାହା ଧାରଣା, ପ୍ରକୃତରେ ମାଷ୍ଟର ବୋଲି କହିଲେ ଯାହା ବୁଝାଏ, ସେ ସମସ୍ତ ଗୁଣର ଅଧିକାରୀ ଥିଲେ ସେ । ଏକାଧାରରେ ଉଚ୍ଚକୋଟୀର ଅଭିନେତା, ନୃତ୍ୟବିତ୍, ସଙ୍ଗୀତଜ୍ଞ ଏବଂ ହାରମୋନିୟମ୍, କ୍ଲାରିଓନେଟ, ତବଲା, ପଖାଉଜ ଓ ମୃଦଙ୍ଗ ପ୍ରଭୃତି ବାଦ୍ୟଯନ୍ତ୍ର ବଜାଇବାରେ ତାଙ୍କର ପଟୁତା ଥିଲା । ଏସବୁ ବେଶ ଭଲଭାବରେ ବଜାଇ ମଞ୍ଚ ପରିଚାଳନା କରିବା, ନାଟକ ଶିକ୍ଷା ଦେବା ଓ ପରିଚାଳନା କରିବା ଇତ୍ୟାଦି ଅନେକ ଗୁଡ଼ିଏ ଗୁଣର ଅଧିକାରୀ ଥିଲେ ସେ । ତେଣୁ ତାଙ୍କ ପ୍ରତି ମାଷ୍ଟର ପଦବୀ ପ୍ରଦାନ ଯଥାର୍ଥରେ ସାର୍ଥକ ହୋଇ ଉଠିଥିଲା ବୋଲି ମୋର ମତ ।

୧୯୩୨ ମସିହାରେ ମୁଁ ଯେତେବେଳେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ରାସଦଳରେ ଅଭିନୟ କରୁଥିଲି, ସେତେବେଳେ ମାଷ୍ଟର ମାଣିଆ ତତ୍କାଳୀନ 'ବନମାଳୀ ଅର୍ଟ ଥିଏଟର୍'ରେ କାର୍ଯ୍ୟ କରୁଥିଲେ । ସେହି ସମୟରୁ ପିଲା ବୟସରୁ ଗୋଟିଏ ଘଟଣାରେ ତାଙ୍କ ସହିତ ମୋର ପରିଚୟ ହୁଏ । କାଳୀବାବୁଙ୍କ ଅନୁରୋଧରେ ତାଙ୍କ ନାଟକରେ ଗୋଟିଏ ଗୀତରଅଭିନୟ ଓ ତହିଁ ସଙ୍ଗେ ନୃତ୍ୟ ମୋତେ ମାଷ୍ଟର ମାଣିଆ ଶିଖାଇ ଦେଇଥିଲେ । ଏହି ବନମାଳୀ ଆର୍ଟ ଥିଏଟର୍ ପୂର୍ବରୁ, ମୁଁ ଶୁଣିବାରେ ସେ ବଳଙ୍ଗା ବନମାଳୀ ପତିଙ୍କର 'ରାଧାକୃଷ୍ଣ ଥିଏଟର୍ ' ରେ କାର୍ଯ୍ୟ କରୁଥିଲେ । ତାଙ୍କର କଳାକାର ଜୀବନର ମୂଳଦୁଆ 'ଗୋଟିପୁଅ' ନାଚରୁ ଆରମ୍ଭ ହୋଇଥିଲା । ବନମାଳୀ ଆର୍ଟ ଥିଏଟର୍ ଭାଙ୍ଗି ଯିବା ପରେ ମୁଁ ପୁଣି ତାଙ୍କୁ ଦେଖିବାକୁ ପାଇଲି ଦଶବର୍ଷ ପରେ ୧୯୪୨ ମସିହାରେ କଟକ କେପିଟେଲ ସିନେମା ଚାଳଘର ମଞ୍ଚରେ 'ଅନ୍ନପୂର୍ଣ୍ଣା ଥିଏଟର' ର ମୁଖ୍ୟ ଅଭିନେତା ଓ ନିର୍ଦ୍ଦେଶକ ରୂପରେ । ଅନ୍ୟାନ୍ୟ ନାଟକ ଭୂମିକା ମଧ୍ୟରୁ 'ମହାପଥର ଯାତ୍ରୀ' ନାଟକର ଜମିଦାର ଭୂମିକାରେ ତାଙ୍କର ଗାମ୍ଭିର୍ଯ୍ୟ ପୂର୍ଣ୍ଣ ବଳିଷ୍ଠ ଅଭିନୟ ମୋତେ ମୁଗ୍ଧ କରିଥିଲା । ତାପରେ ପୁଣି ଦଶ ବର୍ଷପରେ ଅର୍ଥାତ୍ ୧୯୫୩ ମସିହାରେ ମୁଁ ଯେତେବେଳେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ଛାଡ଼ି ଆସି ଅନ୍ନପୂର୍ଣ୍ଣା ଥିଏଟର୍ 'ଏ' ଗ୍ରୁପରେ ନିର୍ଦ୍ଦେଶକ ରୂପେ ଯୋଗଦେଲି, ସେତେବେଳେ ତାଙ୍କ ସହିତ ମିଶି ବହୁ ନାଟକରେ ଅଭିନୟ କରିବାର ସୁଯୋଗ ମୋତେ ମିଳିଥିଲା । ଆହୁରି ମଧ୍ୟ ମୋ ଦ୍ୱାରା ନିର୍ଦ୍ଦେଶିତ କେତେ ଗୁଡ଼ିଏ ନାଟକରେ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ

ଅଭିନୟକରି ନାଟକ ଗୁଡ଼ିକର ମାନବୃଦ୍ଧି କରିଥିଲେ । 'ଘରସଂସାର', 'ପହିଲିରଜ', 'ମାଣିକ ଯୋଡ଼ି', 'ଭାଇ ଭାଉଜ' ଓ ବୈରାଗୀ ର ସଂସାର' ପରି ନାଟକଗୁଡ଼ିକରେ ଅନ୍ୟ କଳାକାରମାନଙ୍କ ସହିତ ତାଳଦେଇ ମୁଖ୍ୟ ଭୂମିକାମାନଙ୍କରେ ଅଭିନୟ କରି ଶୀର୍ଷସ୍ଥାନ ଅଧିକାର କରିଥିଲେ । ମୁଁ ତାଙ୍କ ପୁତ୍ର ପ୍ରତିମ । ତାଙ୍କ ଭଳି ଜଣେ ଏତେ ଗୁଣର ଅଧିକାରୀ ବର୍ଷୀୟାନ କଳାକାରର ବଡ଼ିମାପଣ ବା ଅମ୍ଭ ଅଭିମାନ ବୋଲି କିଛି ତାଙ୍କଠାରେ ନଥିଲା । ନାଟକର ଗୋଟିଏ ଗୋଟିଏ ଦୃଶ୍ୟରେ ଅଭିନୟ କରି ଆସି, ସେ ମୋତେ ପଚାରନ୍ତି 'ହଇରେ ପୁଅ ହେଲା ? ଆଉ କ'ଣ ହବ କହି ଦଉନୁ ମୁଁ ତ ଜାଣିପାରୁନାହିଁ' । ମୋତେ ଲଜ୍ଜା ଲାଗେ ଏ କଥା ଶୁଣି । ତାଙ୍କର ଉଦାର, ସରଳ ଓ ଅମାୟିକ ପ୍ରକୃତିରେ ସେ ସମସ୍ତଙ୍କୁ କିଣିନେଇଥିଲେ । ତାଙ୍କର ସ୍ୱଭାବ ବ୍ୟଙ୍ଗ୍ୟାତ୍ମକ ସରଳକଥା ଓ ସର୍ବଦା ଲାଗି ରହିଥିବା ତାଙ୍କ ମୁହଁର ସେ ମିଠାହସ ତାଙ୍କ ଛାତ୍ରଛାତ୍ରୀ ଓ ସହକର୍ମୀ କଳାକାରଙ୍କ ହୃଦୟରେ ଆଙ୍କି ହୋଇ ରହିଛି । ରାଗ ନାହିଁ, ଅଭିମାନ ନାହିଁ ଅଥଚ ଅନୁଷ୍ଠାନର ନିୟମ ଶୃଙ୍ଖଳାକୁ ଦୃଢ଼ ଭାବରେ ପାଳନ କରି ସମୟ ଅନୁଯାୟୀ କାମ କରିଯିବା ତାଙ୍କର ବିଶେଷ ଗୁଣ ଥିଲା । ଶେଷ ଜୀବନ ପର୍ଯ୍ୟନ୍ତ ସର୍ବଗୁଣ ସମ୍ପନ୍ନ ଏହିଭଳି ଜଣେ ସଚ୍ଚା କଳାକାରର ଆଦର୍ଶର ଦୃଷ୍ଟାନ୍ତ ଆଜି ବିରଳ ।



# ତାଙ୍କୁ ମୁଁ ଯେତିକି ଜାଣିଥିଲି

*ଗୋପାଳ ଘୋଷ*

ପିଲା ଦିନରୁ ନାଟ, ତାମସା, ସଙ୍ଗୀତ, ଯାତ୍ରା ଦେଖିବା ପାଇଁ ମୋର ପ୍ରବଳ ଆଗ୍ରହ ଥିଲା । ମାତ୍ର ରକ୍ଷଣଶୀଳତାର ଚରମ ଯୁଗରେ ମୋ ବୟସରେ ଉପରୋକ୍ତ ସଉକ ମେଣ୍ଟାଇବାକୁ ସୁଯୋଗ ମିଳୁନଥିଲା । ଅନୁମତି ବିନା କୌଣସି ସ୍ଥାନକୁ ଯିବା ଅସମ୍ଭବ ଥିଲା । ପ୍ରାୟ ୬୦/୭୦ ବର୍ଷ ପୂର୍ବେ ମନୋରଞ୍ଜନ ପାଇଁ କେବଳ ଉପରୋକ୍ତ ମାଧ୍ୟମ ହିଁ ପ୍ରଚଳିତ ଥିଲା । ରାତ୍ରିର ମଧ୍ୟ ଭାଗରେ ଏଗୁଡ଼ିକ ଅନୁଷ୍ଠିତ ହୁଏ । ସେ ସମୟରେ ମୋର ଦାଦା (କାକା) ବିମଳ ଘୋଷ ଓ ମୋର ସମ୍ପର୍କୀୟ ଭିଣୋଇ (ଖଗେନ୍ ମିତ୍ର) କଟକ କଲେକ୍ଟୋରେଟ୍‌ରେ କିରାନୀ ଥିଲେ । ଏମାନେ, ଯାହାକୁ ସେତେବେଳେ 'ନାଟୁଆ' କୁହା ଯାଉଥିଲା, ତାହା ଥିଲେ । ସୌଖୀନ ନାଟକଳା ପ୍ରତି ଉଭୟଙ୍କର ପ୍ରଭୂତ ଆକର୍ଷଣ ଥିବାରୁ ମୁଁ ସେଥିରେ ପ୍ରଭାବିତ ହୋଇଥିଲି । ଅଶ୍ୱନୀ କୁମାର ଘୋଷ, କାର୍ତ୍ତିକ ଘୋଷ ଓ ଗୌରଶଙ୍କର ରାୟ ମୋର ସଂପର୍କୀୟ ଥିଲେ । ଏଣୁ ପିଲାଦିନରୁ ସୌଖୀନ ନାଟକ ଦେଖିବାର ଓ ସେଥିରେ ଭାଗ ନେବାର ସୁଯୋଗ ମୁଁ ପାଇଥିଲି । ଆମରି ସାହିରେ ରହିଥିଲେ ଗୋଟିଏ ଅମାପ ଧନ ସମ୍ପତ୍ତି ଏବଂ ଉଚ୍ଚ ଶିକ୍ଷିତ ପରିବାରର ବ୍ୟକ୍ତି ଯଜ୍ଞେଶ୍ୱର ଚନ୍ଦ୍ର । ତାଙ୍କ ଘର ବର୍ତ୍ତମାନ କଟକର 'ଚନ୍ଦ୍ର ହାଉସ୍' ଜରାଜୀର୍ଣ୍ଣ ଅବସ୍ଥାରେ ରହିଛି । ତାଙ୍କର ବଡ଼ ପୁଅ ଡାକ୍ତର ସର୍ବେଶ୍ୱର ଚନ୍ଦ୍ରଙ୍କୁ ସମସ୍ତେ ଡାକୁଥିଲେ ପାଗଲ ବାବୁ, କାରଣ ସତେ ଯେପରି ନାଟକ ହିଁ ତାଙ୍କର ଜୀବନ ଥିଲା । ନାଚ ତାମସା ପ୍ରତି ତାଙ୍କର ବିଶେଷ ଆଗ୍ରହ ଥିବାରୁ ସୌଖୀନ୍ ନାଟ୍ୟସଂସ୍ଥାମାନଙ୍କୁ ସେ ସବୁ ପ୍ରକାରର ସାହାଯ୍ୟ କରୁଥିଲେ । ସେ ସମୟରେ କାଜିବଜାରରେ ଥିବା ବାସନ୍ତି ପେଣ୍ଡାଲ ହିଁ ଏକମାତ୍ର ରଙ୍ଗମଞ୍ଚ ଥିଲା । ବନମାଳୀ ବାବୁଙ୍କର ବଙ୍ଗଳା ନାଟ୍ୟସଂସ୍ଥା 'ବାସନ୍ତି' ପେଣ୍ଡାଲରେ ଅଭିନୟ କରୁଥାନ୍ତି । ବିମଳ ଘୋଷ, ଖଗେନ୍ ମିତ୍ର ଓ କାର୍ତ୍ତିକ ଘୋଷଙ୍କ ସାଥିରେ ଏଇ ନାଟ୍ୟସଂସ୍ଥା ସଂସ୍ପର୍ଶରେ ଆସିବା ମୋ ପକ୍ଷରେ ଥିଲା ଏକ ସୁବର୍ଣ୍ଣ ସୁଯୋଗ । ସେତେବେଳେ ରାମଚନ୍ଦ୍ର ମାଣିଆ ବଙ୍ଗଳା ଥିଏଟର୍‌ର ଯୁବ କଳାକାର ଥିଲେ । ଉପରୋକ୍ତ ତିନି କଳାକାରଙ୍କ ସହିତ ତାଙ୍କର ଅତି ଘନିଷ୍ଠ ସମ୍ପର୍କ ଥାଏ । ତେଣୁ ମୋତେ ସେ ନିଜ ପୁଅଭଳି ବ୍ୟବହାର କରୁଥିଲେ । ସମସ୍ତଙ୍କୁ ସମସ୍ତେ ନାମଧରି ଡକାଡକି ହେଉଥିବା ବେଳେ ମୋତେ ସେ ପ୍ରଥମରୁ 'ଗୋପାଳ ବାବୁ' ବୋଲି

ସମ୍ବୋଧନ କରୁଥିଲେ ଏବଂ ବେଳେବେଳେ 'ବାବୁ' ବୋଲି ଡାକୁ ଥିଲେ । ଯେଉଁଦିନ ନାଟକ ନଥାଏ, ସେଦିନ 'ପୂର୍ବାଭାସ' ବା ରିହରସଲ୍ ହୁଏ । ରାମବାବୁ ନାଚ, ଗୀତ, ଅଭିନୟ ସବୁ ଶିଖାନ୍ତି । ମୁଁ ନିଜେ ଦେଖିଛି ଏବଂ ଆଶ୍ଚର୍ଯ୍ୟ ମଧ୍ୟ ହୋଇଛି, ସେ ହାରମୋନିଅମ ବଜାନ୍ତି, ତାବଲ ବଜାନ୍ତି, ସର୍ବୋପରି ସେ 'ପଖୁଜ' ବଜାଇ ନାଚର ତାଳ ଶିଖାନ୍ତି । ତେଣୁ ତାଙ୍କୁ ସମସ୍ତେ 'ମାଷ୍ଟର ମାଣିଆ' ବୋଲି ଆଦରରେ ଡାକୁଥିଲେ । ପ୍ରକୃତରେ ସେ ମାଷ୍ଟର ଥିଲେ । ଏତ ହେଲା ୧୯୩୦ ଠାରୁ ୧୯୪୭-୪୮ର କଥା । ଇତି ମଧ୍ୟରେ ଆର୍ଟଥିଏଟର୍ ଓ ଅନ୍ନପୂର୍ଣ୍ଣା ଥିଏଟର୍ ପ୍ରତିଷ୍ଠିତ ହେଲେ ମଧ୍ୟ ପୂର୍ବ ଖ୍ୟାତି ସଂପନ୍ନ ବଳଙ୍ଗା ଥିଏଟର୍‌ର ସେହି ଯୁବ କଳାକାରମାନେ ମଧ୍ୟମ ବୟସ୍କ ହୋଇ ଯାଇଥାଆନ୍ତି । ନବ ଗଠିତ ରଙ୍ଗମଞ୍ଚରେ ସେମାନେ ବିଶେଷ ଖ୍ୟାତି ଅର୍ଜନ କରୁଥିଲେ । ମୋର ସୌଭାଗ୍ୟ ଯେ, ଓଡ଼ିଆ ଚଳଚ୍ଚିତ୍ର 'ଶ୍ରୀଜଗନ୍ନାଥ'ରେ ମୁଁ ବିଦ୍ୟାପତି ପାଇଁ ମନୋନୀତ ହୋବା ବେଳେ ମାଷ୍ଟର ମାଣିଆ 'ବିଶ୍ୱାବସୁ' ଚରିତ୍ର ପାଇଁ ମନୋନୀତ ହୋଇଥିଲେ । ତେଣୁ ଆମେ ଏକାଠି କାମ କରିବାର ପୁଣି ସୁଯୋଗ ପାଇଥିଲୁ । ରାମବାବୁଙ୍କୁ ମୁଁ 'ମାଷ୍ଟ୍ରେ' ବୋଲି ସମ୍ବୋଧନ କରୁଥିଲି । ପ୍ରଚଣ୍ଡ ସ୍ୱାଭିମାନୀ ଲୋକ ଥିଲେ ସେ । ଏହି ଚଳଚ୍ଚିତ୍ରର ପ୍ରାୟ ୫୦ ଭାଗ ବର୍ହିଦୃଶ୍ୟ ଥାଏ । ଏଣୁ ତାଙ୍କ ସହିତ ବହୁଦିନ ଧରି କାମ କରିବା ପାଇଁ ମୋତେ ସୁଯୋଗ ମିଳିଥିଲା ।

ମାଷ୍ଟର ମାଣିଆଙ୍କ ସମ୍ପର୍କରେ ଟିକେ କହି ଏଇ ଲେଖା ଶେଷ କରୁଛି । ପ୍ରତି ଦିନ ସକାଳୁ ନିତ୍ୟକର୍ମ ପରେ ମାଷ୍ଟ୍ରେ ଅନ୍ୟ ଲୋକ ହୋଇଯାଆନ୍ତି । ଅଳ୍ପ କଥା କହନ୍ତି । ସବୁବେଳେ ଚିନ୍ତା ମଗ୍ନ । ସନ୍ଧ୍ୟା ପର୍ଯ୍ୟନ୍ତ ସୁଟିଂରେ ସେ କେବଳ ତାଙ୍କର ଚରିତ୍ର କଥା ହିଁ ଭାବନ୍ତି । କାହାକୁ କୌଣସି କଥା କୁହନ୍ତି ନାହିଁ । କିନ୍ତୁ ସନ୍ଧ୍ୟା ବେଳକୁ କାମ ବନ୍ଦ । ରାମବାବୁ ନିତ୍ୟକର୍ମ ସାରି ଅତି ସରୁ ସୁତାର ଧୋତିଟିଏ, ପଞ୍ଜାବୀ ଓ ସୌଖୀନିଆ ଯୋତା ପିନ୍ଧି ଅନ୍ୟ ଲୋକ ହୋଇଯାଆନ୍ତି । ପ୍ରତ୍ୟେକ ଦିନ ମୋତେ ଡାକନ୍ତି "ବାବୁରେ, ଚାଲ ଟିକିଏ ବୁଲି ଆସିବା" । ମୁଁ ଯାଏ, କିନ୍ତୁ ସେତେବେଳେ ସେ ନାଟକ ଦୁନିଆ ବାହାରର କେତେ ଆଧ୍ୟାତ୍ମିକ କଥା, କେତେ ପରିବେଶ ଉପରେ ଚର୍ଚ୍ଚା ସେ କରନ୍ତି ତାହାର କଳନା ନାହିଁ । ସେହି ପରିବେଶ ବର୍ଣ୍ଣନା ମଧ୍ୟରେ ମୋର ଚରିତ୍ର ଚିତ୍ରଣ କିପରି କରିବାକୁ ହେବ ତାହା ମଧ୍ୟ ବୁଝାଇ ଦିଅନ୍ତି, କଥା ଛଳରେ । ତାଙ୍କର ଜ୍ଞାନ-ଗରିମା ଓ ପ୍ରକୃତି ଉପଲବ୍ଧି ପ୍ରକାଶ କରିବାକୁ ମୁଁ ଭାଷା ପାଉନାହିଁ । ସେ ମୋର ମାଷ୍ଟ୍ରେ । ସତକୁ ସତକୁ ମୋର ମାଷ୍ଟ୍ରେ, ଯାହାଙ୍କୁ ମୁଁ ଏଯାଏ ଭୁଲି ନାହିଁ

ବା ଭୂଲି ପାରିବି ନାହିଁ । କି ପ୍ରକାର ଅଦ୍‌ଭୁତ ଚରିତ୍ରର ସଂଯୋଗ ! ମାଷ୍ଟର ମାଣିଆ ଗୋଟିଏ ନାମ, ମାତ୍ର ବର୍ତ୍ତମାନ କେହି ମନେ ପକାନ୍ତି ନାହିଁ, କେହି ଜାଣନ୍ତି ନାହିଁ, କୌଣସି ସମ୍ମାନରେ ସେ ସମ୍ମାନିତ ହୋଇ ନାହାଁନ୍ତି କିମ୍ବା ସେ ଚାହିଁ ନାହାଁନ୍ତି । ତେଣୁ ମୋର ଅନୁରୋଧ ଯେ ତାଙ୍କର ସମାଧି କ୍ଷେତ୍ରରେ ଗୋଟିଏ ନାମ ଫଳକ ଓ ତା ପାର୍ଶ୍ୱରେ ଗୋଟିଏ ବଉଳ ବା ଗଙ୍ଗଶିଉଳି ଗଛ ଯଦି ଲଗାଯାଏ ତେବେ ତାଙ୍କର ସେଇ ଫଳକ ଉପରେ ନିଜେ ନିଜେ ଝରି ପଡୁଥିବା ଫୁଲଗୁଡ଼ିକ ତାଙ୍କର ଅମ୍ଳାନ ସ୍ମୃତିକୁ ମହକାଉଥିବ ଓ ଆତ୍ମାର ସଦ୍‌ଗତି କାମନା କରୁଥିବା । କେହି ଚିହ୍ନିବାର କିମ୍ବା ଜାଣିବାର ଦରକାର ପଡ଼ିବ ନାହିଁ । ଏହାହିଁ ମୋର ଅନ୍ତରର କାମନା ।





# ସମ୍ପୂର୍ଣ୍ଣ ଅଭିନେତା

*ଶରତ୍ ଚନ୍ଦ୍ର ପୂଜାରୀ*

ଭାଷା ଭିତ୍ତିକ ପ୍ରଦେଶ ଗଠନ ଯେଉଁ ବ୍ୟକ୍ତିମାନଙ୍କ ଅକ୍ଳାନ୍ତ ପରିଶ୍ରମ ଓ ତ୍ୟାଗ ଫଳରେ ସଫଳ ହୋଇ ପାରିଛି ସେମାନଙ୍କୁ ଆଜିର ଓଡ଼ିଶା କ'ଣ ସ୍ମରଣ କରିବା ଉଚିତ୍ ନୁହେଁ ? ବିଂଶ ଶତାବ୍ଦୀର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଦଶକରେ ରାଜନୈତିକ ବ୍ୟକ୍ତିମାନଙ୍କ ବ୍ୟତୀତ ଓଡ଼ିଶା ସଂସ୍କୃତିର ପ୍ରସାର ଓ ପ୍ରଚାର ପାଇଁ ଯେଉଁ ସାହିତ୍ୟିକ, ନାଟ୍ୟକାର ଓ କଳାକାରମାନେ ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ନାଚ, ନାଟ, ଯାତ୍ରା ଓ ନାଟକ ପ୍ରଦର୍ଶନ କରି କରାଇ ଏ ଜାତିକୁ ଐକବଦ୍ଧ କରି ଉତ୍କଳୀୟ ସ୍ୱାଭୀମାନ ବଜାୟ ରଖି ପାରିଥିଲେ, ସେମାନଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ଥିଲା । ଏହାହିଁ ମୋର ସୌଭାଗ୍ୟ । ଓଡ଼ିଆ ନାଟ୍ୟ ଆନ୍ଦୋଳନର ଏକ ଘଡ଼ିସନ୍ଧି ପୂର୍ଣ୍ଣ ମୁହୂର୍ତ୍ତରେ ପଶ୍ଚିମାଞ୍ଚଳର ଏକ ସରକାରୀ ଚାକିରୀଆ ଶିକ୍ଷିତ ପରିବାରରେ ମୋର ଜନ୍ମ । ବିଂଶ ଶତାବ୍ଦୀର ଦ୍ୱିତୀୟ ଓ ତୃତୀୟ ଦଶକରେ ଓଡ଼ିଶାର ଭୌଗୋଳିକ ମାନଚିତ୍ରରେ ଦେଶୀୟ ରାଜ୍ୟ ଓ ଖାସମାହାଲ ଶାସନ ମଧ୍ୟରେ ଆକାଶପାତାଳ ବିଭିନ୍ନତା ମଧ୍ୟରେ ମୋର ବାଲ୍ୟ ଜୀବନ ପୁଷ୍ଟଳ ହୋଇଛି । ମୋର ପିତା ଓ ପିତୃବ୍ୟମାନେ ଯଦିଓ ଉଚ୍ଚଶିକ୍ଷିତ ଥିଲେ, ନାଟ୍ୟ-କଳା ଓ ସଙ୍ଗୀତ-ନୃତ୍ୟ ପ୍ରତି ସେମାନଙ୍କର ରୁଚି ଥିଲା ଯଥେଷ୍ଟ । ଖଡିଆଳ, ଭବାନୀପାଟଣା, ବଲାଙ୍ଗୀର, ଦେବଗଡ଼, ସମ୍ବଲପୁର ପରି ସହରମାନଙ୍କରେ ସେତେବେଳେ ଓଡ଼ିଆ ନାଚ, ଗୀତ ଓ ନାଟକର ଚର୍ଚ୍ଚା ସୌଖୀନ ଭାବରେ ବେଶ୍ ବ୍ୟାପକ ଥିଲା । କେବଳ ଗ୍ରାମାଞ୍ଚଳର ସାଧାରଣ ଲୋକେ ଏଥିରେ ଭାଗ ନେଉନଥିଲେ । ଏସବୁ କାର୍ଯ୍ୟରେ ସେ ଅଞ୍ଚଳର ଗୋଟିଏ ଗୋଟିଏ ଶିକ୍ଷିତ ପରିବାର ଜାତି, ଧର୍ମ ନିର୍ବିଶେଷରେ ଏତେ ଉଦାର ଭାବରେ ନିଜକୁ ବିନିଯୋଗ କରୁଥିଲେ ଯେ, ତାହା ଏବେ କଳ୍ପନା ମଧ୍ୟ କରି ହେଉନାହିଁ । ମାଷ୍ଟର ମାଣିଆ ଏ ସବୁ ଅଞ୍ଚଳରେ ବହୁବାର ନାଟକ ପ୍ରଦର୍ଶନ କରି ସୁନାମ ଅର୍ଜନ କରିଥିଲେ ।

ମୋର ପିତା ବ୍ରିଟିଶ ସରକାରଙ୍କର ଜଣେ ପଦସ୍ଥ କର୍ମଚାରୀ, ତାଙ୍କର ବଡ଼ଭାଇ ଡାକ୍ତର ସନାତନ ପୂଜାରୀ ଓ ଡାକ୍ତର ଜନାର୍ଦ୍ଦନ ପୂଜାରୀ ନାଟକ ସହିତ ଓତପ୍ରୋତ ଭାବରେ ସଂଶ୍ଳିଷ୍ଟ । ସମସାମୟିକ ନାଟ୍ୟଧାରା ସହିତ ଏମାନଙ୍କ ଗଭୀର ସଂପର୍କ ଥିଲା । କଲିକତା, ପାଟଣା, ନାଗପୁର ଓ କଟକ ପରି ସ୍ଥାନମାନଙ୍କରେ ନାଟକ କ୍ଷେତ୍ରରେ ଯେଉଁ ପରିବର୍ତ୍ତନ ହେଉଥିଲା ତାହାକୁ ନିଜ ସହର ଓ ଗ୍ରାମାଞ୍ଚଳରେ କିପରି

ପ୍ରଦର୍ଶନ କରିହେବ, ସେଥିରେ ବର୍ତ୍ତମାନ ଓଡ଼ିଶାର ବହୁ ସମ୍ଭ୍ରାନ୍ତ ପରିବାରର ବ୍ୟକ୍ତି ଜଡ଼ିତ ହୋଇଥିଲେ । ଦେଶୀୟ ରାଜ୍ୟର ରାଜା ଓ ଧନୀକ ଶ୍ରେଣୀ (ଜମିଦାର, ମଠର ମହନ୍ତ) ମଧ୍ୟ ଏଥିରେ ସମ୍ପୃକ୍ତ ହେଉଥିଲେ । ସେମାନଙ୍କର ପୃଷ୍ଠପୋଷକତାରେ ଓଡ଼ିଆ ନାଟକର ବହୁ ଆଦିପର୍ବର ଇତିହାସ ଉନ୍ମୋଚନ- ଆଜିସୁଦ୍ଧା ଲିପିବଦ୍ଧ ହୋଇ ପାରିନାହିଁ ।

ବିଂଶ ଶତାବ୍ଦୀର ଦ୍ୱିତୀୟ ଓ ତୃତୀୟ ଦଶକରେ ମୋର ପିତା ସଚ୍ଚିଦାନନ୍ଦ, ପିତୃବ୍ୟ ଡାକ୍ତର ସନାତନ ଓ ଡାକ୍ତର ଜନାର୍ଦ୍ଦନ ନିଜ ନିଜ କର୍ତ୍ତବ୍ୟ ସ୍ଥଳୀରେ (ଛାତ୍ର ଓ ସରକାରୀ କାର୍ଯ୍ୟରେ) ଅଶ୍ୱିନୀକୁମାର ଘୋଷ, କାର୍ତ୍ତିକ କୁମାର ଘୋଷ, କାଳୀଚରଣ ପଟ୍ଟନାୟକ, ମାଷ୍ଟର ମାଣିଆଙ୍କ ପରି ନାଟ୍ୟପ୍ରେମୀଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ । ସୌଖୀନ କଳାକାରଭାବରେ ସେମାନଙ୍କ ସହ ଉତ୍ତମ ସମ୍ପର୍କ ରଖିଥିଲେ ।

ବୋଧହୁଏ, ୧୯୪୧/୪୨ ମସିହାରେ ମୋ ବାପାଙ୍କ ଗହଣରେ କଟକର 'ଅନ୍ନପୂର୍ଣ୍ଣା' ଥିଏଟର୍ ପ୍ରାଙ୍ଗଣରେ ମୋର ମାଷ୍ଟର ମାଣିଆଙ୍କ ସହିତ ପ୍ରଥମ ପରିଚୟ । ବାପା ଡେପ୍ୟୁଟି ମାଜିଷ୍ଟ୍ରେଟ୍ କଟକରେ 'ସିଭିଲ୍ ଡିଫେନ୍‌ସ ଅଫିସର'' ଭାବରେ ତିନିକୋଣିଆ ବଗିଚା ପାଖରେ ଗୋଟିଏ ଭଡାଘରେ ରହୁଥିଲେ । ଅନ୍ନପୂର୍ଣ୍ଣା ଥିଏଟର୍ ଠାରୁ ପ୍ରାୟ ପଚାଶ ଗଜ ଦୂର । ତେଣୁ ଯେଉଁ ନୂଆ ନାଟକ ଅନ୍ନପୂର୍ଣ୍ଣା ଥିଏଟର୍ ବା ଓଡ଼ିଶା ଥିଏଟର୍ସରେ ହେଉଥିଲା, ତାହା ବାପାଙ୍କ ସହିତ ଦେଖିବାର ସୁଯୋଗ ମିଳୁଥିଲା । ମୁଁ ପଞ୍ଚମ ଶ୍ରେଣୀର ଛାତ୍ର । ବୟସ ନଅ ବର୍ଷ । ସେତେବେଳେ ମାଷ୍ଟର ମାଣିଆ ବେଶ୍ ଗମ୍ଭୀର ଓ ଭଦ୍ର ଜଣାପଡୁଥିଲେ । ତାଙ୍କ ପାଖରେ ଥିଲେ ଅଶ୍ୱିନୀକୁମାର ଘୋଷ ଓ କାର୍ତ୍ତିକ କୁମାର ଘୋଷ । ବାପାଙ୍କୁ ଏମାନେ ସମସ୍ତେ ଛାତ୍ର ଜୀବନରୁ ଜାଣିଥିଲେ । କାରଣ ବାପା ଥିଲେ ତାଙ୍କ ସମୟର ଜଣେ ଭଲ ଫୁଟ୍‌ବଲ୍ ଖେଳାଳୀ ଓ ରେଭେନ୍ସା କଲେଜର ଛାତ୍ର । ନାଟକ ଓ ବଂଶୀବାଦନରେ ତାଙ୍କର ରୁଚି ଥିଲା । 'P.W.D.', କୋଣାର୍କ ଓ 'କଳାପାହାଡ' ପରି ନାଟକ ଦେଖିବାର ସୁଯୋଗ ମୋତେ ଏଠି ମିଳିଥିଲା । ସେତେବେଳେ ଅନ୍ନପୂର୍ଣ୍ଣା ଥିଏଟର୍ ବିଭାଜନ ହୋଇନଥିଲା ।

ଶ୍ରୀ ରାମଚନ୍ଦ୍ର ମାଣିଆ ଆର୍ଟଥିଏଟରରୁ ସିଧା ଆସି ବାଉରୀବନ୍ଧୁ ମହାନ୍ତିଙ୍କ ଅନ୍ନପୂର୍ଣ୍ଣା ଥିଏଟରରେ ଯୋଗ ଦେଇ ଥାଆନ୍ତି । ସେତେବେଳକୁ ତାଙ୍କୁ ସମସ୍ତେ ମାଷ୍ଟର ବାବୁ ବୋଲି ସମ୍ବୋଧନ କରୁଥିଲେ । ତାଙ୍କୁ ମୁଁ 'ବିଶୁ ମହାରଣା' ଚରିତ୍ରରେ ନାଟକରେ ଦେଖି ସ୍ତମ୍ଭୀଭୂତ ହୋଇଯାଇଥିଲି । ବାପା ମୋତେ କହିଥିଲେ କାହିଁକି ତାଙ୍କୁ ''ମାଷ୍ଟର ମାଣିଆ'' ବୋଲି ଡାକନ୍ତି । ସେତେବେଳେ ନାଟକ ନିର୍ଦ୍ଦେଶନା କ୍ଷେତ୍ରରେ ରାମଚନ୍ଦ୍ର

ମାଣିଆଙ୍କ ବେଶ୍ ନାଁ କରିଥିଲେ । ନୃତ୍ୟ, ଗୀତ ଓ ଅଭିନୟ- ଏ ସବୁକ୍ଷେତ୍ରରେ ସେ ଏତେ ଦକ୍ଷ ନିର୍ଦ୍ଦେଶକ, ଗୁରୁ ଓ ସହାୟକ ଥିଲେ ଯେ ତାଙ୍କୁ ସେତେବେଳର ଓଡ଼ିଶାର ବହୁ ସୌଖୀନ ସଂସ୍ଥାର ପୃଷ୍ଠପୋଷକମାନେ ମାସ ମାସ ଧରି ନିମନ୍ତ୍ରଣ କରି ଡାକି ନେଉଥିଲେ । ଅଳ୍ପ ଶିକ୍ଷା ପାଇଥିବା - ନାଚ ପାର୍ଟିର ଅଭିନେତା ଠାରୁ ଉପରକୁ ଉଠି ସେ ଥିଲେ ସବୁଠାରୁ ଉତ୍କୃଷ୍ଟ ନିର୍ଦ୍ଦେଶକ । ତେଣୁ ସେ ଓଡ଼ିଶାର ସବୁ ଅଞ୍ଚଳରେ 'ମାଷ୍ଟର ମାଣିଆ' ଭାବରେ ସୁପରିଚିତ ଥିଲେ ।

ଅତ୍ୟନ୍ତ ସରଳ, ନିଷ୍କପଟ, ଶାନ୍ତ ପ୍ରକକୃତିର ଲୋକଟିଏ, ଅତିନମ୍ର ଓ ଭଦ୍ର ଭାବରେ ସେ ନିଜକୁ ଅନ୍ୟ ପାଖରେ ଉପସ୍ଥାପନ କରୁଥିଲେ । ଯେଉଁ ଦର୍ଶକ ତାଙ୍କର ବିଭିନ୍ନ ଚରିତ୍ରରେ ଅଭିନୟ ଦେଖୁଥିଲେ । ସେମାନେ ତାଙ୍କ ପାଖକୁ ଆକୃଷ୍ଟ ହେଉଥିଲେ । ନାଟ ହେଉ ବା ନାଟକ ହେଉ ବା ସିନେମା ହେଉ ମାଷ୍ଟର ମାଣିଆ ସାବଲୀଳ ଭାବରେ ଏ ସବୁ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ । ସେଥିପାଇଁ ଦ୍ୱିତୀୟ ଓ ତୃତୀୟ ଦଶକର ବହୁ ଶିକ୍ଷିତ ଛାତ୍ର ତାଙ୍କୁ ଆଦର୍ଶ ଭାବରେ ଗ୍ରହଣ କରିଥିଲେ ।

ମାଷ୍ଟର ମାଣିଆଙ୍କ ପ୍ରଥମ ଚଳଚ୍ଚିତ୍ର ଅଭିନୟ ୧୯୪୮ ମସିହାରେ 'ଶ୍ରୀ ଜଗନ୍ନାଥ' ଚଳଚ୍ଚିତ୍ରରେ । ୧୯୬୦ ମସହାର 'ଦସ୍ୟୁ ରତ୍ନାକାର' ତାଙ୍କ ଅଭିନୀତ ଦ୍ୱିତୀୟ ଚଳଚ୍ଚିତ୍ର । ବାପାଙ୍କ ଅକାଳ ମୃତ୍ୟୁ ପରେ ଅବସ୍ଥା ଚକ୍ରରେ ପଡ଼ି ମୁଁ ୧୯୫୮ ମସିହାରେ 'ମହାଲକ୍ଷ୍ମୀ ପୂଜା' ଚଳଚ୍ଚିତ୍ରରେ ଅଭିନୟ କରି ସାରିଥାଏ । ତା'ପରେ ୧୯୬୦ ମସିହାରେ ବରଗଡ଼ର ପଞ୍ଚାୟତ ମହାବିଦ୍ୟାଳୟରେ ଅର୍ଥନୀତିର ଅଧ୍ୟାପକ ଭାବରେ ଯୋଗ ଦେଇଥାଏ । 'ଦସ୍ୟୁ ରତ୍ନାକର' ଚଳଚ୍ଚିତ୍ର ମୋର ଦ୍ୱିତୀୟ ଚଳଚ୍ଚିତ୍ର । ଏ ଚଳଚ୍ଚିତ୍ରରେ ଅଭିନୟ କରୁଥିବା ସମୟରେ 'ମାଷ୍ଟର ମାଣିଆଙ୍କ' ସହିତ ଘନିଷ୍ଠ ଭାବରେ ପରିଚୟ ହେଲା । କଲିକତାରେ ଏ ଚଳଚ୍ଚିତ୍ରର ଇନ୍‌ଡୋର୍ ସୁଟିଂ ହୋଇଥିଲା । ତେଣୁ ୭/୮ ଦିନ ଯାଏ ସାଙ୍ଗରେ ଗୋଟିଏ ମେସ୍ ବା ଭଡ଼ାଘରେ ରହିବାକୁ ପଡ଼ିଥିଲା । ମୁଁ ତାଙ୍କୁ ପ୍ରଣାମ କରିବା ମାତ୍ରେ ସେ ମୋତେ ଦେଖି କହିଲେ, ''ହଁ ବାପା ବଡ଼ ବାପାଙ୍କ ଗୁଣ ପାଇଛ । ନହିଲେ କଲେଜର ଅଧ୍ୟାପକ ହୋଇ ସିନେମାରେ ଅଭିନୟ କରି ଥାଆନ୍ତ ?'' ମୁଁ ଟିକିଏ ଆଚମ୍ବିତ ହେଲି । ସେ କହିଲେ, '' ବସ ଗୋଟିଏ ଗପ କହିବି, ଶୁଣ - ଆଜିକୁ ପ୍ରାୟ ୩୦/୩୫ ବର୍ଷ ତଳେ ଆମ ନାଟ ପାର୍ଟି କଲିକତାରେ କେମ୍ପ କରୁଥାଏ । ସେତେବେଳେ ଓଡ଼ିଶାର ବହୁ ଛାତ୍ର କଲିକତାରେ ପଢୁଥିଲେ । ସେମାନେ ପ୍ରାୟ ଆମ ନାଟକ ଦେଖିବାକୁ ଆସନ୍ତି । ପ୍ରବାସୀ ଓଡ଼ିଆଙ୍କ ନିମନ୍ତ୍ରଣରେ

ଆମେ କଲିକତାରେ ଦୁଇ/ତିନି ମାସ ରହି ଅନେକ ଓଡ଼ିଆ ନାଟକ ପ୍ରଦର୍ଶନ କରୁଁ । ମୋତେ ନିର୍ଦ୍ଦେଶନା ସହିତ ମୁଖ୍ୟ ଅଭିନେତା ଚରିତ୍ରରେ ଅଭିନୟ କରିବାକୁ ପଡୁଥାଏ । ଲୋକଙ୍କ ଦାବୀ ଅନୁସାରେ 'କୋଣାର୍କ' ନାଟକଟି ବାରମ୍ବାର ଅଭିନୟ କରିବାକୁ ହେଉଥାଏ । ତୁମର ବଡବାପା ଡାକ୍ତର ଜନାର୍ଦ୍ଦନ ପୂଜାରୀ ସେତେବେଳେ କଲିକତା ମେଡିକାଲ ସ୍କୁଲର ଶେଷ ବର୍ଷର ଛାତ୍ର । କଲେଜ ଓ ବିଶ୍ୱ ବିଦ୍ୟାଳୟର ଓଡ଼ିଆ ଛାତ୍ରଙ୍କୁ ନେଇ ସେ କଲିକତାରେ ଓଡ଼ିଆ ନାଟକ ପରିବେଷଣ କରି ସାରିଥିଲେ । ଆମ ପାର୍ଟିର ନାଟକ ଦେଖିବାକୁ ସେ ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ଆମ ମେସକୁ ଆସି ଆମ ଦେହପା କଥା ବୁଝି ଯାଉଥିଲେ । ନାଟକ ମଧ ଦେଖୁଥିଲେ । ଦିନେ ଅଭିନୟ ପରେ ମୋର ଦେହ ହଠାତ୍ ଖରାପ ହେଲା । ଝାଡ଼ା ବାନ୍ତି ଓ ଜ୍ୱର ଯୋଗୁଁ ମୁଁ ଦୁର୍ବଳ ହୋଇପଡ଼ିଲି । ଆମ ପାର୍ଟିର ଲୋକଯାଇ ଡାକ୍ତରୀ ଛାତ୍ରଙ୍କ ମେସ୍‌ରେ ଖବରଟା ପହଞ୍ଚାଇ ଦେଲେ । ଶୁଣିବା ମାତ୍ରେ ଡାକ୍ତର ଜନାର୍ଦ୍ଦନ ଆସି ମେସ୍‌ରେ ପହଞ୍ଚିଲେ । ମୋର ଦେହ ପରୀକ୍ଷା କଲେ ଓ ଔଷଧ ଦେଇ ଜଗି ରହିଲେ । ଏତିକି ବେଳେ ଆମ ପାର୍ଟିର ମେନେଜର ଓ ପରିଚାଳକ ଆସି ଡାକ୍ତର ବାବୁଙ୍କୁ ସନ୍ଧ୍ୟା ସୁଧା ମୋ ଦେହ ଭଲ ହେବ କି ନାହିଁ ପଚାରି ବୁଝିଲେ । ସେ ସ୍ପଷ୍ଟ ମନାକଲେ ଓ କହିଲେ ଦୁଇ ତିନି ଦିନ ପର୍ଯ୍ୟନ୍ତ ମୋର ସମ୍ପୂର୍ଣ୍ଣ ବିଶ୍ରାମ ଦରକାର । କୌଣସି ମତେ ନାଟକରେ ଅଭିନୟ କରିବା ସମ୍ଭବ ନୁହେଁ । ପାର୍ଟିର ସମସ୍ତଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ଆଗୁଆ ଟିକଟ ବିକ୍ରି ହୋଇଛି । ମାଷ୍ଟର ମାଣିଆ ଅଭିନୟ ନକଲେ ନାଟକ ହୋଇ ପାରିବ ନାହିଁ । ମାଣିଆଙ୍କ ଜାଗାରେ ଅନ୍ୟ କେହି ସେ ଚରିତ୍ରରେ ଅଭିନୟ କରି ପାରିବେ ନାହିଁ । କାହାର ବା ଏତେ ପ୍ରସ୍ତୁତି ଅଛି ? ବହୁ ସମୟ ପର୍ଯ୍ୟନ୍ତ ବାଦାନୁବାଦ ହେବା ପରେ ଡାକ୍ତର ଜନାର୍ଦ୍ଦନ ପୂଜାରୀ କହିଲେ, ଯଦି ମାଷ୍ଟର ମାଣିଆ ଅନୁମତି ଦେବେ, ତେବେ ମୁଁ ତାଙ୍କ ଚରିତ୍ରଟିରେ ଅଭିନୟ କରିପାରିବି । କାରଣ ମୁଁ ମାଷ୍ଟର ମାଣିଆଙ୍କ ଅଭିନୟ ଦେଖି ଦେଖି ଏହାକୁ ନିଜେ ଦୁଇ/ତିନି ଥର ଆମ ଗାଁରେ ମଞ୍ଚସ୍ଥ କରିସାରିଛି । ଆପଣମାନେ ଚାହିଁଲେ ମୁଁ ସାମାନ୍ୟ ରିହାରସାଲ୍ କରି କିଛି ଅଂଶ ଦେଖାଇଦେଇ ପାରେ । ଆମ ପାର୍ଟିର ସମସ୍ତେ ହତବାକ୍ ହେଲେ । ମୁଁ ଖଟରେ ଉଠି ବସିଲି । ତା'ପରେ ଆମ ପାର୍ଟିର ଅଭିନେତାମାନଙ୍କ ଗହଣରେ ମୁଁ ଯେଉଁ ଚରିତ୍ରରେ ଅଭିନୟ କରେ ତାହାର ହୁବହୁ ନକଲ କରି ଅନର୍ଗଳ ସଂଳାପ କହି ଚାଲିଲେ ସେ । ଆମେ ସମସ୍ତେ ସ୍ତମ୍ଭୀଭୂତ ହେଲୁ । ସେଦିନ ଠିକ୍ ହେଲା ଡାକ୍ତର ଜନାର୍ଦ୍ଦନ ପୂଜାରୀ ହିଁ ମୋ ଚରିତ୍ରରେ ଅଭିନୟ କରିବେ ଏବଂ ଏହା ଶେଷ ମୁହୂର୍ତ୍ତରେ

ଘୋଷଣ କରାଯିବ । ଡାକ୍ତର ଜନାର୍ଦ୍ଦନ ପୂଜାରୀ କଲିକତା ଓଡ଼ିଆ ସମାଜରେ ବେଶ୍ ଜଣାଶୁଣା ଥିଲେ । ତେଣୁ କେହି ଏହି ହଠାତ୍ ପରିବର୍ତ୍ତନରେ ଅସନ୍ତୁଷ୍ଟ ହେବେ ନାହିଁ । ଶେଷ ପର୍ଯ୍ୟନ୍ତ ମୋର ଜ୍ୱର କମିଲା ନାହିଁ । ମୋତେ ଦର୍ଶକଙ୍କ ଶେଷ ଧାଡ଼ିରେ ଗୋଟିଏ ଆରାମ ଚଉକିରେ ନେଇ ବସେଇ ଦିଆଗଲା । ନାଟକ ଆରମ୍ଭ ହେବା ପୂର୍ବରୁ ମୋର ଅସୁସ୍ଥତା ବିଷୟରେ ଘୋଷଣା କରାଯାଇ ଡାକ୍ତର ପୂଜାରୀଙ୍କ ବିଷୟରେ କୁହାଗଲା । ସବୁ ଦର୍ଶକ ଆଶ୍ଚର୍ଯ୍ୟ ହେଇ ଅନେଇ ରହିଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ଡାକ୍ତର ଜନାର୍ଦ୍ଦନ ପୂଜାରୀ ଅତି ସାବଲୀଳ ଭାବରେ ମୂଳରୁ ଅଭିନୟ କରିଚାଲିଲେ, କେଉଁଠାରେ ଟିକିଏ ହେଲେ ଝୁଣ୍ଟିଲେ ନାହିଁ । ମୁଁ ସ୍ତମ୍ଭୀଭୂତ ହୋଇ ରହିଗଲି, ତାଙ୍କର ଅସାଧାରଣ ସାହସ, ଧୈର୍ଯ୍ୟ, ସାଧନା ଓ ଏକାଗ୍ରତା ଦେଖି । ଆଜି ପର୍ଯ୍ୟନ୍ତ ମୁଁ ତାଙ୍କୁ ଭୁଲି ପାରି ନାହିଁ । ସୌଖୀନ କଳାକାର ଭାବର ଡାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ପରିବାରରେ ତୁମେ ଯେତେବେଳେ ଜନ୍ମ ହେଇଛ-କିଛିତ ତାଙ୍କର ଗୁଣଥିବ । ଚେଷ୍ଟା ଓ ସାହସ କଲେ ନିଶ୍ଚୟ ତୁମେ ବି ଜଣେ ଭଲ କଳାକାର ହୋଇପାରିବ ।'' ଗର୍ବ, ଅହଂକାର ଶୂନ୍ୟ- 'ମୁଁ' କାର ଠାରୁ ଦୂରରେ ରହି - ଅଯାଚିତ ଭାବରେ ଷଷ୍ଠୀପୂର୍ତ୍ତି ବୟସର ଜଣେ ବରିଷ୍ଠ; ପ୍ରତିଷ୍ଠିତ ଅଭିନେତା ଯଦି ଜଣେ ଯୁବ କଳାକାର ପାଇଁ ଏପରି ଆଶୀଷବାଣୀ ଶୁଣାଇପାରେ ସେଠାରେ ନାଟ୍ୟ ପରମ୍ପରା ଯେ ବଞ୍ଚିରହିବ- ଏହା ମୋର ବିଶ୍ୱାସ ହୋଇଥିଲା । ଏହାହିଁ ମୋତେ ଉତ୍ସାହ ଦେଇଥିଲା ସେଦିନ ଓ ଆଜି ପର୍ଯ୍ୟନ୍ତ ଦେଇ ଆସୁଛି । ତା ନହୋଇଥିଲେ ସେ କ'ଣ 'ମାଷ୍ଟର' ହୋଇଥାନ୍ତେ ?

ମାଷ୍ଟର ମାଣିଆ ପୁଣି ଦେଖା ଦେଲେ ୧୯୬୬ ମସିହାରେ 'ମାଟିର ମଣିଷ'ର ପଧାନ ବୁଢ଼ା ଚରିତ୍ରରେ । ଜଗତ୍‌ପୁରଠାରେ ନିର୍ମିତ ଝାଟିମାଟି ଘର ଭିତର କେତେକ ଆଉଟ୍ ଡୋର୍ ସେଟ୍‌ରେ ପୁଣି ୧୦/୧୫ ଦିନ କାମ ଚାଲିଲା । ପଧାନ ପଡ଼ାର ପଧାନ ବୁଢ଼ା ଓ ବଡ଼ ପୁଅ ବରଜୁ ପଧାନ ଚରିତ୍ରରେ, ସେ ଓ ମୁଁ ଅଭିନୟ କରିଥିଲୁ । ମାଷ୍ଟର ମାଣିଆଙ୍କ ବୟସ ସେତେବେଳେ ଷାଠିଏ ଟପିଲାଣି । କିନ୍ତୁ ଏବେବି ମୋ' ଆଖି ଆଗରେ ଭାସିଯାଏ, ତାଙ୍କ ଅଭିନୀତ ଦୃଶ୍ୟ କେତୋଟି । ବାଟହୁଡା ପୁଅ ଛକଡ଼ିକୁ ଢାବୁଡ଼ା ମାରି ପଧାନ ବୁଢ଼ୀର ମୃତ୍ୟୁ ଖବର ଦେବା ଦୃଶ୍ୟ । ପରିବାରର ସମସ୍ତଙ୍କ ଆଗରେ ରାତି ଅଧରେ ପଧାନ ବୁଢ଼ୀର ଘର କରଣା ବିଷୟର ବର୍ଣ୍ଣନା କରିବା ଦୃଶ୍ୟ । ଶେଷରେ ବିରୂପା କୂଳରେ ବସି ଦାର୍ଶନିକ ଭାବରେ ତାଙ୍କ ମୁହଁରେ ଉଚ୍ଚାରିତ ସଂଳାପ କେତୋଟି - 'ହଁ, ମୁହୁଲି ବୁଢ଼ା ଚାଲିଗଲେ । ବୟସ ହେଇଥିଲା''

ତା'ପରେ ୧୯୭୫ ମସିହାରେ 'ମମତା' ଚଳଚ୍ଚିତ୍ରରେ ବୁଢ଼ା ଶଙ୍ଖାରୀ ଚରିତ୍ରରେ କେବଳ ଗୋଟିଏ ନିର୍ବାକ୍ ଦୃଶ୍ୟରେ ତାଙ୍କର ଅଭିନୟ ଓ ସେହି ବର୍ଷ ପ୍ରଯୋଜିତ 'ଯାଯାବର' ଚଳଚ୍ଚିତ୍ରରେ ବାସ୍ତୁହରା, ନିମ୍ନବର୍ଗର ବୁଭୁକ୍ଷିତ ଚରିତ୍ରର ଜୀବନ୍ତ ଅଭିନୟ ।

ଓଡ଼ିଶାର ବିଗତ ୬୫ ବର୍ଷର ଚଳଚ୍ଚିତ୍ର ଇତିହାସରେ 'ଅଭିନୟ' ବିଷୟଟିକୁ ନେଇ କେହି କେବେ ତାତ୍ତ୍ୱିକ ଆଲୋଚନା ବା ଗବେଷଣା କରି ନାହାନ୍ତି । ମୋ ଦୃଷ୍ଟିରେ, ଅଳ୍ପ ବୟସରୁ ନାକ ଓ କାନ ଫୋଡା, ଦରପାଠୁଆ ଗଉଡ଼ ପିଲାଟିଏ, ଯେ କେବଳ ଗୋଟି ପୁଅ ନାଚିବା ପାଇଁ ନାଚ ପାର୍ଟିକୁ ଆସିଥିଲା, ସେ କିପରି ନିଜର ଅଧ୍ୟବସାୟ ବଳରେ ନାଟ ଓ ନାଟକ କ୍ଷେତ୍ରରେ ଅନବଦ୍ୟ 'ବିଶୁ ମହାରଣା' ଓ 'କଳାପାହାଡ଼' ଚରିତ୍ରରେ ଅଭିନୟ ସାଫଲ୍ୟ ଦେଖାଇ ପାରିଲେ । ସେତେବେଳର ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ସୌଖୀନ ସଂସ୍ଥାମାନଙ୍କରେ ଅଭିନୟ ନିର୍ଦ୍ଦେଶନା ଦେଇ ସମସ୍ତଙ୍କ ଠାରୁ ପ୍ରିୟ 'ମାଷ୍ଟର' ଉପାଧିଟି ପାଇ ପାରିଥିଲେ । ଠିକ୍ ସେମିତି ବିଂଶ ଶତାବ୍ଦୀର ସାମୁହିକ ଅଭିନୟ ପରାକାଷ୍ଠା ପାଇଁ, ଗୋଟିପୁଅ ନାଟରୁ ଚଳଚ୍ଚିତ୍ର ଅଭିନୟ ପର୍ଯ୍ୟନ୍ତ ଜଣେ ସର୍ବଶ୍ରେଷ୍ଠ ଅଭିନେତା- ସଂପୂର୍ଣ୍ଣ ଅଭିନେତା ଭାବରେ ତାଙ୍କୁ ଓଡ଼ିଆ ଜାତିର ମରଣୋତ୍ତର ସମ୍ମାନ ପ୍ରଦର୍ଶନ କରିବା ଉଚିତ୍ । ପ୍ରଚାର ଠାରୁ, ସ୍ତାବକତା ଠାରୁ ଦୂରେଇ ଯାଇ ତାଙ୍କ ପରି ସମ୍ପୂର୍ଣ୍ଣ ଅଭିନେତାଟିଏ, ନିଜ ଗାଁ ମାଟିକୁ ଭଲପାଉଥିବା ମାର୍ଜିତ, ଶୃଙ୍ଖଳିତ ଅଭିନେତାଟିଏ, ପୃଥିବୀର ଯେକୌଣସି ନାଁ କରା ବୈଦେଶିକ ବିଖ୍ୟାତ ଚଳଚ୍ଚିତ୍ର ଅଭିନେତାମାନଙ୍କ ସମକକ୍ଷ ଓଡ଼ିଆ ଅଭିନେତାଟିଏ- ଆଜି ପର୍ଯ୍ୟନ୍ତ ଓଡ଼ିଶାରେ ଜନ୍ମଗ୍ରହଣ କରି ନାହାଁନ୍ତି । ମୋ ବିଚାରରେ ଶ୍ରେଷ୍ଠ ଅଭିନୟ ପାଇଁ ରାଜ୍ୟସରକାରଙ୍କ ପୁରସ୍କାର ମାଷ୍ଟର୍ ମାଣିଆଙ୍କ ନାମରେ ନାମିତ ହେବା ଉଚିତ୍ !

ଆଜିର ଯୁବପିଢ଼ି ତାଙ୍କୁ ଜାଣିବା ପାଇଁ ତାଙ୍କ ଅଭିନୀତ 'ମାଟିର ମଣିଷ', 'ମମତା' ଓ 'ଯାଯାବର' ଚଳଚ୍ଚିତ୍ର ଦେଖିବା ଉଚିତ୍ । ଏ ଚଳଚ୍ଚିତ୍ର ଗୁଡ଼ିକ ସରକାରୀ ସ୍ତରରେ ସଂରକ୍ଷଣ ହେବା ଉଚିତ୍ । ମାଷ୍ଟର ମାଣିଆଙ୍କ ଚରିତ୍ର ଚିତ୍ରଣ, ସଂଳାପ, ଉଚ୍ଚାରଣ ଓ ଆଙ୍ଗିକ ଅଭିନୟ ସୂକ୍ଷ୍ମ ଭାବରେ ଦେଖିଲେ ଜଣାପଡ଼େ ଚଳଚ୍ଚିତ୍ର ଧର୍ମୀ ଅଭିନୟ କାହାକୁ କୁହାଯାଏ । ନାଟ, ଅପେରା, ଯାତ୍ରା ଓ ନାଟକ ତଥା ଚଳଚ୍ଚିତ୍ର ଅଭିନୟରେ କେତେ ପାର୍ଥକ୍ୟ ଓ ବିବିଧତା ଅଛି । ରାମଚନ୍ଦ୍ର ମାଣିଆ ପ୍ରତ୍ୟେକ ଓଡ଼ିଆ କଳାକାରର ନମସ୍ୟ ।



# ହରିହରକ୍ଲବର ନାଟ୍ୟଗୁରୁ-ମାଷ୍ଟର ମାଣିଆ

*ତ୍ରିଲୋଚନ ମହାପାତ୍ର*

ପୂଜ୍ୟଗୁରୁ ମାଷ୍ଟର ମାଣିଆଙ୍କର ନାଟ୍ୟନିର୍ଦ୍ଦେଶନା ମୋ ଜୀବନର ଶ୍ରେଷ୍ଠ ସମ୍ପତ୍ତି । ତାଙ୍କରି ନିର୍ଦ୍ଦେଶନାରେ ଅଭିନୟ ସୁଯୋଗ ମୋତେ ମିଳିଥିଲା, କୁଦିଆରୀସ୍ଥ ହରିହର କ୍ଲବ୍‌ରେ ।

ହରିହର କ୍ଲବ୍ ପ୍ରାୟ ଷାଠିଏ ବର୍ଷର ଏକ ଅନୁଷ୍ଠାନ । କେତେଜଣ ଉତ୍ସର୍ଗୀକୃତ ଯୁବକ ଏହାକୁ ପ୍ରତିଷ୍ଠା କରିଥିଲେ । ପ୍ରତିବର୍ଷ ରଜରେ ଦୁଇ ବା ତିନୋଟି ନାଟକ ମଞ୍ଚସ୍ଥ ହୁଏ । ଓଡ଼ିଶାର ପ୍ରାୟ ସମସ୍ତ ଜନପ୍ରିୟ ସାମାଜିକ, ଐତିହାସିକ, ପୌରାଣିକ ନାଟକ ଏଠାରେ ମଞ୍ଚସ୍ଥ ହୋଇଛି । ବହୁ ପ୍ରତିଷ୍ଠିତ ନିର୍ଦ୍ଦେଶକ, ଅଭିନେତା ଓ ଅଭିନେତ୍ରୀ ଏଠାକାର ରଙ୍ଗମଞ୍ଚରେ ଅଂଶ ଗ୍ରହଣ କରିଛନ୍ତି । ଷାଠିଏ ଦଶକ ପ୍ରାରମ୍ଭରୁ ମାଷ୍ଟର ମାଣିଆ ହେଲେ ଏହାର ସ୍ଥାୟୀ ନିର୍ଦ୍ଦେଶକ । ତାଙ୍କ ପ୍ରତି ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନ ଭରି ରହିଥିଲା ।

ରଜର ପନ୍ଦରଦିନ ପୂର୍ବରୁ ରିକ୍ସାରେ ତାଙ୍କୁ ଅଣାଯାଏ । ରଜ ପର ପର୍ଯ୍ୟନ୍ତ ସେ ଏଠାରେ ରହନ୍ତି । ତାଙ୍କ ସେବା ଲାଗି ଶିଷ୍ୟମାନଙ୍କ ଭିତରେ ଏକ ପ୍ରତିଯୋଗିତା ଚାଲେ । ତାଙ୍କ ଯତ୍ନରେ ଧୂଳି ପଡ଼ିବାର ନାହିଁ । ସେ ସମୟତକ ମାଷ୍ଟର ମାଣିଆ ସମସ୍ତଙ୍କର ଚଳନ୍ତି ଦେବତା ।

ରଜ ପରେ ମଞ୍ଚସ୍ଥ ହୁଏ ମାଷ୍ଟର ମାଣିଆଙ୍କର ବିଦାୟ ନାଟକ । ତାଙ୍କର ବିଦାୟ ସମୟରେ ପ୍ରାୟ ସବୁ ସଦସ୍ୟ ଉପସ୍ଥିତ ରହନ୍ତି । ସେ ରିକ୍ସାରେ ବସିବାପରେ ସମସ୍ତେ ପାଦଛୁଇଁ ପ୍ରଣାମ କରନ୍ତି । ସମସ୍ତଙ୍କ ଆଖିରେ ଲୁହ, ହୃଦୟରେ କୋହ । ଝୁଡ଼ିଏ ପାଚିଲା ଆମ୍ବ, ଝୁଡ଼ିଏ ପନିପରିବା, କିଛି ମିଠା, ଧୋତିଟିଏ, ପଞ୍ଜାବୀ କନା, ରିକ୍ସାରେ ରଖାହୁଏ । ଗୁରୁ ଦକ୍ଷିଣାଧରି ସେ ବିଦାୟ ନିଅନ୍ତି । ସେ ବି ଲୁହ ଗଡାନ୍ତି । ଏ ନାଟକ ପ୍ରତିବର୍ଷର ...

ଚାଟଶାଳୀ ପାଠ ପଢ଼ିଥିବା ମାଷ୍ଟର ମାଣିଆଙ୍କର ନାଟ୍ୟ ସାହିତ୍ୟରେ ଗଭୀର ଅନୁଭୂତି ଥିଲା । ରିହାର୍ସଲ୍ କାଳରେ ଛାପା ଭୁଲ ଥିଲେ ଅବା ସ୍ମାରକ ଭୁଲ୍ ପଢ଼ିଲେ ପାଟିକରି ଉଠିବେ - ରହ, ରହ । କ'ଣ ପଢ଼ିଲ ? ତା'ପରେ ସେ ଶବ୍ଦ ବା ବାକ୍ୟଟିର ସଂଶୋଧନ କରାଇ କହିବେ- ଭଲ ଶୁଭିଲାନି ପରା । ସଂଳାପର ସାବଲୀଳ ଧାରା ସହିତ ତାଙ୍କର ନିବିଡ଼ ସଂପର୍କ ଥିଲା ।

'ନରଦେବୀ' ନାଟକରେ ସେନାପତି କହୁଥାନ୍ତି- ରକ୍ଷାକରେ ରାଜାଙ୍କର ଚମୂ । ମାଷ୍ଟର ମାଣିଆ ଅଟକେଇ ପଚାରିଲେ - ଚମୂ ? ଚମୂ ଅର୍ଥ କ'ଣ ? ଜିଜ୍ଞାସୁ ଛାତ୍ରଟିଏ ପରି ସେ ଆମ୍ଭମାନଙ୍କ ମୁହଁକୁ ଅନେଇ ରହିଲେ, ଉତ୍ତର ମିଳିଗଲା । ଚମୂ ଅର୍ଥ ସେନା । ତାପରେ ରିହାର୍ସଲ୍ ଚାଲିଲା । ବୃଦ୍ଧ ମାଣିଆ କୋମଳମତି ଛାତ୍ରଟିଏ ବନିବାକୁ ଅନିଚ୍ଛା ପ୍ରକାଶ କରୁନଥିଲେ ।

ଦ୍ରୌପଦୀ ବସ୍ତ୍ର ହରଣକାରୀ ଦୁଃଶାସନ ଓ ଦୁଃଶାସନର ଭୁଜ ଉତ୍ପାଟନକାରୀ ଭୀମ ଅଭିନୟର ନିର୍ଦ୍ଦେଶନା କାଳରେ ସେ ନିଜକୁ ଭୁଲିଯାନ୍ତି । ତାଙ୍କ ଶରୀରରେ ଶତସିଂହର ବଳ ଆସିଯାଏ । ବଙ୍କୁଲି ବାଡ଼ିଟିକୁ ଥୋଇ ଦେଇ ଠିଆ ହୋଇଗଲେ ତାଙ୍କ ଅଣ୍ଟା ସଳଖ ହୋଇଯାଏ । ବୃଦ୍ଧ ମାଣିଆଙ୍କ ଭିତରେ ଦୁଃଶାସନ ଓ ଭୀମ ବିଚରଣ କରୁଥାନ୍ତି ।

'ଦସ୍ୟୁ ଗୋଲାପ' ନାଟକ ରିହାର୍ସଲ୍ ଚାଲୁଥାଏ । ଗଙ୍ଗାନଦୀର ବାଲୁକା ଶଯ୍ୟାରେ ସିରାଜ୍ ଉଦ୍ଦୌଲାଙ୍କର ନୃତ୍ୟ ଆସର । ଆକାଶରେ ରଜ୍ଜ୍ୱଳ ଜହ୍ନ । ନର୍ତ୍ତକୀ ସହିତ ତାଳ ଦେଇ ନାଚୁଥାନ୍ତି ଜଣେ ରସିକ କର୍ମଚାରୀ - ନା, ନା ହେଲାନି । ପାଟିକରି ଉଠିଲେ ମାଷ୍ଟର ମାଣିଆ । ରିହାର୍ସଲ୍ ବନ୍ଦ । ଉଠିଲେ ବୃଦ୍ଧ ମାଣିଆ । ସଙ୍ଗୀତ ଆରମ୍ଭ ହେଲା । ନର୍ତ୍ତକୀ ନାଚିଲେ । ତାଙ୍କ ସହିତ ନାଚିଲେ ନିର୍ଦ୍ଦେଶକ- ହେଣ୍ଡିମାରି, ଆଖିନଚେଇ । ଅଭିଭୂତ ହୋଇପଡ଼ିଲେ ସମସ୍ତେ । ଏ ବୃଦ୍ଧ ନା ତରୁଣ ? ସେ ଥିଲେ କଳାକାରମାନଙ୍କ ମଧ୍ୟରେ ଶ୍ରେଷ୍ଠ, ସେ ଥିଲେ ସର୍ବଶ୍ରେଷ୍ଠ ନିର୍ଦ୍ଦେଶକ ।

କଥା ପ୍ରସଙ୍ଗରେ କହୁଥିଲେ । 'ମାଟିର ମଣିଷ' ସୁଟିଂ ଚାଲିଥାଏ । ଅପେକ୍ଷାରତ କ୍ରୋଧୀ ପିତାଙ୍କ (ମାଣିଆ) ସାମନାକୁ ଆସିଛି ଅବାଧ ପୁତ୍ର, ଛକଡ଼ି (ପ୍ରଶାନ୍ତ ନନ୍ଦ) । ଠା'ଏ କିନି ଚଟକଣିଟାଏ ବସିଲା, ପୁତ୍ରର ଗାଲରେ । ଆଖିରୁ ଧାର ଧାର ଲୁହ ଗଡିଲା । ଚମତ୍କାର ସଟ୍ । ସୁଟିଂ ପରେ ସେ ପ୍ରଶାନ୍ତବାବୁଙ୍କୁ କୁଣ୍ଢେଇ ପକେଇଲେ । ମନେମନେ ଅନୁଶୋଚନା କରୁଥିଲେ, ଗୋପାଳପୁଅର ଏଡ଼େବଡ଼ ଚଟକଣା ପାଇଁ ।

ପଧାନବୁଢ଼ା (ମାଣିଆ)ର ଶବ ପଡ଼ିଛି । ମାଛିଟିଏ ମୁହଁ ଉପରେ ବସିଲା । ହଲିବାର ଯୁ' ନାହିଁ । ଧୈର୍ଯ୍ୟଚ୍ୟୁତି ଘଟିବା ବେଳ । ଅଭିନେତା ଶବ ପାଲଟି ଗଲେ । ଧ୍ୟାନମଗ୍ନ ହୋଇଗଲେ । କଳାଦେବୀଙ୍କ କୋଳରେ ।

ଓଡ଼ିଆ ନାଟକରେ ମାଷ୍ଟର ରାମଚନ୍ଦ୍ର ମାଣିଆ ଗୋଟିଏ ଅଙ୍କ । ଘାସ ଫୁଲଟି ଆପଣାଛାଏଁ ବଢ଼ି ପାରିଜାତ ପାଲଟିବା କେବଳ ମାଷ୍ଟର ମାଣିଆଙ୍କ ଜୀବନରେ ସମ୍ଭବ ହୋଇଛି ।

❒ ❒ ❒

# ଉତ୍ତରାୟଣୀ କ୍ଲବ୍ ଓ ମାଷ୍ଟର ମାଣିଆ

*ଚକ୍ରଧର ଶତପଥି*

୧୯୨୬ ମସିହାରୁ ଝଟଣୀ ସହିତ ମାଷ୍ଟର ମାଣିଆଙ୍କ ଆତ୍ମୀୟତା ବଢ଼ିଲା । ପୁରୀ ଗଜପତି ମହାରାଜାଙ୍କ ଝଟଣୀସ୍ଥ କଚେରିର ତହସିଲ୍‌ଦାର୍‌ଙ୍କ ଉଦ୍ୟମକ୍ରମେ ପାଞ୍ଚଜଣ ପିଲାଙ୍କୁ ନୃତ୍ୟ ଓ ସଙ୍ଗୀତ ଶିକ୍ଷାଦେଇ ମାଷ୍ଟର ମାଣିଆ । 'ରାସଦଳ'ଟିଏ ଗଢ଼ିଲେ । ଏହି ଦଳ ନୃତ୍ୟନାଟକ ପରିବେଷଣ କଲା ।

ଝଟଣୀର ପ୍ରସିଦ୍ଧ ଦେବୀପୀଠ ଡମଣେଇ ମନ୍ଦିରରେ ଷୋଳପୂଜା ମହାସମାରୋହରେ ପାଳିତ ହୁଏ । ୧୯୨୯ରେ ଏହିଠାରେ ସ୍ଥାନୀୟ ବଡ଼ନୂଆଗାଁର ଉତ୍ସାହୀ ଯୁବକ ୰ ବୈରାଗ୍ୟ ଶତପଥି, ୰ ଗଦାଧର ଶତପଥୀ ଓ ୰ ବନମାଳୀ ଶତପଥୀ ଓ ଅନ୍ୟ ଯୁବକମାନଙ୍କୁ ଏକତ୍ରିତ କରାଇ ମାଷ୍ଟର ମାଣିଆ ଉତ୍ତରାୟଣୀକ୍ଲବ୍ ଗଢ଼ିଲେ । ମାଷ୍ଟର ମାଣିଆଙ୍କ ସହିତ ପରାମର୍ଶ କରି ନାଟକଟିଏ ମଞ୍ଚସ୍ଥ ହେଲା । ସେ ତା'ର ନିର୍ଦ୍ଦେଶନା ଦେଲେ । ପରେ ତାଙ୍କ ସହିତ ବଲାଇ ବାନାର୍ଜୀ ଯୋଗଦେଲେ । ସେ ଦୁହେଁ ଆମ ଘରେ ରହୁଥିଲେ । ସେହିକାଳରୁ ମାଷ୍ଟର ମାଣିଆ ଉତ୍ତରାୟଣୀ କ୍ଲବ୍‌ର ଅଂଶ ବିଶେଷ ହୋଇଗଲେ । ସେ ହେଲେ, ଆମ ପରିବାରର ଜଣେ ସଦସ୍ୟ ଏବଂ ମୋର ପ୍ରଥମ ନାଟ୍ୟଗୁରୁ, ଅନ୍ୟତମ ଅଭିଭାବକ । ତାଙ୍କ ପ୍ରତି ମୋର ଶ୍ରଦ୍ଧା ଓ ଭକ୍ତି ବୃଦ୍ଧି ପାଇଲା । ତାଙ୍କର ସ୍ନେହ ଓ ଆଦର୍ଶ ମୋ ଜୀବନର ପାଥେୟ ହେଲା ।

ସେ ଯେକୌଣସି ନାଟ୍ୟସଂସ୍ଥାରେ କାର୍ଯ୍ୟରତ ଥିଲେ ମଧ୍ୟ ଦଶହରା ସମୟରେ ଏକମାସ ଛୁଟି ଆଣି ଉତ୍ତରାୟଣୀ କ୍ଲବ୍‌ରେ ନାଟ୍ୟ ନିର୍ଦ୍ଦେଶନା ଦିଅନ୍ତି । ନିଜେ ମାଣିଆ ଏକ ପ୍ରମୁଖ ଭୂମିକାରେ ଅଭିନୟ କରନ୍ତି । ସେ ଯେକୌଣସି ଚରିତ୍ରରେ ଅଭିନୟ କରିପାରନ୍ତି । ପୁରୁଷ, ସ୍ତ୍ରୀ ଚରିତ୍ର ସହିତ ହାସ୍ୟରସ, ସଙ୍ଗୀତ, ନୃତ୍ୟ ଆଦିରେ ସେ ବାସ୍ତବ ମାଷ୍ଟର ଥିଲେ । ସେ ସମୟରେ ତାଙ୍କ ସମକକ୍ଷ ଅଭିନେତା କେହି ନଥିଲେ ।

୧୯୩୪ ମସିହାକଥା । ଅନ୍ନପୂର୍ଣ୍ଣା 'କ' ଝଟଣୀରେ ନାଟକ ମଞ୍ଚସ୍ଥ କରୁଥାନ୍ତି । ପରିଚାଳକ ବାଉରୀବନ୍ଧୁ ମହାନ୍ତି ମାଷ୍ଟର ମାଣିଆଙ୍କୁ ତାଙ୍କ ନାଟ୍ୟ ଦଳର ଶିକ୍ଷକ ରୂପେ ରଖିଲେ । କିନ୍ତୁ ଚୁକ୍ତି ଥାଏ- ଯେକୌଣସି ସ୍ଥାନରେ ଥିଲେବି ଦଶହରା ପୂର୍ବରୁ ଏକମାସ ସମୟ ସେ ଉତ୍ତରାୟଣୀ କ୍ଲବ୍ ପାଇଁ ବିନିଯୋଗ କରିବେ । କେବେ ସେ ଚୁକ୍ତିର ଖିଲାପ ହୋଇନାହିଁ । ଉତ୍ତରାୟଣୀ ଠାକୁରାଣୀଙ୍କ ପ୍ରତି ତାଙ୍କର ଅମାପ

ଭକ୍ତି ଥାଏ । ମହାନବମୀ ପୂଜାର୍ଚ୍ଚନାର ସମସ୍ତ ଖର୍ଚ୍ଚ ମାଷ୍ଟର ମାଣିଆ ବହନ କରୁଥିଲେ । ତାଙ୍କର ମୃତ୍ୟୁପର୍ଯ୍ୟନ୍ତ ସେ ଏହି ଦାୟିତ୍ୱ ସଂପାଦନ କରିଥିଲେ ।

ଉତ୍ତରାୟଣୀ କ୍ଲବ୍ ବହୁ ନାମୀ ଦାମୀ କଳାକାରଙ୍କର ଚାଟଶାଳୀ । ମାଷ୍ଟର ମାଣିଆ ଥିଲେ ସମସ୍ତଙ୍କର ଭକ୍ତିର ଉତ୍ସ ଓ ଆଦ୍ୟଗୁରୁ । ତାଙ୍କରି ପ୍ରେରଣାରେ ଆମ ପରିବାରର ତଥା ଅନ୍ୟ କେତେଜଣ କ୍ଲବ୍ ସଭ୍ୟଙ୍କର ସଂପର୍କୀୟମାନେ ନାଟକରେ ଅଭିନୟ କଲେ । ସୌଖୀନ୍ ରଙ୍ଗମଞ୍ଚରେ ନାରୀମାନେ ଅଭିନୟ କରିବା କ୍ଷେତ୍ରରେ ଉତ୍ତରାୟଣୀକ୍ଲବ୍ ବୋଧ ହୁଏ ଓଡ଼ିଶାରେ ପ୍ରଥମ ।

ମାଷ୍ଟର ମାଣିଆ ଥିଲେ ଓଡ଼ିଶା ନାଟ୍ୟ ଜଗତର ଅଜାତଶତ୍ରୁ, ସର୍ବଶ୍ରେଷ୍ଠ ପ୍ରତିଭା । ସେଭଳି ଜଣେ ବ୍ୟକ୍ତିଙ୍କର ସାନ୍ନିଧ ଲାଭ କରିବାର ସୁଯୋଗ ପାଇଥିବାରୁ ମୋର ଜୀବନ ଧନ୍ୟ ହୋଇଛି ।

❑ ❑ ❑



# ମୋ ଗୁରୁ, ସାଥୀ ଓ ସାରଥୀ

*କାଶିନାଥ ସାହୁ*

ଉତ୍କୃଷ୍ଟ କଳାର କ୍ଷେତ୍ର ଏଇ ମୋର ଉତ୍କଳ । ଉତ୍କଳଜନନୀର ଅଙ୍ଗସୁଷମା ଓ ବର୍ଣ୍ଣବୈଭବରେ ପରିପୁଷ୍ଟ, ଆମେ ତା'ର ସନ୍ତାନଗଣ । ପ୍ରତି ଛତ୍ରେ ଛତ୍ରେ, ମାଟିରୁ ଆକାଶ ଓ ଆକାଶରୁ ଅନ୍ତରୀକ୍ଷ ପର୍ଯ୍ୟନ୍ତ ସର୍ବତ୍ର ଶୋଭନୀୟ ଉତ୍କଳଲକ୍ଷ୍ମୀଙ୍କର କଳାକୁଶଳତାର ପାଟବ ପ୍ରଲେପ । ସେଇ କଳାକୃଷ୍ଟିର ଉର୍ବର ମାଟିରେ ଯେଉଁ କଳାକାରଗଣ ଆବିର୍ଭାବ ହୋଇ ଆମ ସଂସ୍କୃତିକୁ ସମୃଦ୍ଧ କରିଛନ୍ତି ସେମାନଙ୍କ ମଧ୍ୟରେ ମାଷ୍ଟର ମାଣିଆ ଅଗ୍ରଗଣ୍ୟ । ମୋର କ୍ଷୁଦ୍ର କଳାକାର ଜୀବନ ପରିଧି ମଧ୍ୟରେ ସେ ମୋତେ ଶିକ୍ଷାଦେଇ, ସଖ୍ୟ ଦେଇ ଧନ୍ୟ କରିଛନ୍ତି । ମୋର ଆଦ୍ୟଗୁରୁ ନାଟ୍ୟାଚାର୍ଯ୍ୟ ଅଶ୍ୱିନୀକୁମାର ଘୋଷ ମୋତେ ଗୋଟିଏ ଅବୋଧ ବାଳକରୁ ପରିପକ୍ୱ 'ଧରମା'ରେ ପରିଣତକରି ଗଢ଼ି ତୋଳିଥିବା ବେଳେ ମାଷ୍ଟର ମାଣିଆ ମୋତେ 'ଶ୍ରୀରାଧା'ଙ୍କ ଅପୂର୍ବ ଭାବାବେଗ ଭିତରକୁ ହାତଧରି ଟାଣି ନେଇଛନ୍ତି । ଏଇ ଦୁଇଟି ଭୂମିକାରେ ଦୁଇ କଳାକାରଙ୍କ ତୂଳୀର ଦୁଇଟି ଅନବଦ୍ୟ ରୂପସଜ୍ଜା, ମୋ ନାଟ୍ୟ ଜୀବନର ଗତିପଥ ବଦଳାଇ ଦେଇଥିଲା ।

ମାଷ୍ଟର ମାଣିଆଙ୍କର ମୋ ନାଟ୍ୟଜୀବନ ପ୍ରତି ଅବଦାନ ଭୁଲିହେବ ନାହିଁ । ଅର୍ଜ୍ଜୁନଙ୍କ ରଥରେ ଶ୍ରୀକୃଷ୍ଣ ସାରଥୀ ହୋଇ ନିର୍ଦ୍ଦେଶ ଦେଇଥିଲେ । ଶ୍ରୀକୃଷ୍ଣ ଥିଲେ ଅର୍ଜ୍ଜୁନଙ୍କର ପରମ ସଖା, ସହୋଦର ଏବଂ ପୂଜ୍ୟ । ଠିକ୍ ସେଇଭଳି, ଓଡ଼ିଶାର ଅଭିନୟ ଜଗତର ରଥରେ ମୁଁ ଥିଲି ମାଷ୍ଟର ମାଣିଆଙ୍କ ଅର୍ଜ୍ଜୁନ ସଦୃଶ ଶିଷ୍ୟ ଓ ସଖା । ମୋ କଳାକାର ଜୀବନର ଦୀର୍ଘ କାହାଣୀ ଏହି କ୍ଷୁଦ୍ର ପ୍ରବନ୍ଧ ମାଧ୍ୟମରେ ପ୍ରକାଶ କରିବା ସମ୍ଭବ ନୁହେଁ ।

ଅଭିନୟ କ୍ଷେତ୍ରରେ ସେ ମୋର ନିର୍ଦ୍ଦେଶକ ଥିଲେ । ମୋର ମନେଅଛି, ମୋତେ ୮/୯ ବର୍ଷ ବୟସ ହୋଇଥିବା ବେଳେ ପୁରୀ ବାଲିସାହିର ବିଶ୍ୱନାଥ ଖୁଣ୍ଟିଆଙ୍କ ରାସଦଳ ବନମାଳି ପତିଙ୍କର ରାଧାକୃଷ୍ଣ ଥିଏଟର୍‌ରେ ଦିନେ ରିହାର୍ସଲ କରୁଥାନ୍ତି, ମୁଁ ଏବଂ ମୋ ପରି ଆଉ କେତେଜଣ ବସି ରିହାରର୍ସାଲ୍ ଦେଖୁଥାଉ । ରାଧା ଭୂମିକାରେ ଅଭିନୟ ଠିକ୍ ହେଉନଥିବାରୁ ଶିକ୍ଷାଦାତା ବ୍ୟସ୍ତ ହୋଇ ପଡ଼ିଲେ । ଏଇ ସମୟରେ ପହଞ୍ଚିଲେ ମାଷ୍ଟର ମାଣିଆ । ସେ ସ୍ଥିର କଲେ ଯେ 'ରାଧା' ଭୂମିକା ପରିବର୍ତ୍ତନ କରି ଅନ୍ୟ କାହାକୁ ପ୍ରସ୍ତୁତ କରିବାକୁ ହେବ । ତାଙ୍କର ନଜର ପଡ଼ିଲା ପିଲାମାନଙ୍କ ଉପରେ ।

ମୋତେ ଦେଖି ସେ କ'ଣ ଭାବିଲେ କେଜାଣି, ପଚାରିଲେ- ତୁ ଗୀତଗାଇ ପାରିବୁ ? ମୁଁ ହଁ କଲି । ସେ ଗୋଟାଏ ଗୀତ ଗାଇବା ପାଇଁ କହିବାରୁ ମୁଁ ମଧ ଗୋଟିଏ ଗୀତ ଗାଇ ଶୁଣାଇଲି । ମୋର କଣ୍ଠସ୍ୱର ଶୁଣି ଓ ମୋର ଚେହେରା ଦେଖି ମୋତେ 'ଶ୍ରୀରାଧା' ଭୂମିକାରେ ଅଭିନୟ କରିବାକୁ କହିଲେ । ମୁଁ ମଧ ତାଙ୍କ ଆଶାନୁରୂପ ଅଭିନୟ ଦେଖାଇଦେଲି । ସେ ଖୁବ୍ ଆନନ୍ଦିତ ହେଲେ ଏବଂ ତାଙ୍କ ନିର୍ଦ୍ଦେଶନାରେ ମୁଁ 'ଶ୍ରୀରାଧା' ଅଭିନୟ କରିଥିଲି । ମୋର ସେ 'ଶ୍ରୀରାଧା' ଅଭିନୟ ଖୁବ୍ ପ୍ରଶଂସିତ ହୋଇଥିଲା ।

ନୀଳଗିରି ରାଜପ୍ରାସାଦରେ 'ରାଧାକୃଷ୍ଣ ଥିଏଟର୍' ତରଫରୁ ମାଷ୍ଟର ମାଣିଆଙ୍କ ନିର୍ଦ୍ଦେଶନାରେ 'ଜୟଦେବ' ନାଟକ ମଞ୍ଚସ୍ଥ କରାଗଲା । ସେ ବହିରେ ନିର୍ଦ୍ଦେଶନା ଦେବା ସଙ୍ଗେ ସଙ୍ଗେ 'ପରାଶର' ଭୂମିକାରେ ମାଷ୍ଟର ମାଣିଆ ଅଭିନୟ କରିଥିଲେ । ରାଧା ଅଭିନୟରେ ମୁଗ୍ଧ ହୋଇ ଯୁବରାଜ ସାହେବ ମୋତେ ସ୍ୱର୍ଣ୍ଣ ପଦକ ପ୍ରଦାନ କରିଥିଲେ ।

ସେତେବେଳେ ଓଡ଼ିଶାର ବିଚ୍ଛିନାଞ୍ଚଳ ମିଶ୍ରଣ ପାଇଁ ଜୋରସୋର୍‌ରେ ଉଦ୍ୟମ ଚାଲିଥାଏ । 'ରାଧାକୃଷ୍ଣ ଥିଏଟର୍' ତରଫରୁ ମାଷ୍ଟର ମାଣିଆଙ୍କ ନିର୍ଦ୍ଦେଶନାରେ ପ୍ରସ୍ତୁତ କରାଗଲା 'ଛିନ୍ନମସ୍ତା' ନୃତ୍ୟନାଟିକା । ନୃତ୍ୟ,ଗୀତ, ବାଦ୍ୟଯନ୍ତ୍ର ପ୍ରଭୃତିର ସୁପରିଚାଳନା ସହ ମଞ୍ଚସ୍ଥ କରାଗଲା 'ଛିନ୍ନମସ୍ତା' ନୃତ୍ୟନାଟିକା । ଏହା ଦର୍ଶକଙ୍କ ପ୍ରାଣକୁ ଅଭିଭୂତ କରିଥିଲା । ଏହାର ସଫଳ ନିର୍ଦ୍ଦେଶନା ତାଙ୍କ ବୈପ୍ଳବିକ ଚିନ୍ତାଧାରାର ଏକ ସୂକ୍ଷ୍ମ ଉନ୍ମେଷ ମାତ୍ର ।

ନାରୀ ଭୂମିକାରେ ତାଙ୍କର ଅଭିନୟ ଅତ୍ୟନ୍ତ ଚମତ୍କାର ଥିଲା । 'ଜନା ପ୍ରବୀର ପତନ' ଗୋଟିଏ ବଙ୍ଗଳାନୁବାଦ ନାଟକ । ସେଥିରେ ମାଷ୍ଟର ମାଣିଆ 'ଜନା' (ଗୋଟିଏ ନାରୀ) ଭୂମିକାରେ ଓ ମୁଁ ତାଙ୍କ ପୁତ୍ର 'ପ୍ରବୀର' ଭୂମିକାରେ ଅଭିନୟ କରିଥିଲୁ । ମୁଁ ନିଜେ ମଧ ତାଙ୍କ ଅଭିନୟରେ ଅତ୍ୟନ୍ତ ପ୍ରଭାବିତ ହୋଇଥିଲି । 'ଜନା' ଭୂମିକା ଯୋଗୁଁ ତାଙ୍କୁ ଅନେକ ପ୍ରଶଂସା ଓ ପୁରସ୍କାର ମିଳିଥିଲା । ତାଙ୍କର ଆବେଗପୂର୍ଣ୍ଣ ଭୂମିକା ଗୁଡ଼ିକ ଅତ୍ୟନ୍ତ ମର୍ମସ୍ପର୍ଶୀ । 'ଭକ୍ତ ସୁଦାମା' ନାଟକରେ ତାଙ୍କର 'ସୁଦାମା' ଅଭିନୟ ଦର୍ଶକଙ୍କୁ ଅଭିଭୂତ କରିଥିଲା ।

କେବଳ ନାରୀ ଭୂମିକାରେ ନୁହେଁ, ନାୟକ ଭୂମିକାରେ ପୁରୁଷୋଚିତ ଉଦ୍ଦାମ ଅଭିନୟ ମଧ ତାଙ୍କୁ ଶ୍ରେଷ୍ଠ ଅଭିନେତା ଭାବରେ ପ୍ରମାଣିତ କରିପାରିଥିଲା । ନାଟ୍ୟାଚାର୍ଯ୍ୟ ଅଶ୍ୱିନୀ କୁମାର ଘୋଷଙ୍କର 'ହିନ୍ଦୁରମଣୀ' ନାଟକରେ ସେ ନାୟକ ଭୂମିକାରେ ଅବତୀର୍ଣ୍ଣ

ହୋଇଥିଲେ । ତାହା ଥିଲା ପାଶ୍ଚାତ୍ୟ ସଭ୍ୟତାରେ ପରିପୁଷ୍ଟ ଗୋଟିଏ ଡାକ୍ତରର ଭୂମିକା । ତାଙ୍କର ଅଭିନୟ ଏତେ ନିଖୁଣ ଥିଲା ଯେ ତାଙ୍କୁ ନାରୀ ଭୂମିକାରେ ଦେଖିଥିବା ଲୋକ ଆଦୌ ବିଶ୍ୱାସ କରିପାରିବ ନାହିଁ । ମୁଁ ସେହି ବହିରେ ପାର୍ଶ୍ୱନାୟିକା ଭାବରେ ଅଭିନୟ କରିଥିଲି । ନିର୍ଦ୍ଦେଶକ ବଲାଇଚାନ୍ଦ ବାନାର୍ଜ୍ଜୀଙ୍କ ନିର୍ଦ୍ଦେଶନାରେ ଓ ନାଟ୍ୟଚାର୍ଯ୍ୟ ଅଶ୍ୱିନୀ କୁମାର ଘୋଷଙ୍କ ନାଟକ 'ମାଷ୍ଟର ବାବୁ', 'ଗୋବିନ୍ଦ ବିଦ୍ୟାଧର' ଓ 'କୋଣାର୍କ' ରେ ସେ ମୋ ସହିତ ଅଭିନୟ କରିଥିଲେ । 'କଳାପାହାଡ' ଭୂମିକାରେ ସେ ଚରମ ଉତ୍କର୍ଷତା ପ୍ରତିପାଦିତ କରିପାରିଥିଲେ । ଏତଦ୍‌ଭିନ୍ନ 'P.W.D.', 'ସେଓଜୀ', 'ସାବିତ୍ରୀ', 'କେଶରୀଗଙ୍ଗ', 'ଆଲିବାବା' ଇତ୍ୟାଦି ବହିରେ ମଧ୍ୟ ଅତି ଉଚ୍ଚକୋଟୀର ଅଭିନୟ କରିଥିଲେ ।

'କୋଣାର୍କ' ଓଡ଼ିଆ ନାଟକ ଜଗତର ଏଭଳି ଏକ ଆଲେଖ୍ୟ ଯାହାର କୌଣସି ବିକଳ୍ପ ଏଯାଏଁ ସୃଷ୍ଟି ହୋଇ ପାରିନାହିଁ । ଅଶ୍ୱିନୀ କୁମାର ଘୋଷଙ୍କର ଏହି ନାଟକରେ ମୁଁ ନାୟକ 'ଧରମା' ଭୂମିକାରେ ଅଭିନୟ କରି ଜୀବନର ଶ୍ରେଷ୍ଠ ପରିତୃପ୍ତି ଲାଭ କରିଛି । ମାଷ୍ଟର ମାଣିଆ ମୋ ସହ ବିଶୁ ମହାରଣା ଭୂମିକାରେ ଓ କେବେ ମଧ୍ୟ ନାୟିକା 'ସର'ର ମାଆ ଭୂମିକାରେ ଅଭିନୟ କରିଥିଲେ ।

ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ରେ ମାଣିକଯୋଡ଼ି, ମହାପଥର ଯାତ୍ରୀ ଓ ଶ୍ରୀମନ୍ଦିର ପ୍ରଭୃତି ନାଟକରେ ଅଭିନୟ କରି ସେ ଯଥେଷ୍ଟ ପ୍ରଶଂସାଭାଜନ ହୋଇଥିଲେ । ସମ୍ଭବତଃ ୧୯୫୫ ମସିହାରେ ଲିଙ୍ଗରାଜ ପାଣିଗ୍ରାହୀଙ୍କ ପତ୍ନୀ 'କୋଣାର୍କ' ନାଟକ ଦେଖିବାକୁ ଇଚ୍ଛା କରିବାରୁ ଉକ୍ତ ନାଟକଟି ପ୍ରଦର୍ଶିତ ହୋଇଥିଲା । ସେଇ ନାଟକରେ ମାଷ୍ଟର ମାଣିଆଙ୍କ ସହ ମୁଁ ଶେଷଥର ପାଇଁ ଅଭିନୟ କରିଥିଲି ।

କେବଳ ଅଭିନୟରେ ସେ ସମସ୍ତଙ୍କର ପ୍ରିୟ ଥିଲେ, ତା ନୁହେଁ ତାଙ୍କର ବ୍ୟବହାର ଅତ୍ୟନ୍ତ ଭଲ ଥିଲା । ସେ ଖୁବ୍ ସ୍ନେହୀ ମଣିଷ ଥିଲେ । ମୋର ମନେପଡେ, ପ୍ରାୟ ୧୯୩୦/୩୧ରେ ସେତେବେଳେ ଆମର ପାର୍ଟି ସମ୍ବଲପୁରରେ ଥାଏ । ମୋତେ ଭୀଷଣ ଜ୍ୱର ହେଲା । ମୁଁ ବିଛଣାରୁ ଉଠିପାରୁନଥାଏ । ମାଷ୍ଟର ମାଣିଆ ଅହୋରାତ୍ର ମୋର ସେବା କରୁଥିଲେ । ଏମିତି କି ନାଟକ ଚାଲିଥିବା ସମୟରେ ଟିକିଏ ସମୟ ପାଇଲେ ଆସି ମୋତେ ଦେଖିଯାଉଥିଲେ । ତାଙ୍କର ସ୍ନେହପୂର୍ଣ୍ଣ ସେବାଯତ୍ନରେ ମୁଁ ଆରୋଗ୍ୟ ଲାଭ କରିଥିଲି । ସେ ମିଷ୍ଟଭାଷୀ,ଅମାୟିକ ଅହଂକାରବର୍ଜ୍ଜିତ, ଉଦାରଚେତା ମଣିଷ ଥିଲେ । ବାଦ୍ୟଯନ୍ତ୍ରରେ ତାଙ୍କର ଖୁବ୍ ଦକ୍ଷତା ଥିଲା । ତବଲା, ଖୋଳ,

କ୍ଲାରିଓନେଟ୍, ହାରମୋନିୟମ୍ ଭଲ ବଜାଇ ପାରୁଥିଲେ । ନାଚ, ଗୀତ ଓ ଅଭିନୟରେ ମଧ୍ୟ ତଦନୁରୂପ ଦକ୍ଷତା ଥିଲା । ଓଡ଼ିଶାରେ ରଙ୍ଗମଞ୍ଚର ପାଦପ୍ରଦୀପ ପ୍ରତିସନ୍ଧ୍ୟାରେ ପ୍ରଜ୍ୱଳିତ ହେଉ ଏଥିପାଇଁ ସେ ପ୍ରାଣପାତ ଉଦ୍ୟମ ମଧ୍ୟ କରିଥିଲେ । 'ବନମାଳୀ ଆର୍ଟ ଥିଏଟର'ର ରକ୍ଷଣା ବେକ୍ଷଣ ଓ ପରିଚାଳନା ପାଇଁ ସେ ନିଜ ହାତରୁ ଅର୍ଥ ଶ୍ରାଦ୍ଧ ମଧ୍ୟ କରିଥିଲେ । ପରବର୍ତ୍ତୀ ସମୟରେ 'ଅନ୍ନପୂର୍ଣ୍ଣା ଏ ଗ୍ରୁପ୍' ଓ 'ରାଧାକୃଷ୍ଣ ଥିଏଟର୍' ପାଇଁ ମଧ୍ୟ ଅନେକ ତ୍ୟାଗ ସ୍ୱୀକାର କରିଛନ୍ତି । ରଙ୍ଗମଞ୍ଚ ବଞ୍ଚିରହୁ, କଳାକାର ବଞ୍ଚିରହନ୍ତୁ, ଏହାହିଁ ତାଙ୍କର ଐକାନ୍ତିକ ଇଚ୍ଛାଥିଲା ।

ତାଙ୍କ ମୃତ୍ୟୁର ପ୍ରାୟ ମାସକ ପୂର୍ବରୁ ସେ ମୋ ଘରକୁ (ପିପିଲି) ଆସିଥିଲେ । ସେତେବେଳେ ଅନେକ ଅସୁବିଧା ମଧ୍ୟରେ ମୁଁ ମୋ ସିନେମାହଲର ପରିଚାଳନା କରୁଥାଏ । ମୋର ଉଦ୍ୟମ ତାଙ୍କୁ ଆନନ୍ଦ ଦେଇଥିଲା । ସେଦିନ ସନ୍ଧ୍ୟାରେ ସେ ଦର୍ଶକମାନଙ୍କୁ ଉଦ୍‌ବୋଧନ ଦେଇ ମୋ ଉଦ୍ୟମକୁ ପ୍ରଶଂସା କରିଥିଲେ । ତାଙ୍କର ଶିଷ୍ୟ(ମୁଁ) ଯେ ବହୁ ବାଧାବିଘ୍ନ ମଧ୍ୟରେ କଳାକୁ ଜୀବନ ଓ ଜୀବିକା ଭାବରେ ଗ୍ରହଣ କରି ବଞ୍ଚିଛି, ସେଥିପାଇଁ ଭାଷଣ ମାଧ୍ୟମରେ ମୋତେ ଅଭିନନ୍ଦିତ କରିଥିଲେ ।

ମାଷ୍ଟର ମାଣିଆଙ୍କୁ ପୁଣିଥରେ ମୋ ଘରକୁ ଆଣିବାକୁ ମୋର ପ୍ରବଳ ଇଚ୍ଛା ଥିଲା । ମାତ୍ର ତାହା ପୂରଣ ହୋଇ ପାରିଲା ନାହିଁ । ସେପାରିର ଡାକରା ପାଇ ସେ ଚାଲିଗଲେ । ତାଙ୍କ ମୃତ୍ୟୁ ଓଡ଼ିଶା ନାଟ୍ୟଜଗତର ଏକ ଅପୂରଣୀୟ କ୍ଷତି ଘଟାଇଛି । ଦେବୋପମ ଗୁରୁ ମହାଶୟଙ୍କ ଅନୁପସ୍ଥିତିରେ ମୋର ଅନ୍ତର୍ଦାହ ମୁଁ ଅନୁଭବ କରୁଛି । ତାଙ୍କର ଅମର ଆତ୍ମା ଆମ୍ଭମାନଙ୍କ ପ୍ରତି ଶୁଭ ଦୃଷ୍ଟି ରଖୁ ଏବଂ ଉତ୍କଳରେ କଳାର ବିକାଶ ଘଟୁ, ଏହାହିଁ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।



## ଉତ୍କଳ ନାଟ୍ୟ ଜଗତର ପ୍ରଖ୍ୟାତ ଅଭିନେତା, ଆଜୀବନ କଳାକାର, ଅଭିନୟପଟୁ
## ଶ୍ରୀ ରାମଚନ୍ଦ୍ର ମାଣିଆଙ୍କ କରକମଳେଷୁ

**ଅଭିନେତା ବରେଣ୍ୟ**

ନାଟ୍ୟଜଗତର ରୂପେଲି ପରଦା, ବାଦ୍ୟଯନ୍ତ୍ରର ମର୍ମସ୍ପର୍ଶୀ ମୂର୍ଚ୍ଛନା ସର୍ବୋପରି ମଧୁର ଅବଷେନୀ, କି ଅଜଣା ଇଙ୍ଗିତ ଆପଣଙ୍କୁ ଦେଲା କେଜାଣି, ତାହାରି ଅକୁହା ଆହ୍ୱାନରେ ଆପଣଙ୍କର ଲଳିତ ଅଭିନୟ-କଳା ନମନୀୟ ହୋଇ ନାଟ୍ୟ-କାନନରେ ସହସ୍ର ପାରିଜାତର ଗନ୍ଧ ଛୁଟାଇ ଦର୍ଶକମାନଙ୍କର ମନ ହରଣ କଲା । ଫଳରେ ନିରବଚ୍ଛିନ୍ନ ଭାବେ କଳାର ଜନୈକ ଶ୍ରେଷ୍ଠ ସାଧକ ତଥା ପୁରୋଧା ହିସାବେ ଆଜୀବନ ହୃଦୟରେ ଆନନ୍ଦର ଉତ୍ସ ଖେଳାଇ "ମାଷ୍ଟର ମାଣିଆ" ନାମରେ ଉତ୍କଳର ପ୍ରତ୍ୟେକ ଅଭିନୟ ଦର୍ଶନେଚ୍ଛୁଙ୍କ ତୁଣ୍ଡରେ ନାମିତ ହେଲେ । ଧ୍ୱଂସର ପ୍ରତୀକ 'କଳାପାହାଡ଼'ର ପ୍ରଳୟଙ୍କରୀ ମୂର୍ତ୍ତି, ଖୋରଧା ପାଇକ ବିଦ୍ରୋହ କୁଳତିଳକ 'ବକ୍ସି ଜଗବନ୍ଧୁ'ର ବୀର, ତେଜ, ସାହସ, ଦମ୍ଭ ସହ ପୁଣି ବାତ୍ସଲ୍ୟ-ମମତାଭରା 'ବିଶୁ ମହାରଣା'ର ଅନ୍ତର; ପୁଣି ଦାନୀ 'ହରିଶ୍ଚନ୍ଦ୍ର'ଙ୍କ ଧୌର୍ଯ୍ୟସହ 'ପହିଲିରଜ'ର ପୂତାତ୍ମା, ଠାକୁରଙ୍କ ଦାସ ବା 'ଠାକୁରଦାସ' ଇତ୍ୟାଦି ଭୂମିକାରେ ଆପଣଙ୍କର ସ୍ୱଭାବ ସୁଲଭ ଗାମ୍ଭିର୍ଯ୍ୟଭରା ଠାଣି ସହ ଦାନଶୀଳତା ତଥା ଧାର୍ମିକତାର ନିଖୁଣ ଅଭିନୟର ପୂରା ରୂପରେଖ ଦେଖିବାକୁ ମିଳେ ।

**ହେ କଳାକାର ଅଗ୍ରଗଣ୍ୟ !**

ଆପଣଙ୍କର କଳାସୌଷ୍ଠବର ପ୍ରକୃତ ମୂଲ୍ୟ କଳାପ୍ରେମୀ ଉତ୍କଳ ଭାଇମାନେ ଏବେ ସୁଦ୍ଧା ଆପଣଙ୍କୁ ଦେଇ ପାରି ନାହାନ୍ତି କି ଭବିଷ୍ୟତରେ ଯେ ଦେବେ, ସନ୍ଦେହ । ହେଲେ ସୁଦ୍ଧା ଜଗଦୀଶଙ୍କ ମହତ କୃପାରେ ଆପଣ, ଜୀବନ ଥିବା ପର୍ଯ୍ୟନ୍ତ ଏହି କଳାପ୍ରେମୀ ଭାଇମାନଙ୍କୁ ଆନନ୍ଦରସରେ ରସାଉ ଥାଆନ୍ତୁ- ଏହାହିଁ କମନା । ନମସ୍କାର ।

ଆପଣଙ୍କର
ରାଇରଙ୍ଗପୁର-ସାହିତ୍ୟ-ସଂସଦ-ସଭ୍ୟବୃନ୍ଦ

ତା ୨୭।୨।୧୯୫୫ ସାଲ
ରାଇରଙ୍ଗପୁର
ଜିଲ୍ଲାଃ ମୟୂରଭଞ୍ଜ

# ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ

## ଶ୍ରୀଯୁକ୍ତ ରାମଚନ୍ଦ୍ର ମାଣିଆ

ମହାଶୟ,

ଉତ୍କଳର ନବ-ନାଟ୍ୟ ଆନ୍ଦୋଳନରେ ଆପଣ ଜଣେ ପ୍ରଧାନ ପୁରୋଧା । ଜଣେ ସୁଦକ୍ଷ ଅଭିନେତା, ନିର୍ଦ୍ଦେଶକ ଓ ନାଟ୍ୟଗୁରୁ ଭାବରେ ଉତ୍କଳୀୟ ରଙ୍ଗମଞ୍ଚକୁ ଆପଣଙ୍କର ଅବଦାନ ଅବିସ୍ମରଣୀୟ । ଐତିହାସିକ ଓ ପୌରାଣିକ ନାଟକରେ ଆପଣଙ୍କର ପ୍ରାଣବନ୍ତ ଅଭିନୟ ବହୁବର୍ଷ ଧରି ଓଡ଼ିଶାବାସୀଙ୍କୁ ମୁଗ୍ଧ ଓ ଚକିତ କରିଛି । ଉତ୍କଳୀୟ ରଙ୍ଗମଞ୍ଚର ବହୁ କଳା କୁଶଳୀ ଅଭିନେତା ଓ ଅଭିନେତ୍ରୀ ଆପଣଙ୍କ ଦ୍ୱାରା ପ୍ରଶିକ୍ଷିତ । ରଙ୍ଗମଞ୍ଚରେ ଆପଣଙ୍କ ତ୍ୟାଗପୂତ ଜୀବନ ଯେକୌଣସି କଳାକାରର ଆଦର୍ଶ ।

ଓଡ଼ିଶାର ନାଟ୍ୟଜଗତକୁ ଆପଣଙ୍କର ସ୍ମରଣୀୟ ଅବଦାନ ନିମନ୍ତେ, ଆଜି ଏହି ଶୁଭ ଅବସରରେ, ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ଆପଣଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

ଭୁବନେଶ୍ୱର
୨୬-୧୦-୧୯୭୨

ନନ୍ଦିନୀ ଶତପଥୀ
ସଭାପତି

# ଶ୍ରୀଯୁକ୍ତ ରାମଚନ୍ଦ୍ର ମାଣିଆଁଙ୍କୁ ଉତ୍ତରାୟଣୀ କ୍ଲବ୍ ତରଫରୁ ଅଭିନନ୍ଦନ

ମହାଶୟ,

ଓଡ଼ିଶାର ରଙ୍ଗମଞ୍ଚ ତଥା ଅଭିନୟ କଳାର ବିକାଶ ତଥା ପ୍ରସାର ଦିଗରେ ଆପଣଙ୍କର ଆଜୀବନ ସାଧନା ଓ ଅବଦାନ ଆଜି ସ୍ୱୀକୃତି ଲାଭ କରିଛି । ଆପଣଂକ ପ୍ରତିଭାର ସୌରଭ ଏକ ସୀମିତ ପଣ୍ଡୀରୁ ଅତିକ୍ରାଂତ ହୋଇ ରାଜ୍ୟବ୍ୟାପୀ ପ୍ରକଟିତ ହୋଇଛି । ଆଜି ଆପଣ ସାରା ଓଡ଼ିଶାର ଗୌରବ ।

ବିଂଶ ଶତାବ୍ଦୀର ପ୍ରାରଂଭରୁ ଶହ ଶହ ନାଟକରେ ଆପଣ ପୁରୁଷ ତଥା ନାରୀ ଭୂମିକାରେ ଅଭିନୟ କରି ଚରମ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ଶହ ଶହ ନାଟକ ଆପଣଂକ ବଳିଷ୍ଠ ନିର୍ଦ୍ଦେଶନାରେ ଜୀବନ୍ତ ତଥା ଲୋକପ୍ରିୟ ହୋଇ ପାରିଛି । ଫଳରେ ଆପଣ ଆଜି ଓଡ଼ିଶା ସରକାରଂକ ତରଫରୁ ଅଭିନନ୍ଦିତ ହୋଇଛନ୍ତି । ଏହି ସୁଯୋଗରେ, ଯେଉଁ କ୍ଲବ ସହିତ ଆପଣ ଆଜୀବନ ସଂଯୁକ୍ତ, ସେହି ଉତ୍ତରାୟଣୀ କ୍ଲବ୍ ତରଫରୁ ଆପଣଂକୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇଁ ଅନୁଗୃହୀତ ହେଉଛି ।

୧୯.୧୦.୬୨

ସଭାପତି
ଉତ୍ତରାୟଣୀକ୍ଲବ
କଟକ

Utkal Chala Chitra Pratisthan (PRIVATE) Ltd.

ASKA : ORISSA

Ref. 192/61 Date 20-6-1961

Kaviraj K.C. TRIPATHY SHARMA L.A.M.S
MANAGING DIRECTOR

ଶ୍ରୀମାନ୍ ମାଷ୍ଟର ମାଣିଆ
ରେଙ୍ଗଲ

ପ୍ରିୟ ମହାଶୟ,

ଆପଣଙ୍କ ସ୍ନେହ, ସୌହାର୍ଦ୍ଦ୍ୟ ଓ ସହଯୋଗରୁ 'ରତ୍ନାକର' ଛବି ରିଲିଜ୍ ହୋଇ ପାରିଛି । ଆପଣ ଏଥିରେ ଯେଉଁ ଅଭିନୟ କରିଛନ୍ତି, ତାହା ଆଶାତୀତ ସଫଳ ହୋଇଥିବାରୁ ମୁଁ ଚଳଚ୍ଚିତ୍ର ପ୍ରତିଷ୍ଠାନ ତରଫରୁ ଆପଣଙ୍କୁ ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଛି । ଭଗବାନ କରନ୍ତୁ, ଆପଣ ଭବିଷ୍ୟତରେ ଜଣେ ଉଚ୍ଚକୋଟିର ଅଭିନେତା ହୋଇ ଓଡ଼ିଆ ଜାତର ଟେକ ରଖନ୍ତୁ । ଚଳଚ୍ଚିତ୍ରର ଭବିଷ୍ୟତ ଚିତ୍ରମାନଙ୍କରେ ଆପଣଙ୍କ ସକାଶେ ଆମେ ସଜାଗ ରହିବୁ । ଅନୁରୋଧ, ଆପଣ ନିକଟତମ ପ୍ରେକ୍ଷାଳୟ ମାନଙ୍କୁ ଯାଇ ଆମର 'ରତ୍ନାକର' ଛବି ଦେଖି ଆସିବେ । ଏହି ପତ୍ରଟି ପ୍ରେକ୍ଷାଳୟରେ ଥିବା ଆମର ରିପ୍ରେଜେଣ୍ଟେଟିଭ୍‌ଙ୍କୁ ସକାଳ ଓଳା ଦେଖାଇଲେ ସେ ଆପଣଙ୍କ ସକାଶେ ୩ ଖଣ୍ଡ ପାସ୍ ଠିକଣା କରିଦେବେ । ମୋର ଦେହ ଅସୁସ୍ଥ ଥିବାରୁ ପତ୍ର ଦେବାରେ ଡେରିହେଲା । ଏଥିଦ୍ୱାରା ଆପଣଙ୍କ ଦାନ ସକାଶେ କୃତଜ୍ଞତା ଜ୍ଞାପନ କରୁଛି ।

ଇତି
ଆପଣଙ୍କର ମଙ୍ଗଳାକାଂକ୍ଷୀ

ଶ୍ରୀ କୃଷ୍ଣ ଚନ୍ଦ୍ର ତ୍ରିପାଠୀ

# ଅଭିନନ୍ଦନ

ଉତ୍କଳ ରଙ୍ଗ ଜଗତର

ଅପ୍ରତିଦ୍ୱନ୍ଦୀ-ଅପରାଜେୟ-ଅଭିନେତା

ଶ୍ରୀଯୁକ୍ତ ରାମଚନ୍ଦ୍ର ମାଣିଆ

ସୁହୃଦୟେଷୁ

ନଟଗୁରୁ,

କବିତା-କାରୁ-କୁଶଳା-କଳା-କଳିଙ୍ଗ -ନାଟ୍ୟ-ଶାଳା
ରଙ୍ଗ-ଶାଳାର, କିଶୋର ବୟସୁ ଆଜୀବନ କଳାସେବୀ
ଅପ୍ରତିଦ୍ୱନ୍ଦୀ ଅଭିନେତା, ଘେନ ବିଜୟ ମାଳା
ଅଭିନନ୍ଦନ-ସ୍ୱାଗତ-ଗୀତି ଛନ୍ଦେ ପ୍ରଣମେ କବି ।
ତୁମେ କିମିତି ସୁରେ ବଜାଅ ବୀଣା, କିମିତି ଛନ୍ଦେ ନାଚ
ମତେ ଯେ ଆହା ଲାଗଇ ଭଲ, ଲାଗଇ ଆଚମିତ,
ତୁମେ କିମିତି ଢ଼ଙ୍ଗେ ଭଙ୍ଗୀ କରି ରଙ୍ଗ ସତେ ରଚ !
(ମୁ) ନିଜକୁ ଭୂଲି ଆମ୍ଭହରା ତୁମଠି ହୁଏ ମିତ
ଉତ୍କଳର ଅପରାଜେୟ ନାଟ
ଦେଶେ ଦେଶେ ଆଜି ତୁମରି କଳାର ଜୟ-ବାଣୀ ପ୍ରକଟ !
ପ୍ରଗତି ଶୀଳ ରଙ୍ଗ ଜଗତ ସାଥିରେ ଏକା ଆଜି
ଆମରି ଦେଶେ ଚଳାଇବାକୁ ସମାନ ଛନ୍ଦ ତାଳେ
ପ୍ରତୀତ ଯଶା ହେ ନଟରାଜ, ତୁମରି ଲୋଡ଼ା ଅଛି
ତୁମରି କଳା ନିର୍ଦ୍ଦେଶହିଁ ଲୋଡ଼ା ଏକ ଉତ୍କଳରେ !
ନଟଶିରୋମଣି ପୂଜ୍ୟ
(ତୁମେ) ବଜାଅ ବଜାଅ ଅନାଗତ କଳା-ଯୁଗର ବିଜୟତୂର୍ଯ୍ୟ
ତୁମେ ଗାଇଯାଅ
ମତ୍ତ ବିଭୋରେ ତୁମେ ନାଚିଯାଅ
(ରଚି) ଅନୁପମ ଅଭିନୟ
କବିକୁହେ ଦେଶେ ମନ୍ଦ୍ରିତ ହେଉ ତୁମରି କଳାର ଜୟ !

ଇତି

ଜାମସେଦପୁର
୨୦-୩-୩୯

ତୁମର, ଅଭିନୟ କଳା ମୁଗ୍ଧ
ଶ୍ରୀ ଲକ୍ଷ୍ମୀଧର ନାୟକ

# ଅଭିନନ୍ଦନ ପତ୍ର

ଉତ୍କଳ-ନାଟ୍ୟ କଳାର ସୁନିପୁଣ ଶିଳ୍ପୀ, ଆଜୀବନ କଳାସେବୀ, ନବୀନ ଉତ୍କଳର ପ୍ରଖ୍ୟାତ ଯଶା ଅଭିନେତା, ନାଟ୍ୟ ଶ୍ରେଷ୍ଠ ଶ୍ରୀ ରାମଚନ୍ଦ୍ର ମାଣିଆଙ୍କ ଶ୍ରୀ କରକମଳେଷୁ -

ସମ୍ମାନାସ୍ପଦ ନାଟ୍ୟଶିଳ୍ପୀ,

ଆପଣଙ୍କ ପରି ଜଣେ ଶ୍ରେଷ୍ଠ ନାଟ୍ୟ ଶିଳ୍ପୀଙ୍କୁ ଅଭିନନ୍ଦିତ କରିବା ପାଇଁ ଯଥାଯୋଗ୍ୟ ସାମଗ୍ରୀର ଅଭାବରେ ଆମ୍ଭେମାନେ ନିଜକୁ ସଂକୋଚିତ ମନେ କରୁଛୁ । କେବଳ ହୃଦୟର ଅନ୍ତରତମ ପ୍ରଦେଶର ଅନାବିଳ ଭକ୍ତି ଛଡ଼ା, ଆମ୍ଭମାନଙ୍କର ଅନ୍ୟ କିଛି ସମ୍ବଳ ନାହିଁ । ସେହି ଭକ୍ତି-କୁସୁମ-ହାରରେ ଆପଣଙ୍କୁ ଆଜି ଏହି ବିରାଟ ଜନତା ଆଗରେ ଅଭିନନ୍ଦିତ କରିବାକୁ ଯାଇ, ଆମ୍ଭେମାନେ ନିଜକୁ ଗୌରବାନ୍ୱିତ ମନେ କରୁଛୁ ।

କଳା-ବିଭବ-ପୂର୍ଣ୍ଣ ଓଡ଼ିଶାରେ ନାଟ୍ୟ କଳା ଯେତେବେଳେ ମୁମୂର୍ଷୁ ଅବସ୍ଥାରେ, ସେତେବେଳେ ଆପଣ, ଆପଣଙ୍କ ସହ-ଶିଳ୍ପୀମାନଙ୍କ ସହଯୋଗରେ ପ୍ରତିଷ୍ଠା କଲେ 'ରାଧାକୃଷ୍ଣ-ଥିଏଟର୍' । ଏହି ଥିଏଟର ଓଡ଼ିଆ ଜାତିର ସୁପ୍ତ ପ୍ରାଣରେ ଜାଗ୍ରତ କଲା ନାଟ୍ୟ କଳାର ଅପୂର୍ବ ସ୍ପନ୍ଦନ, ଜାତିର ଜଡ଼ ଅବସ୍ଥାର ହେଲା ଅବସାନ । ଏହି ପ୍ରତିଭା-ପୀଠରେ ଆସି ଠୁଳ ହେଲେ ବହୁ ସୁନିପୁଣ କଳାପ୍ରେମୀ ନଟ-ସେନା ଆପଣଙ୍କ ସେନାପତିତ୍ୱରେ ପରିଚାଳିତ ହେଲା ଏହି ବିରାଟ-ନଟ-ସେନା-ବାହିନୀ ।

ଉତ୍ଥାନ ପରେ ପତନ ଜଗତର ନିୟମ । ରାଧାକୃଷ୍ଣ ଥିଏଟର ଭଗ୍ନାବଶେଷ ଉପରେ ପୁଣି ଗଢ଼ିଉଠିଲା 'ଉତ୍କଳ ଆର୍ଟ-ଥିଏଟର୍' । ଗୋଟିକ ପରେ ଗୋଟିଏ କଳାନୁରାଗୀ ଏହି ଅନୁଷ୍ଠାନର ନଟ-ସେନା ଶ୍ରେଣୀଭୁକ୍ତ ହେଲେ । ସୈନିକମାନଙ୍କର ଶିକ୍ଷାଭାର ବହନ କରି ଆପଣ ନାଟ୍ୟ କଳାର ଯେଉଁ ସମୁଜ୍ଜ୍ୱଳ ଭବିଷ୍ୟତ ଗଠନ କଲେ, ତାର ଆଲୋକରେ ଉଦ୍ଭାବିତ ହୋଇ ଅତି ଅଳ୍ପ ମସୟ ମଧ୍ୟରେ ସୁଶିକ୍ଷିତ ଏବଂ ସୁସଂଗଠିତ ନଟ-ସେନା ଉତ୍କଳର ତତ୍କାଳୀନ ନରପତିମାନଙ୍କଠାରୁ ଆରମ୍ଭ କରି ଦରିଦ୍ରତମ କୃଷକ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରାଣରେ ସୃଷ୍ଟି କରି ଥିଲେ ପ୍ରଶଂସା-ଦିପ୍ତ ଅଦ୍‌ଭୁତ କଳା-ସ୍ପନ୍ଦନ, ଯଶୋଗୀତିର ମଧୁର ମୂର୍ଚ୍ଛନାରେ ଉତ୍କଳ-ପ୍ରକୃତି ମୁଖରିତ ହୋଇ ଉଠିଲା ।

କାଳର କୁଟିଳ କଟାକ୍ଷଘାତ ଜନିତ ଆର୍ଟ ଥିଏଟରର ବିଲୟ ଉପରେ ଅର୍ଣ୍ଣପୂର୍ଣ୍ଣାର ହେଲା ଅଭ୍ୟୁଦୟ । ସେହି ଜାଗୃତି ଉପରେ ଆପଣଙ୍କ ସୁବିମଳ ପ୍ରତିଭାର ଆଲୋକପାତ କରି କଳାର ବିକାଶ ଦିଗରେ ଆପଣ ଯେଉଁ ଉଦ୍ୟମ କରିଛନ୍ତି ତାହା ଚିର ଅବିସ୍ମରଣୀୟ । ଆପଣଙ୍କ ସଦୁଦ୍ୟମ ଯେ ଓଡ଼ିଶା ଇତିହାସରେ ଗୋଟିଏ ଗୌରବମୟ ଅଧ୍ୟାୟର ସୃଷ୍ଟି କରିଛି, ଏଥିରେ ସନ୍ଦେହର ଅବକାଶ ନାହିଁ ।

ପ୍ରାକୃତିକ ଉତ୍କଳର ବହୁଜନ-ପ୍ରଶଂସିତ 'ଶ୍ରୀ ଜଗନ୍ନାଥ' ଚିତ୍ରରେ ଆପଣ ବିଶ୍ୱାବସୁ ଭୂମିକାରେ ଯେପରି ପ୍ରାଣବନ୍ତ ଅଭିନୟ କରିଛନ୍ତି ତାହା ଚିତ୍ରାମୋଦିମାନଙ୍କ ମଧ୍ୟରେ ଆପଣଙ୍କ ବ୍ୟକ୍ତିତ୍ୱକୁ ବିରାଟ ଆକାରରେ ରୂପାୟିତ କରିଛି ।

ଚାରୁକଳା ଓ ଶିଳ୍ପ ସ୍ଥାପତ୍ୟର ଅତୀତ ବିଭବ-ଦୃପ୍ତ କୀର୍ତ୍ତି-କୁଶଳା ଉତ୍କଳର ଅଧୁନାତନ ଦୂରାବସ୍ଥାର ଅନ୍ଧକାର ଭିତରେ ଆପଣଙ୍କ ପ୍ରତିଭାର ଜାଜ୍ୱଲ୍ୟମାନ ଶିଖା ଚରିଦିନ ଦେଦିପ୍ୟମାନ ରହି ଉତ୍କଳର ଭବିଷ୍ୟଦ୍ ସମୁଜ୍ଜ୍ୱଳ କରିବ ଏହି ବିଶ୍ୱାସରେ ଜାତି ଆଜି ଆଶାୟିତ ।

କଳାବୃଦ୍ଧ ହେ ମହାଭାଗ ! ଆଜି ଜୀବନ ସନ୍ଧ୍ୟାର ଅମ୍ଳାନ ହେମାଲୋକରେ ଉଦ୍ଭାସିତ ହୋଇ ଆଶୀର୍ବାଦ କରନ୍ତୁ, ଜାତିର ଏ ବିରାଟ ଆଶା ଯେପରି ସାଫଲ୍ୟମଣ୍ଡିତ ହୋଇ ସୃଷ୍ଟି କରିବ ଗୌରବର ଅଭିନବ କୋଣାର୍କ ।

ଭଞ୍ଜନଗର
ତା ୧୭।୬।୫୧ ରିଖ ।

ଭବଦୀୟ ଗୁଣମୁଗ୍ଧ
ଘୁମୁସରର କଳାପ୍ରେମୀ-ଜନସାଧାରଣ

"ପୂର୍ବ ପୁରୁଷଙ୍କ ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ ଜଳେ ତନୁକ୍ଷୟ
ମାନବ ଜୀବନ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ?"

-ଉତ୍କଳମଣି

ରଙ୍ଗମଞ୍ଚ ଓ ନାଟକାଭିନୟ ହିଁ
ଗୋଟିଏ ଜାତିର ପ୍ରକୃତ ପରିଚୟ ଦେଇଥାଏ ।

ନିଜ ଦୋଷ ମୁହିଁ ନିଜେ ପାରେ ଦେଖି
ପରଗୁଣତକ ହୃଦେ ପାରେ ଲେଖି ।
ନୂଆ ନୂଆ କଥା ଶିଖିବା ସକାଶେ
ସହି ଶିଖେ ସବୁ ଯାତନା ॥
ମାନବ ପରାଣେ ଦେଖେ ମୁଁ ଦେବତା ।
ମାନବ ଚରଣେ ଲୋଟୁ ମୋର ମଥା ।
ବନଫୁଲ ପରି ଝରିପଡେଁ ଏଠି
ବନ୍ଧୁ ବାନ୍ଧବଙ୍କ ଅଜଣା

ଜାତୀୟ କବି ବୀର କିଶୋର



# ମାଷ୍ଟର ରାମଚନ୍ଦ୍ର ମାଣିଆ

*ଆବିର୍ଭାବ : ୧୫.୦୮.୧୮୯୨* *ତିରୋଧାନ : ୦୫.୦୨.୧୯୭୮*

## ଫଟୋ ପରିଚୟ


- ନାତି-ନାତୁଣୀ, ଝିଅ-ବୋହୂ ଓ କ୍ଷାଇଁଙ୍କ ସହ ମାଷ୍ଟର ମାଣିଆ (୧୯୬୮) : ପୃଷ୍ଠା ୩୦
- ଅଶ୍ୱିନୀ କୁମାର ଘୋଷଙ୍କ ସାଲବେଗ ନାଟକରେ ମାଷ୍ଟର ମାଣିଆ ଓ ମା' ଚରିତ୍ରରେ କାର୍ତ୍ତିକ କୁମାର ଘୋଷ : ପୃଷ୍ଠା ୩୬
- ଅରାଗଡ଼ ପାହାଡ ଉପର ଦ୍ୱିତଳ ବୌଦ୍ଧ ସ୍ତୂପ : ପୃଷ୍ଠା ୫୦
- ରୂପଭାରତୀ ନିବେଦିତ ଓଡ଼ିଆ ଚଳଚ୍ଚିତ୍ର 'ଶ୍ରୀଜଗନ୍ନାଥ'ରେ 'ବିଶ୍ୱାବସୁ' ଚରିତ୍ରରେ ମାଷ୍ଟର ମାଣିଆ : ପୃଷ୍ଠା ୫୯
- ସାଲବେଗ ନାଟକର ଏକ ଦୃଶ୍ୟ । ସାଲବେଗ ଭୂମିକାରେ ମାଷ୍ଟର ମାଣିଆ ଓ ଲାଲବେଗ ଭୂମିକାରେ ଯତୀନ୍ଦ୍ର ମୋହନ ମୁଖର୍ଜୀ : ପୃଷ୍ଠା ୬୯
- ଅରାଗଡ ପାହାଡର ଏକ ଦୃଶ୍ୟ : ପୃଷ୍ଠା ୯୯
- ଅରାଗଡ ପାହାଡ ତଳୁ ମିଳିଥିବା ବୌଦ୍ଧ ଯୁଗୀୟ ମୂର୍ତ୍ତି- ହରିପୁର ଗ୍ରାମରେ ସଂରକ୍ଷିତ । : ପୃଷ୍ଠା ୧୦୨
- ଅରାଗଡ ପାହାଡର ଏକ ଦୃଶ୍ୟ : ପୃଷ୍ଠା ୧୧୨

(ମାଷ୍ଟର ମାଣିଆଙ୍କ ନାତି ଶିଳ୍ପୀ ଶ୍ରୀ ଚିନ୍ତାମଣି ବେହେରାଙ୍କ ଦ୍ୱାରା ଅଙ୍କିତ)


ଏହି ପୁସ୍ତକରେ ପ୍ରତିଫଳିତ ମତାମତ ସଂପୃକ୍ତ ଲେଖକଙ୍କର ସବୁସ୍ଥଳରେ ସଂସଦର ନୁହେଁ । ମୁଦ୍ରଣର ଶେଷ ପର୍ଯ୍ୟାୟରେ କେତେକ ଅନିଚ୍ଛାକୃତ ତୃଟୀ ପରିଲକ୍ଷିତ ହୋଇଥିବାରୁ ଆମେ ଦୁଃଖିତ ।



## ଶ୍ରୀ ନଟବର ସେଣ

ଓଡ଼ିଶାର ବ୍ୟବସାୟୀକ ରଙ୍ଗମଞ୍ଚର ପ୍ରବୁଦ୍ଧ ପୁରୁଷ ଶ୍ରୀ ନଟବର ସେଣ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଅନ୍ନପୂର୍ଣ୍ଣା, ରୂପଶ୍ରୀ, ଜନତା, କଳାଶ୍ରୀ ପ୍ରଭୃତି ରଙ୍ଗମଞ୍ଚରେ ଜଣେ ଅଗ୍ରଗଣ୍ୟ କଳାକାର ତଥା ନାଟ୍ୟ ନିର୍ଦ୍ଦେଶକ ଓ ସଂଗଠକ ଭାବରେ ନିଜର ଆସନ ସୁଦୃଢ଼ ଭାବରେ ସ୍ଥାପନ କରି ପାରିଥିଲେ । କୋଡ଼ିଏଟିରୁ ଅଧିକ ଓଡ଼ିଆ ଚ଼ଳଚ଼ିତ୍ରରେ ମଧ୍ୟ ସଫଳ ଚ଼ରିତ୍ରାଭିନେତା ଭାବରେ ଅଭିନୟ କରି ଶ୍ରୀ ସେଣ, ଦର୍ଶକମାନଙ୍କ ମନରେ ସ୍ଥାୟୀ ଆସନ ଦଖଲ କରି ପାରିଛନ୍ତି । ତାଙ୍କର ଦୀର୍ଘ କାଳର ରଙ୍ଗମଞ୍ଚର ଅନୁଭୂତି ଏବଂ ଓଡ଼ିଆ ରଙ୍ଗମଞ୍ଚର ଐତିହାସିକ ପୁରୁଷମାନଙ୍କର ସାନ୍ନିଧ୍ୟକୁ ଆଶ୍ରୟ କରି ଗବେଷଣାତ୍ମକ ରଚ଼ନା ପ୍ରକାଶନକୁ ସେ ତାଙ୍କ ଜୀବନର ବ୍ରତ ଭାବେ ଗ୍ରହଣ କରି ନେଇଛନ୍ତି । ଏହା ପୂର୍ବରୁ ପ୍ରକାଶିତ 'ମଞ୍ଚଗୁରୁ ବଳାଇ ଚ଼ାନ୍ଦ' ଓ 'ମଞ୍ଚଶ୍ରୀ ବାଉରୀ ବନ୍ଧୁ' ଓଡ଼ିଆ ରଙ୍ଗମଞ୍ଚର ଏକ ଅସାମାନ୍ୟ ଐତିହାସିକ ଦଲିଲ ଭାବରେ ଗୃହିତ ହୋଇଛି । ମାଷ୍ଟର ରାମଚ଼ନ୍ଦ୍ର ମାଣିଆ ଓ ବିଂଶ ଶତାବ୍ଦୀର ଓଡ଼ିଆ ରଙ୍ଗମଞ୍ଚ ଏ କ୍ଷେତ୍ରରେ ଅନ୍ୟ ଏକ ସଫଳ ପ୍ରଚ଼େଷ୍ଟା ।